



# ଅନୁଷ୍ଟୁପ

ନାରୀ ହୃଦୟର କଥା ଓ ବ୍ୟଥା

ସୁନୀତି ମୁଣ୍ଡ



# ଅନୁଷ୍ଟୁପ

ନାରୀ ହୃଦୟର କଥା ଓ ବ୍ୟଥା

ସୁନୀତି ମୁଣ୍ଡ



ଦକ୍ଷ ବୁକ୍ସ

ପ୍ରକାଶକ: **ଦକ୍ଷ ବୁକ୍ସ**, କଟକ

ମୁଦ୍ରଣ: ଜଗନ୍ନାଥ ପ୍ରୋସେସ୍ ପ୍ରା. ଲି, କଟକ

*ଏହି କାହାଣୀ ବା କାହାଣୀମାନଙ୍କରେ ବ୍ୟବହୃତ ଚରିତ୍ର, ନାମ, ସ୍ଥାନ ଏବଂ ଘଟଣାସବୁ କାଳ୍ପନିକ । ଏ ସମସ୍ତ ଲେଖା ଲେଖିକାଙ୍କ ଚିନ୍ତାଧାରାରୁ ଜନ୍ମିତ ବା ସମ୍ପୂର୍ଣ୍ଣ ରୂପେ କାଳ୍ପନିକ । ଏସବୁ ସହିତ ଯଦି କୌଣସି ଘଟଣା ବା ବ୍ୟକ୍ତିବିଶେଷ ଜୀବିତ ବା ମୃତ ଅବସ୍ଥାରେ ମେଳ ଖାଉଥିବେ ତେବେ ତାହା ସଂପୂର୍ଣ୍ଣ ରୂପେ ଅକସ୍ମାତ ବୋଲି ଧରିନିଆଯିବ ।*

Published in and by
Dakshya Books
(A unit of Dakshya Venture Pvt Ltd)
305, Siddhivinayak Residency
Jharpada,-751006, Bhubaneswar,
Khurdha, Odisha, India
Mob- 9778311533
E-mail: dakshyaodisha@gmail.com



Printed at Jagannath Process Pvt. Ltd
Dagarapada, Cuttack-02



**ANUSTUPA**

*COLLECTION OF SHORT STORY*

First Edition: **2012**
Second Edition : **2014**

Price : ₹ **120/-**

ପ୍ରକାଶକ ଶ୍ରୀଯୁକ୍ତ ବନୋଜ ତ୍ରିପାଠିଙ୍କୁ...

*('ପକ୍ଷୀଘର' ଦ୍ୱାରା 'ଅନୁଷ୍ଟୁପ' ୧ମ ସଂସ୍କରଣ ପ୍ରକାଶ ପାଇ ଜନାଦୃତି ପାଇଥିଲା ।)*

# ସଂକ୍ଷେପରେ "ଅନୁଷ୍ଟୁପ"

ଆମ ସମାଜରେ ମହିଳାମାନଙ୍କୁ ଯେଉଁ ସାମାଜିକ ରୀତିନୀତି ଆଳରେ ବିଭିନ୍ନ ମାଧ୍ୟମରେ ସେମାନଙ୍କର ମନକୁ ଚାପି ଦିଆଯାଇଥାଏ ସେହିସବୁ ମିଥ୍ୟାଚାର ବିରୁଦ୍ଧରେ ପ୍ରତି ଗଳ୍ପରେ କାହାଣୀ ମାଧ୍ୟମରେ ଦର୍ଶାଯାଇଛି। ଏଠାରେ ପ୍ରତିଟି ଗଳ୍ପର କିଛି ଧାଡି ଉଲ୍ଲେଖ କରାଗଲା:

'ଡୋଣ୍ଟ ଫାଇଟ୍ ଇୟୋର ଇମୋଶନ୍' ବିନିତ ଦୃଢ଼ କଣ୍ଠରେ କହି ଉଠିଲା। 'ନା ଏହି ଇମୋଶନ୍‌କୁ ଆୟତ୍ତରେ ରଖିବାକୁ ପଡିବ। ନଚେତ୍ ପୁଣି କ୍ଷତ।'
-ଅନୁଷ୍ଟୁପ

ସେ ଅମ୍ରିତାକୁ ନିଜ ବାହୁବନ୍ଧନରୁ ମୁକୁଳାଇ ଦେଲେ ଏବଂ ଦୂରକୁ ଛିଟିକିଗଲେ । ଅମ୍ରିତା ସେମ୍ତି ମନ୍ତ୍ର ଉଚ୍ଚାରଣ କରୁଥିଲା ଏବଂ ଗୋଟି ଗୋଟି କରି ନିଜ ଅଙ୍ଗରୁ ବସ୍ତ୍ର ତ୍ୟାଗ କରୁଥିଲା । ସଂପୂର୍ଣ୍ଣ ଉଲଗ୍ନ ହୋଇ ବୃଦ୍ଧଙ୍କ ଆଖିରେ ଆଖି ମିଶାଇଲା ଏବଂ ବୃଦ୍ଧଙ୍କ ଆଡକୁ ଦୁଇ ହାତ ବଢାଇ ଆହ୍ୱାନ କଲା। ବୃଦ୍ଧ ଶକ୍ତିହୀନ ହୋଇପଡୁଥିଲେ ।
-ସାଧନାର ଅନ୍ତରାଳେ

ପ୍ରକୃତରେ ଆମେ ସମସ୍ତେ ସବୁ ବେଳେ ଏକୁଟିଆ ହିଁ ତ ଥାଉ କିନ୍ତୁ ବାଧ୍ୟ ବାଧକତାରେ ଗୋଟିଏ ନିୟମ ନାଁ ରେ ପରସ୍ପର ସହ ଛନ୍ଦି ହୋଇ ସଂପର୍କର ସଂଜ୍ଞା ଦେଇ ତାକୁ ନିଭାଇବାର ଗୋଟିଏ ଗୋଟିଏ ସୁନ୍ଦର ପ୍ରହସନ ହିଁ କରୁ ।
-ଉତ୍ତରାଧିକାରୀ

ନା, ଯେଉଁ ବର୍ତ୍ତମାନ ଭବିଷ୍ୟତକୁ ନଷ୍ଟ କରିପାରେ ସେ କେବେ ବି ଗୋଟିଏ ଭଲ ଅତୀତ ନୁହେଁ ମୁଁ ମୋର ସମସ୍ତ ବର୍ତ୍ତମାନକୁ ଭଲ, ସ୍ମୃତିମୟ ଅତୀତ କରିବାକୁ ଚାହେଁ। ତେବେ ବର୍ତ୍ତମାନ କଷ୍ଟ ଦେବ କାହିଁକି କି ନଷ୍ଟ କରିବ କାହିଁକି ? ସେ ତ ମୋର କେବଳ ମୋର। ମୁଁ ମୋ ନିଜକୁ କିପରି ନଷ୍ଟ କରିପାରିବି।
-ଅବ୍ୟକ୍ତ

ହଠାତ୍ ନୀରବତା ଭଙ୍ଗ କରି ଶ୍ରୀୟା ଉତ୍ତର ଦେଲା, "ମୁଁ ପାପ କରିବାକୁ ଚାହେଁ।"
-ବ୍ରହ୍ମଚାରୀ ସହ ଗୋଟିଏ ରାତି

ସ୍ୱାମୀର ମୃତ୍ୟୁ ପରେ ଦଶ ଦିନ ପର୍ଯ୍ୟନ୍ତ ସ୍ତ୍ରୀର ମୁହଁ ନଚାହିଁବାର କଠୋର ନିୟମରେ ଆଜି ସଭିଏଁ ବନ୍ଧା। ଗାଁ ମୁଖିଆଙ୍କ ସ୍ତ୍ରୀ ମଧ୍ୟ ତାକୁ ସେଦିନ ଚାହିବେ ନାହିଁ ବୋଲି ସ୍ପଷ୍ଟ କହିଦେଇଥିଲେ ।
-କାଚକାନ୍ଥ

ସ୍ତ୍ରୀ ମାଆ ହେବା ପରେ ସ୍ୱାମୀର ଦୃଷ୍ଟି ବଦଳୁଛି ତେବେ ସ୍ୱାମୀ ବାପା ହେବା ପରେ କ'ଣ ସ୍ତ୍ରୀର ଦୃଷ୍ଟି ମଧ୍ୟ ବଦଳିଯାଏ ?
-ଶଙ୍କା

ଅନ୍ୱେଷିତା ଏବଂ ରୋହିତର ପ୍ରତିଛବି ରିନିତାର ଦୃଷ୍ଟି ପଟଳରେ । ଏତେଦିନ ଅନ୍ୱେଷିତା ଥିଲା କେଉଁଠି, ଆଉ ଆଜି ଏକା ବେଳକେ ତାକୁ ମାଡ଼ିବସିଛି ମନରେ, ଦେହରେ, ଆଖିରେ, ଓଠରେ। -ଅର୍ଦ୍ଧନାରୀଶ୍ୱର

ହଠାତ୍‌କିନି ନିଦରୁ ଉଠି ମନୀଷା ସ୍ୱାମୀର ମୁହଁରେ ପାଉଡର ବୋଳିବା ଆରମ୍ଭ କଲା । ହାତରେ, ଦେହରେ, ଜଂଘ ସନ୍ଧିର ଜଘନ୍ୟ ଇଲାକାରେ । କଳା ଅଂଧାର ରାତିରେ ସୌମ୍ୟ ରଞ୍ଜନ ଭାବେ ମନୀଷା ତାକୁ ପ୍ରେମରେ ଅଣ୍ଡାଳି ପକାଉଛି ଦେହସାରା । -ଗୋରା ଲୋକ

ସମରରେ ପ୍ରାୟତଃ ବିଅର ଆଉ ଅନ୍ୟ ଦିନରେ ହେଲେ ଭୋଦ୍‌କା ସହ ଅରେଞ୍ଜଜୁସ୍, ଜିନ୍ ସହ ଟନିକ, ହ୍ୱିସ୍‌କି ସହ ସୋଡା, ୱାଇନ୍‌ରେ ରୋଜେକ୍, ରମରେ କୋକ୍, ବୋକାଡି ସହ ସ୍ପ୍ରାଇଟ୍ କିମ୍ବା ବୋକାଡିର ଷ୍ଟ୍ରବେରି ଫ୍ଲେବର, କୋନିଆକ୍ ଆଉ ସ୍ପେସିଆଲ୍ ଦିନରେ ସାମ୍‌ପିଏନ୍ । -ଗପସପ୍

"...ତୋ ଦେହରେ ମୋ ହାତ ଥରେ ବୁଲି ଆସିଲେ ତୋ ଦେହର ପାପ ଚାଲିଯିବ ତୁ ମୁକ୍ତ ହୋଇ ଯିବୁ ଆଉ ସୁଖି ଜୀବନଟିଏ ତୋତେ ପ୍ରାପ୍ତ ହେବ ।" ଗୌରୀଠାରୁ ଏକଥା ଶୁଣି ସୋହାଙ୍କୁ ପୁରାଣ ପୃଷ୍ଠାର ଅହଲ୍ୟା ମନେ ପଡିଛନ୍ତି । -ଭଣ୍ଡମହାରାଜ୍

ତିରିଶିଟା ଟଙ୍କାରେ ମୋର କ'ଣ ହେବ ଏଇ ତିରିଶକୁ ଜୁଆ ଖେଳି ମୁଁ ତିନିଶହ କରିଦେବି, ତେବେ ସିନା ଘର ଚଳିବ । -ଠକି ହୁଏନା

ମାଆର କ'ଣ ହୋଇଛି ? ଯଦିଓ ସିପୁନ୍ ଏବେ ବାର ବର୍ଷର ତେବେ ବି ସେ ଛୋଟ ପିଲା ତା' ଭିତରେ ସେତିକି ବୁଝିବା ଜାଣିବାର ଜ୍ଞାନ ହୋଇନାହିଁ ଯେ ମାଆ ଶରୀରର ଭୋକକୁ ବୁଝିପାରିବ। -ମୋହ

ତୁମକୁ ଯାହା ଯାହା ସମ୍ବୋଧନ କରୁଥିଲି ସେଇ ସମସ୍ତ ସମ୍ବୋଧନର ଏକ ଏକ ଶେଷ ସୀମାନ୍ତ ରହିଛି; ଏଣୁ ଏହି ଶେଷ ସୀମାନ୍ତରେ ପହଞ୍ଚି ଅଣନିଶ୍ୱାସୀ ବୋଧ କରିବା ପୂର୍ବରୁ ତୁମକୁ ମୁଁ ଅନନ୍ତ ରୂପେ ବ୍ୟାଖ୍ୟା କରିସାରିଛି। -ଚିଠି



ସୂଚୀପତ୍ର

# ଅନୁଷ୍ଟୁପ

କାନ୍ହକୁ ପଛ କରି ଲୀନା ମୂର୍ତ୍ତିଟିଏ ହୋଇଯାଇଥାଏ । ତା' ସାମନାରେ ବିନୀତ କାନ୍ହକୁ ଦୁଇହାତ ପାପୁଲିର ଭାରରେ ଲୀନା ପାଇଁ ବନ୍ଧନଟିଏ ସୃଷ୍ଟି କରିଥିଲା । ସ୍ପର୍ଶ ବିହୀନ ଏ ବନ୍ଧନ ଭିତରେ ଲୀନା କିନ୍ତୁ ଖୁବ୍ ସୁରକ୍ଷିତ ମନେ କରୁଥାଏ । ତା' ଦେହରୁ ସତେ ଯେମିତି କ୍ଷତଟିଏ ଓହ୍ଲେଇ ଯାଉଥିବା ସେ ଅନୁଭବ କରୁଥିଲା । ବିନୀତର ବାହୁରେ ନୁହେଁ କି କୌଣସି ସ୍ପର୍ଶରେ ନୁହେଁ । ତେବେ ବି ତା' ବେଷ୍ଟନୀର ବନ୍ଧନ ଭିତରେ ଲୀନା ଖୁବ୍ ଆଶ୍ୱସ୍ତ ଏବଂ ହାଲୁକା ଅନୁଭବ କରୁଥିଲା । ସ୍ପର୍ଶ ବିହୀନ ବନ୍ଧନରେ ଦୁହିଁଙ୍କ ଆଖିର ଅନେକ କଥା ଯେପରି ଗଭୀରତା ମାପୁଥାନ୍ତି ।

'କ'ଣ ହେଲା ?'

'ନା, କିଛି ନୁହେଁ ।'

'ହୁଁ ସତରେ !'

'ବିନିତ, ଏ ସଂପର୍କର ସଂଜ୍ଞା କ'ଣ ?'

'ସବୁ ସଂପର୍କର ସଂଜ୍ଞା ନଥାଏ ।'

'ଆମ ଭିତରେ ତ ଦେହ ଆକର୍ଷଣ ବି ନାହିଁ ।'

'ହଁ ସଂପର୍କ ଦେହ ସହ ବନ୍ଧା ଥାଏ ବୋଲି କଷ୍ଟ ଦିଏ ।'

ଲୀନା ଏବେ ଠିକ୍ ମାପି ପାରୁଥିଲା ରବି ସହ ତା'ର ସଂପର୍କ । ଲୀନା ଆଉ ରବି ସ୍ୱାମୀ ସ୍ତ୍ରୀ ଭାବେ ଦୀର୍ଘ ଦିନ ବନ୍ଧା ହୋଇଥିବା ସତ୍ତ୍ୱେ ସେମାନଙ୍କର ସଂପର୍କରେ ତିକ୍ତତା ଆସେ କାହିଁକି କିପରି ? ଅନେକ ସମୟରେ ଦୁହିଁଙ୍କ ଭିତରେ ଥିବା ମଧୁର ସଂପର୍କ ବିଷାଦ ଭରା ହୋଇଉଠେ କାହିଁକି ?

ଲୀନାର ଆଧୁନିକ ଚିନ୍ତାଧାରାକୁ ରବି ସବୁବେଳେ ବିରୋଧ କରିଆସୁଥାଏ । ଯଦିଓ ସେହି ଚିନ୍ତାଧାରାରେ କାହାରି କିଛି କ୍ଷତି ଘଟିବାର ହିଁ ନଥାଏ । ତେବେ ଝଡ ଆସେ ଦୋହଲାଏ ଏବଂ ପୁଣି ଶାନ୍ତ ହୋଇଯାଏ । ବାରମ୍ବାର ଦୋହଲାଉଥିବା ଝଡ କିନ୍ତୁ ଲୀନାକୁ ବୋହି ଯିବାକୁ ବାଧ୍ୟ କରୁଥିଲା । ହେଲେ ସେ ବୋହି ପାରୁ ନଥିଲା । ଗୁଡାଏ ବନ୍ଧନ ଭିତରୁ ନିଜକୁ ମୁକ୍ତ କରିପାରୁ ନଥିଲା । ଥଳକୂଳ ପାଉ ନଥିବା ଲୀନା ମରୁ ଉଦ୍ୟାନରେ ଘୁରି ଘୁରି କେବଳ ନିଜର ପାଦ ଚିହ୍ନକୁ ହିଁ କେବଳ ସାଉଁଟି ପାରୁଥିଲା । ଯାହାକି ଦୂରକୁ ଦୂର ଲୀନ ହେବାରେ ଲାଗିଥାଏ; ତେବେ ଏ ଦୂରତା ମାପୁଥିଲା କିଏ ?

'ରବି; ମୁଁ ତ କେବେ ଚାହୁଁ ନଥିଲି ତୁମ ମୋ ଭିତରେ ଦୂରତ୍ୱ । ତେବେ ବି ଏ ଦୂରତା ଘାରୁଛି ।' ଲୀନା ଧିରେ ଧିରେ ନିଃଶେଷ ହୋଇପଡୁଥାଏ । ଜୀବନର ଅର୍ଥ କିଛି ବୁଝିପାରୁ ନଥାଏ । ଜୀବନ କଣ କେବଳ କର୍ତ୍ତବ୍ୟ ? ତେବେ ତ ଠିକ୍ ଅଛି । ଏ କର୍ତ୍ତବ୍ୟ ପରେ ହୁଏତ ଜୀବନ ଆସିବ । ଯେଉଁ ଜୀବନକୁ ଲୀନାର ଉପେକ୍ଷା ରହିଛି । ଲୀନା ପୁଣି ନିଜକୁ ନିଜେ ପ୍ରଶ୍ନ କରେ ଜୀବନର ମାନେ କଣ ?

ଲୀନାର ମୁଣ୍ଡ ଘୁରିଯାଏ ତାକୁ ପୁନଶ୍ଚ ମରୁ ଉଦ୍ୟାନର ପାଦ ଚିହ୍ନ ଦେଖାଯାଏ । ଯାହା କିଛି ଧିରେ ଧିରେ ଲିଭି ଆସୁଥିଲା । ଏହି ଦୃଶ୍ୟ ଲୀନାକୁ ଖୁବ୍ କଷ୍ଟ ଦେଉଥିଲା । ତେବେ ଏପରି ଘଟୁଛି କାହିଁକି ? କଣ ବାଲିରେ ସ୍ମୃତି ଛାଡି ହୁଏନି ?

ରବି ଲୀନାର ପ୍ରତିଟି କଥାରେ ଖିଅ କାଢି ତାକୁ ଆକ୍ଷେପ କରିବା ଭଳି ତାର ଦୁର୍ଗୁଣକୁ ଲୀନା ଯେତେ ଭୁଲାଇବାକୁ ଚାହୁଁଥିଲେ ବି ବାରମ୍ବାର ଏସବୁର ସମ୍ମୁଖିନ ହେବାକୁ ପଡୁଥାଏ ତାକୁ ।

'ଲୀନା ତୁମ ପ୍ରତି କର୍ତ୍ତବ୍ୟରେ କେଉଁଠି ଅବହେଳା କଲି ?' ରବି ପ୍ରଶ୍ନ କରେ ।

'କର୍ତ୍ତବ୍ୟରେ ଅବହେଳା କରିଥିଲେ ହୁଏତ ଏତେ ବାଧି ନଥାନ୍ତା । କିନ୍ତୁ ତୁମ ଭଲ ପାଇବା କେବଳ ଦେହରେ ସୀମିତ ରହିଛି ।' ଲୀନା ପୁନଶ୍ଚ ଭାବଗମ୍ଭୀର ବାଷ୍ପାକୂଳ କଣ୍ଠରେ କହିଚାଲେ 'ଦେହକୁ ମୁଁ ଘୃଣା କରୁ ନାହିଁ, ହେଲେ ଗୋଟିଏ ଶେଷ ହେଉଥିବା ବସ୍ତୁ ସହ ସଂପର୍କକୁ ମଧ୍ୟ ଧରିପାରୁ ନାହିଁ ।

ଲୀନା ପ୍ରକୃତିସ୍ଥ ହୁଏ , ବିନିତର ବେଷ୍ଟନୀ ମଧ୍ୟରେ ଆବଦ୍ଧ ଲୀନା ନିଶ୍ଚଳ ନିର୍ବିକାର । ଥଳ କୂଳ ପାଉନଥିବା ଲୀନାର ସମଗ୍ର ଶରୀରର ପଛ ପାଖ ଏଯାଏ ବି କାନ୍ଥକୁ ମାଡି ଧରିରହିଥାଏ । ଆଉ ବିନିତ ଲୀନା ସମ୍ମୁଖରେ କାନ୍ଥରେ ଦୁଇ ହାତ ପାପୁଲି ଥାପି ଲୀନାକୁ ସ୍ପର୍ଶ ବିହୀନ ବନ୍ଧନରେ ରଖିଥାଏ । ହଁ, ଏ ବନ୍ଧନ ଲୀନା ଦେହରୁ କ୍ଷତକୁ ଅପସରି ଦେଉଥାଏ । ଏ କ୍ଷତକୁ ସେ ତିରଷ୍କାର କରୁଥିଲା ସତକିନ୍ତୁ ସେ କ'ଣ ସେହି କ୍ଷତକୁ ଦୂରେଇ ପାରୁଥିଲା ।? କାନ୍ଥରୁ ବାଟୁଳି ଫେରିଲା ପରି ରବି ତା' ଦେହରେ କ୍ଷତ କରିଚାଲିଥିଲା ।

ଆମ ସଂସ୍କୃତିରେ ସ୍ୱାମୀର ଦେଇଥିବା କ୍ଷତକୁ ସ୍ତ୍ରୀ ସିନ୍ଦୁର କରି ପିନ୍ଧିବାର ପରମ୍ପରା ରହିଛି । ଏକଥାକୁ ରବି ବାରମ୍ବାର ଲୀନାକୁ ଚେତେଇ ଦେଉଥିଲା । କିନ୍ତୁ ଲୀନା ଏସବୁ ଆଦୌ ଗ୍ରହଣ ହିଁ କରିପାରୁ ନଥାଏ । ସଂପର୍କରେ ଯଦି ସମ୍ମୋହନ ନାହିଁ ତେବେ ସେ ସିନ୍ଦୁର ବା ଶଙ୍ଖାର ମୂଲ୍ୟ କେଉଁଠି ?

ଲୀନାର ମନ ତଳ ଭିଜି ଯାଉଥାଏ ଗୋଟାଏ ସ୍ପର୍ଶ ବିହୀନ ସମ୍ମୋହନରେ । ଗୋଟାଏ ସମ୍ବୋଧନ ବିହୀନ ସତ୍ତା ସହ ହଜିଯାଉଥାଏ । ଏକାତ୍ମ ହେବାର ଲାଳସା ତା' ଭିତରେ ଭରି ଭରି ଯାଉଥାଏ ପୁଣି ଏକାତ୍ମ ହେବାରେ ବିଚ୍ଛିନ୍ନତାର ଭୟ ତାକୁ ସତର୍କ କରିଦେଉଥିଲା । ଆଉ ଏକ କ୍ଷତ ସୃଷ୍ଟି ନହେବାକୁ ଚେତାଇ ଦେଉଥିଲା ।

'ଡୋଣ୍ଟ ଫାଇଟ୍ ଉଇଥ୍ ୟୋର ଇମୋଶନ୍' ବିନୀତ ଦୃଢ଼ କଣ୍ଠରେ କହିଲା ।

'ନା ଏହି ଇମୋଶନ୍‌କୁ ଆୟତ୍ତରେ ରଖିବାକୁ ପଡ଼ିବ । ନଚେତ୍ ପୁଣି କ୍ଷତ ।'

'କଣ କ୍ଷତକୁ ତୁମେ ଏତେ ଭୟ କର ?'

'ନିଶ୍ଚୟ କାରଣ କ୍ଷତ ପରର ବିଚ୍ଛିନ୍ନତାକୁ ମୁଁ ସହି ପାରିବିନି ।'

ଲୀନା ଆଉ ବିନିତ ମଧ୍ୟରେ ଅନେକ ଭାବର ଆଦାନ ପ୍ରଦାନ ହୁଏ । ଦୀର୍ଘ ସମୟ ଧରି ଦୁହେଁ ଖୁବ୍ ଗପନ୍ତି । ସେହି ଗପରେ ନଥାଏ କୌଣସି ଆବିଳତା, ଅହଂକାର କି ବୟସର ତାରତମ୍ୟ । ଅନେକ ସମୟରେ ଲୀନା ସମ୍ମୋହିତ ହୋଇ ପଡୁଥାଏ ବିନିତର ସାନ୍ନିଧ୍ୟରେ, ଆନ୍ତରିକତାରେ । ଏ ସମ୍ମୋହନ କିନ୍ତୁ କିଛି କ୍ଷତି କରୁନଥିଲା । ବରଂ ଦେଉଥିଲା ଗୋଟିଏ ତୃପ୍ତି । ଯେଉଁ ତୃପ୍ତିରେ ଭରି ରହୁଥିଲା ସମ୍ପୂର୍ଣ୍ଣତା ।



*(ସୁଚରିତା)*

# ସାଧନାର ଅନ୍ତରାଳେ

"ଆସ, ମୁଁ ତୁମକୁ କଢ଼ାଇନେବି କିଛି ବାଟ ଆଗକୁ ।"

ତା'ପରେ ଅମ୍ରିତା ପ୍ରାୟ ସତୁରୀ ବର୍ଷର ବୃଦ୍ଧଙ୍କ ବାମ ହାତକୁ ନିଜର ଡାହାଣ ହାତରେ ଧରିଲା । ଅମ୍ରିତା ବୃଦ୍ଧଙ୍କର ଅଧା ବୟସ ହେବ । ବୃଦ୍ଧଙ୍କ ହାତ ଧରି ଯାଉଥିବା ଅମ୍ରିତା ପ୍ରଥମ ପାହୁଣ୍ଡ ଓ ସପ୍ତମ ପାହୁଣ୍ଡ ଭିତରେ କିଛି ତଫାତ୍ ଅନୁଭବ କରିପାରୁନଥିଲା କିନ୍ତୁ କ୍ରମଶଃ ବୃଦ୍ଧଙ୍କ ନରମ ହାତର କୋମଳତାକୁ ସେ ବେଶ୍ ବାରିପାରୁଥିଲା । ସେ ହାତ ଥିଲା ତୁଳା ପରି କୋମଳ ।

"ଦେଖ, ଏଥର ତୁମ ଜୀବନ ଖୁବ୍ ସରଳ ହୋଇଯିବ ।"

ଜୀବନର କେଉଁ ସରଳତା କଥା ବୃଦ୍ଧ ଅମ୍ରିତାକୁ କହିଲେ ସେ ସଠିକ୍ ଠଉରାଇ ପାରିଲା ନାହିଁ । ସମସ୍ତଙ୍କ ଜୀବନରେ ଯାହାସବୁ ଘଟେ ଅମ୍ରିତା ଜୀବନରେ ମଧ୍ୟ ସେହିସବୁ ହିଁ ଘଟୁଥିଲା ତେବେ ଜଟିଳମୟ ଜୀବନଯାପନ କ'ଣ ସମସ୍ତଙ୍କର; ନା ଜୀବନ ଜୀଇଁବାର ଆଉ କେଉଁ ଉପାୟ ଅଛି ଯାହା ହୁଏତ ଅମ୍ରିତାକୁ ଜଣାନାହିଁ ଏଣୁ ବୃଦ୍ଧ ତାକୁ ଜଣାଉଛନ୍ତି ।

ବୃଦ୍ଧ ଏଥର ଗୋଟିଏ କୋଠରୀରୁ ଆଉ ଗୋଟିଏ କୋଠରୀକୁ ଚାଲି ଆସିଲେ । ସେହି କୋଠରୀରେ ଥିବା ସୋଫା ଉପରେ ସିଧା ହୋଇ ବସିଗଲେ ଏବଂ ଅମ୍ରିତାକୁ ଅପରପକ୍ଷରେ ଥିବା ସୋଫା ଉପରେ ବସିବାକୁ ନିର୍ଦ୍ଦେଶ କଲେ ।

"ପ୍ରାର୍ଥନାର ସମୟ ହୋଇଗଲା ।" କହି ସେ ନିଜେ ନିଜେ ଆଖି ବୁଜି ପ୍ରାର୍ଥନା କରିବା ଆରମ୍ଭ କରିଦେଲେ । ଅମ୍ରିତା ଚୁପ୍ ରହି ସେହି ପ୍ରାର୍ଥନାକୁ ଶୁଣୁଥାଏ । କିଛି ସମୟ ପରେ ପ୍ରାର୍ଥନା ଶେଷ ହେଲା ।

"ଅମ୍ରିତା ତୁମ ପୂର୍ବ ଜନ୍ମକୁ ମୁଁ ନିରୀକ୍ଷଣ କରିଛି । ତୁମେ ପୂର୍ବଜନ୍ମରେ ଜଣେ ରାଜାଙ୍କର କନିଷ୍ଠା ରାଣୀ ଥିଲ । ସେହି ରାଜାଙ୍କ  ସହ ତୁମର ବିବାହ ସ୍ଥିର ହେବାରେ ପ୍ରଜାଙ୍କର ମଙ୍ଗଳ ସାଧନ ହେବାର ଥିଲା । ତୁମେ ଜଣେ ସିଦ୍ଧ ଯୋଗିନୀ ଥିଲ । ରାଜାଙ୍କୁ ବିବାହ ପରେ ତୁମେ ରାଜାଙ୍କ ସହ ତନ୍ତ୍ର ସାଧନାରେ ରହି ରାଜା ଏବଂ ରାଜ୍ୟ ପାଇଁ ଖୁବ୍ ସଫଳତା ଆଣିଦେଇଥିଲ । ତୁମର ସେହି ରାଜ ଉଆଁସରେ ବର୍ତ୍ତମାନର ସ୍ୱାମୀ ଜଣେ କର୍ମଚାରୀ ଭାବେ କାର୍ଯ୍ୟ କରୁଥିଲେ । ରାଜାଙ୍କ ସହ ତୁମର ବୟସର ତାରତମ୍ୟ ଖୁବ୍ ଅଧିକ ଥିଲା । ସମୟକ୍ରମେ ତୁମ ଭିତରେ ସେହି କର୍ମଚାରୀ ପ୍ରତି ଦୁର୍ବଳତା ଏବଂ ଭଲପାଇବା ଉତ୍ପନ୍ନ ହୋଇଥିଲା। ରାଜ ମର୍ଯ୍ୟାଦାକୁ ଚାହିଁ ତୁମେ ସେହି କର୍ମଚାରୀ ସହ କୌଣସି ଅସଂଗତ ଆଚରଣ କରିନଥିଲ କିନ୍ତୁ ତୁମ ମନର ସେହି ଇଚ୍ଛା ଏ ଜନ୍ମରେ ତୁମକୁ ପ୍ରାପ୍ୟ ହୋଇଛି । ତୁମର ସେହି ସମୟର ସଂସାର ମୋହ ତୁମକୁ ଆଜି ଏଭଳି ସଂସାରୀ କରାଇ ଦେଇଛି ।

ଅମ୍ରିତା ନିସ୍ତବ୍ଧ ହୋଇ ଶୁଣୁଥିଲା । ଏବୃଦ୍ଧ, ସତରେ କେତେ କଣ ଜାଣନ୍ତି । ଏସବୁ ଭିତରେ ଅମ୍ରିତା ନିଜ ବାସ୍ତବିକ ସତ୍ତାକୁ ଖୋଜେ । ତା' ମୁଖମଣ୍ଡଳରେ  ଭିନ୍ନ ଭାବ ଉତ୍ପନ୍ନ ହେଉଥିବା ଦେଖି ବୃଦ୍ଧ ତାକୁ ସ୍ୱାଭାବିକ ସ୍ଥିତିକୁ ଆଣିବା ବ୍ୟତୀତ ଆହୁରୀ ଦ୍ୱନ୍ଦ୍ୱ ଭିତରକୁ ଟାଣିନେବାକୁ ଲାଗିଲେ । ଏଥର ବୃଦ୍ଧ ଅମ୍ରିତାକୁ ସିଧା ହୋଇ ବସିବାକୁ ନିର୍ଦ୍ଦେଶ ଦେଲେ ।

ଅମ୍ରିତା ବିନା ପ୍ରତିବାଦରେ ବୃଦ୍ଧଙ୍କ ନିର୍ଦ୍ଦେଶକୁ ମାନିଲା । ତା' ବସିଥିବା ସ୍ଥାନରୁ ଉଠିଆସି ବୃଦ୍ଧଙ୍କ ବାମ କଡରେ ବସିଲା । ବୃଦ୍ଧ ଏଥର ତା'ମୁଣ୍ଡର ପଛ ପାଖରୁ ମୂଳାଧାର ପର୍ଯ୍ୟନ୍ତ ନିଜ ବାମ ଆଙ୍ଗୁଳିରେ ଚାପା ସ୍ପର୍ଶ ଦେଲେ ।

'ଆଖି ବନ୍ଦ କରି ଅମ୍ରିତା, ମୋ ଉପରେ ବିଶ୍ୱାସ ରଖ ଏବଂ ମୁଁ  ଯାହା କହୁଛି ତାକୁ ମନେ ମନେ ଉଚ୍ଚାରଣ କର, "ହ୍ଲୀଂ କ୍ଲୀଂ ଶ୍ଲୀଂ" । ଅମ୍ରିତା ଉଚ୍ଚାରଣ କରୁଥାଏ "ହ୍ଲୀଂ କ୍ଲୀଂ ଶ୍ଲୀଂ" । ବୃଦ୍ଧ ଅମ୍ରିତାର ମୁଣ୍ଡ ଉପରୁ ମେରୁଦଣ୍ଡ ଦେଇ ମେରୁଦଣ୍ଡର ଶେଷ ପର୍ଯ୍ୟନ୍ତ ତିନି ଥର ଉପରୁ ତଳ ଅଙ୍ଗୁଳି ଚାଳନା କରି, ଅମ୍ରିତାକୁ ଆଖି ଖୋଲିବାକୁ ନିର୍ଦ୍ଦେଶ ଦେଲେ ।

ଅମ୍ରିତା ଆଖି ଖୋଲି ସାଧାରଣ ଅବସ୍ଥାରେ ବସି ବୃଦ୍ଧଙ୍କୁ ଚାହିଁଥାଏ । ବୃଦ୍ଧ ଏହି ମନ୍ତ୍ରକୁ ନିୟମିତ ଏକୋଇଶ କିମ୍ବା ଶହେ ଆଠଥର ଜପିବାକୁ କହିଲେ । ଏବଂ କେଉଁ ଭଳି ଅନୁଭବ ଏବଂ ଦୃଶ୍ୟ ସେ ଦେଖୁଛି ତାହା ପରବର୍ତ୍ତୀ ସମୟରେ କହିବାକୁ କହି ଚାଲିଗଲେ ।

ଅମ୍ରିତା ପୂର୍ବରୁ ଅନେକ ସାଧୁସନ୍ଥ ଜ୍ଞାନୀଙ୍କ ସଂସ୍ପର୍ଶରେ ଆସିଛି କିନ୍ତୁ କେବେ କିଏ ତାକୁ ଏକାବେଳକେ ମନ୍ତ୍ରଟି କହି ଜପ କରିବା ନିର୍ଦ୍ଦେଶ ଦେଇନଥିଲେ ।

ଅମ୍ରିତା ବେଶ୍ କିଛି ଦିନ ସେହି ମନ୍ତ୍ରକୁ ଜପ କରେ । ନିୟମିତ ଅଭ୍ୟାସରେ ଅଛି କି ନାଇ ଜାଣିବାକୁ ବୃଦ୍ଧ ଅମ୍ରିତାଠାରୁ ଟେଲିଫୋନ୍ ମାଧ୍ୟମରେ ବୁଝୁଥାନ୍ତି । ଖୁବ୍ କମ୍ ଦିନ ପରେ ଅମ୍ରିତା ନିଜ ସାଧନାରେ ଯେଉଁଭଳି ଯାହା ଯାହା ଅନୁଭବ କରୁଥିଲା ସବୁ ବୃଦ୍ଧଙ୍କ ସାମ୍ନାରେ ପ୍ରକାଶ କରିଚାଲେ-

ନିଛାଟିଆ ସ୍ଥାନ, ପ୍ରଚଣ୍ଡ ଝଡବତାସ, ଅମ୍ରିତା ଗୋଟିଏ ଦେବୀ ମନ୍ଦିର ସମ୍ମୁଖରେ ଛିଡା ହୋଇ ରହିଛି । ମନ୍ଦିର ପିଣ୍ଡା ଉପରକୁ ସେ ଚଢିନାହିଁ । ମନ୍ଦିର ବାହାରେ ଥାଇ ସେ ଦେଖୁଛି ମନ୍ଦିରର ସବୁ ଘଣ୍ଟ ଘଣ୍ଟା ଝଡ ପବନରେ ଦୋହଲି ଆପଣାଛାଏଁ ଶବ୍ଦ ସୃଷ୍ଟି କରୁଛନ୍ତି।

"ହଁ ଅମ୍ରିତା କୁହ, ଆଉ କଣ ଦେଖିଲ ?"

"ନା, ବାସ୍ ଏତିକି ।"

"ମନ୍ତ୍ର ଜପରେ ଆଉଟିକେ ଅଧିକ ଧ୍ୟାନ ଦିଅ ଅମ୍ରିତା, ତୁମକୁ ଖୁବ୍ ଶୀଘ୍ର ସଫଳତା ମିଳିବ । ଗୋଟିଏ କଥା ଧ୍ୟାନ ରଖିବ ତୁମ ଧ୍ୟାନ ସମୟରେ ବା ସ୍ୱପ୍ନରେ ଆସନ୍ତା ପନ୍ଦର ଦିନ ମଧ୍ୟରେ କେଉଁ ନଦୀକୁ ଦେଖୁଛ ?"

ଅମ୍ରିତା କିଛି ଦିନ ପରେ ଗୋଟିଏ ଅବାସ୍ତବ ସ୍ୱପ୍ନ ଦେଖେ, ଓଃ; ଏ କି ସ୍ୱପ୍ନ ଯାହା କେବେ ତାର ଚିନ୍ତାରେ ବି ଆସିନାହିଁ, "ବର୍ଷା ହେଉଛି ଅମ୍ରିତା ତା' ବାପାଙ୍କର ଅସ୍ଥି ବିସର୍ଜନ ପାଇଁ ବାହାରିଛି । ହାତରେ ଅସ୍ଥି ଥିବା ମାଟି କୋଡିଆ, ବସ୍ତ୍ରରୁ ଓହ୍ଲାଇ ସେ ଗଙ୍ଗାନଦୀ ଆଡକୁ ଚାଲି ଚାଲି ଯାଉଛି । ସେ ଗଙ୍ଗା ଅଭିମୁଖେ ଥିବାବେଳେ ତାର ବାମ କଡରୁ ଜଣେ ସାଧୁ ତାକୁ ଡାକି ପଚାରୁଛନ୍ତି, "ଆଜାଓ ବେଟା, କିସ୍ କାର୍ଯ୍ୟ ହେତୁ ତୁମ୍ ୟହାଁ ଆୟେ ହୋ ?"

ଅମ୍ରିତା ସନ୍ଥଙ୍କୁ ନତମସ୍ତକ ହୁଏ ଏବଂ ସେ ହାତରେ ଧରିଥିବା କୋଡୁଆକୁ ଦେଖାଇ ବାପାଙ୍କ ଅସ୍ଥି ବିସର୍ଜନ କଥା କହି, କୋଡୁଆର ବନ୍ଦ ମୁହଁକୁ ଖୋଲିବାକୁ ଆରମ୍ଭ କରେ । କୋଡୁଆ ଭିତରୁ ବାପାଙ୍କର ଅସ୍ଥିକୁ କାଢି ହାତରେ ଧରିଲାବେଳକୁ ବାପାଙ୍କୁ ହରାଇବାର ଦୁଃଖରେ ସେ ମ୍ରିୟମାଣ ହୁଏ । ଛାଏଁକିନା ନିଦ ଭାଙ୍ଗିଗଲା ଏବଂ ଅମ୍ରିତାର ନିଦ ଭାଂଗିଗଲା ।

"ଉଃ, ଏ କି ସ୍ୱପ୍ନ । ବାପା ତୁମ ଅସ୍ଥିକୁ ତ ଭାଇମାନେ ବିସର୍ଜନ କରିସାରିଛନ୍ତି, ତେବେ ମୋ ସ୍ୱପ୍ନରେ ତୁମେ ଏଭଳି କାହିଁକି ଆସିଲ ବାପା ?"

ନିଦରୁ ଉଠି ନିଜକୁ ନିଜେ ଅମ୍ରିତା କେତେ କେତେ ପ୍ରଶ୍ନ କରିଚାଲେ । ପାହାନ୍ତିଆ ସ୍ୱପ୍ନ, ଅମ୍ରିତାକୁ ଆଉ ନିଦ ହୋଇନଥିଲା । ଦିନ ତମାମ୍ ଏଭଳି ସ୍ୱପ୍ନରେ ଖୁବ୍ କ୍ଷତାକ୍ତ ହୋଇଯାଇଥାଏ । ଦିନ ଶେଷ ହେବାକୁ ବସିଥାଏ, ଅମ୍ରିତାର ମନେପଡେ ବୃଦ୍ଧଙ୍କର କଥା । ବୃଦ୍ଧ ତାକୁ ପନ୍ଦର ଦିନ ସମୟ ଦେଇଥିଲେ ଆଉ ଏହି ଦିନ ମଧ୍ୟରେ ହିଁ ସେ

ଏଭଳି ଏକ ସ୍ୱପ୍ନ ଦେଖିଛି । ସ୍ୱପ୍ନର ଘଟଣାବଳୀର ଯଦିଚ କୌଣସି ପ୍ରୟୋଜନ ନାହିଁ ତେବେ ଦେଖିଛି ଗଙ୍ଗାନଦୀ ଯାହା ତାର ସାଧନାର ସିଦ୍ଧିର ଗୋଟିଏ ପାହାଚ । ହୁଏତ ଏଥିରୁ କିଛି ଅନୁମାନ କରାଯାଇପାରେ ।

ଅମ୍ରିତା ସଙ୍ଗେ ସଙ୍ଗେ ବୃଦ୍ଧଙ୍କ ପାଖକୁ ଫୋନ ଲଗାଇଲା । ଏବଂ ସ୍ୱପ୍ନରେ ଗଙ୍ଗାନଦୀକୁ ଦେଖିଥିବା କଥା କହିଲା, କିନ୍ତୁ ଏହା ସହ ସେ ଗୋଟିଏ ଦୁଃଖାବହ ଘଟଣା ଦେଖିଥିବା ମଧ୍ୟ ବ୍ୟକ୍ତ କଲା । ବୃଦ୍ଧ ଅମ୍ରିତାଠାରୁ ଏସବୁ ଶୁଣି ସଙ୍ଗେ ସଙ୍ଗେ ତା'ପାଖକୁ ଚାଲିଆସିଲେ ।

ବୃଦ୍ଧଙ୍କ ମୁଖମଣ୍ଡଳରେ ଉଲ୍ଲାସର ଭାବ । ଅମ୍ରିତା ତାଙ୍କ ବସିବା ସ୍ଥାନ ସଜାଡ଼ି ଦେଇ ବସିବାକୁ ଅନୁରୋଧ କରେ, "ଅମ୍ରିତା, ତୁମର ପୂର୍ବସିଦ୍ଧି ତୁମକୁ ଏତେ ଶୀଘ୍ର ସାଧନାର ସଫଳତା ଦେଉଛି । ଏହାକୁ ଜାରି ରଖ ।"

ମୁଁ ବୁଝିପାରିଲି ନାହିଁ , ନଦୀ ସହ ମୋର କି ସଂପର୍କ ?"

"ହଁ, ଅମ୍ରିତା ତୁମେ ଗଙ୍ଗାନଦୀ ଉପକୂଳ କୌଣସି ଏକ ରାଜ୍ୟର ରାଣୀ ଥିଲ ପୂର୍ବଜନ୍ମରେ । ମୁଁ ଜାଣିଥିଲି ତମ ସାଧନା ଠିକ୍ ବାଟରେ ଯିବ ଏବଂ ତୁମେ ନଦୀ ଚିହ୍ନଟ କଲେ ମୁଁ ମୋର ନିଜର ସ୍ଥିତିକୁ ଜାଣିବି ।"

"ବୁଝିପାରିଲିନାହିଁ, ମୋର ପୂର୍ବଜନ୍ମ ସହ ଆପଣଙ୍କ ସ୍ଥିତିର କି ସଂପର୍କ ।"

"ତୁମକୁ ପ୍ରଥମ ଦିନ ଦେଖିବାବେଳେ ମୁଁ ଜାଣିସାରିଥିଲି ତୁମ ସହ ମୋର ସଂପର୍କ କିନ୍ତୁ ହଠାତ୍ କହିଥିଲେ ତୁମେ କିଭଳି ଗ୍ରହଣ କରିଥାନ୍ତ... ସେଥିପାଇଁ ଆରମ୍ଭରୁ ତୁମକୁ କିଛି କହିନଥିଲି । ଏବେ ମୁଁ ସ୍ଥିର ନିଶ୍ଚିତ ତୁମେ ହିଁ ମୋର ସନ୍ଧାନ କରୁଥିବା ସେହି ଉପଯୁକ୍ତ ପାତ୍ରୀ, ଯାହାକୁ ଏତେ ଦିନ ଧରି ମୁଁ ଖୋଜି ଆସୁଥିଲି ।"

ଅମ୍ରିତା କିଛି ବୁଝିପାରୁନଥାଏ, ତା'ମନରେ ଅନେକ ପ୍ରଶ୍ନ ଏବଂ ଭାବ ଉଦ୍‌ବେଳିତ ହେଉଥିବାବେଳେ ସେ କିନ୍ତୁ ବୃଦ୍ଧଙ୍କ ସାମ୍ନାରେ ସେମିତି ଚୁପ୍ ହୋଇ ବସିଥାଏ ।

ହଁ, ଅମ୍ରିତା ତୁମେ ପୂର୍ବଜନ୍ମରେ ଯେଉଁ ରାଜାଙ୍କର ରାଣୀ ଥିଲ ସେହି ରାଜା ମୁଁ ହିଁ ଥିଲି । ତୁମେ ମୋ ସହ ତନ୍ତ୍ର ସାଧନାରେ ଖୁବ୍ ସିଦ୍ଧି ପାଇସାରିଥିଲ । ଆଉ ତ ବାକି କଥା ପୂର୍ବରୁ କହିସାରିଛି । ଖାଲି ସେତିକି ନୁହେଁ ଆଉ ଗୋଟିଏ ଜନ୍ମରେ ମଧ୍ୟ ତୁମ ସହ ମୋର ଆଉ ଏକ ସଂପର୍କ ଥିଲା ତେବେ ଏହି ସଂପର୍କଟି ମୋର ନିରୀକ୍ଷଣ ସହ ସମାନ ହେଉଛି କି ନା ତାହା ତୁମର ଉତ୍ତରରୁ ଜଣାପଡିବ । ତୁମେ କୁହ, ତୁମେ ମୋତେ ପ୍ରଥମେ ଯେବେ ଦେଖିଲ ତୁମ ଭିତରେ କେଉଁ ଭାବ ମୋ ପ୍ରତି ଉତ୍ପନ୍ନ ହୋଇଥିଲା ?"

"ବାପା ।"

ବୃଦ୍ଧ ସ୍ମିତ ହାସ୍ୟ ଦେଇ କହନ୍ତି, "ଏଥର ମୁଁ ଆହୁରି ନିଶ୍ଚିତ ହୋଇଗଲି ତୁମେ ହିଁ ସେହି ପାତ୍ରୀ । ହଁ, ଆଉ ଏକ ଜନ୍ମରେ ତୁମେ ମୋର କନ୍ୟାଥିଲ । ଅମ୍ରିତା ତୁମ ପାଖରେ ସିଦ୍ଧି ଖୁବ୍ ଶୀଘ୍ର ଏବଂ ନିକଟରେ ଅଛି । ଆସ ମୋ ସହ ମିଶି ଏକତ୍ର ସାଧନା କର ତୁମର

ସବୁ ଆବଶ୍ୟକତା ଏବଂ କାର୍ଯ୍ୟ ମୋ ଦ୍ୱାରା ସଂପାଦିତ ହେବ । ମୋତେ ତୁମର ସବୁ ଇଚ୍ଛା କହିବ, ତୁମର ସବୁ ଇଚ୍ଛାକୁ ମୁଁ ହିଁ ପୂର୍ଣ୍ଣ କରିବି । କୁହ ତୁମର କଣ ଇଚ୍ଛା ?"

"ମୋର ସେପରି କୌଣସି ବ୍ୟକ୍ତିଗତ ଇଚ୍ଛା ନାହିଁ। କିନ୍ତୁ ଆପଣଙ୍କ କଥା ଯଦି ସତ ତେବେ ଜନ୍ମ ଜନ୍ମର ସାଧନାରେ ହାସଲ କରିଥିବା ଶକ୍ତି ସବୁକୁ ଜଗାଇ ରଖିବାର ସାହସ ମୋ ମଧ୍ୟରେ ଥାଉ।"

"ହଁ, ଅମ୍ରିତା ତୁମ ଭିତରେ ରହିଛି ସେହି ବିଶେଷ ଶକ୍ତି ଯାହାର ଯତ୍ନ ତୁମକୁ ହିଁ ନେବାକୁ ହେବ। ସମସ୍ତଙ୍କ ପାଖରେ ଏହି ଶକ୍ତି ନଥାଏ । ଏହା ତୁମ ପୂର୍ବ ସାଧନାର ଫଳ ତାକୁ ଜଗାଇବାକୁ ଚେଷ୍ଟା କର।"

"ଆପଣଙ୍କ କଥାନୁଯାୟୀ ମୋର ଜନ୍ମଜନ୍ମର ସାଧନାର ମୋଠି ଏତେ ଶକ୍ତି ରହିଛି, ତେବେ ତାକୁ ଜଗାଇବା ପାଇଁ କେବେ ପଛ ଘୁଞ୍ଚା ଦେବିନାହିଁ ଯଦି ପୂର୍ଣ୍ଣ ହୁଏ ମୋର ସେହି ଇଚ୍ଛା ।"

"କୁହ ଅମ୍ରିତା ନିର୍ବିଘ୍ନରେ କୁହ, ନିଶ୍ଚୟ ତୁମର ଇଚ୍ଛା ପୂର୍ଣ୍ଣ ହେବ।"

"ପ୍ରଥମରୁ କହିଛି ମୋ ନିଜ ପାଇଁ କିଛି ମାଗିବି ନାହିଁ । ଦୁନିଆଁରେ ଯେତେ ଭିକାରୀ ରହିଛନ୍ତି କେହି ଯେମିତି ଭିକ୍ଷା ନ କରନ୍ତି । ସେମାନଙ୍କୁ ବଞ୍ଚିବାର ଦିଗ ଦେଖାଇ ମୁଁ ସେମାନଙ୍କୁ କର୍ମତତ୍ପର, ସ୍ୱାଭିମାନୀ ଏବଂ ସମ୍ମାନରେ ସୁନ୍ଦର ଜୀବନ ଯାପନ କେମିତି କରିହେବ ତାହା ଶିକ୍ଷା ଦେବାକୁ ଚାହେଁ । ଗୋଟିଏ ଅର୍ଥରେ କହିବାକୁ ଗଲେ ଦୁନିଆଁରେ କେହି ଭିକାରୀ ରହିବେ ନାହିଁ ଯଦି ସେମାନଙ୍କର ଥଇଥାନ ବ୍ୟବସ୍ଥା କରାଯାଇ ପାରନ୍ତା ଏବଂ ଜୀବନର ମୂଲ୍ୟବୋଧକୁ ଚିହ୍ନାଇ ଦିଆଯାଆନ୍ତା ।"

ଅମ୍ରିତାର ଏପରି ଇଚ୍ଛା ଶୁଣି ବୃଦ୍ଧ ହସିଲେ,"ତୁମେ ଏତେ ଅଳ୍ପ ବୟସରେ ଏତେ ବଡ କଳ୍ପନା କରିପାରୁଛ କେମିତି ?...ଯାହା ବସ୍ତୁତଃ ଅସମ୍ଭବ ?"

"କାହିଁକି ଅସମ୍ଭବ ? ଆପଣ ତ କହୁଥିଲେ ମୋ ପାଖରେ ଅଜସ୍ର ଶକ୍ତି ରହିଛି ।"

"ହଁ, କହୁଥିଲି ତେବେ କ'ଣ ତନ୍ତ୍ର ସାଧନା ପାଇଁ ତୁମେ ପ୍ରସ୍ତୁତ ?"

"ଏହି ଅସହାୟମାନଙ୍କୁ ବଞ୍ଚିବାରମାନ ଦେଖାଇବା ପାଇଁ ମୁଁ ସବୁ କିଛି କରିପାରେ । ମୋର ଏହି ଜୀବନ ଯଦି ଅନ୍ୟର ସୁଖରେ ଆସେ ତେବେ ମୋର ଶେଷ ହେବାରେ ଭୟନାହିଁ ।"

"ତେବେ ତୁମେ ଆସନ୍ତା ମଙ୍ଗଳବାର ଦିନ ପ୍ରସ୍ତୁତ ଥିବ ତନ୍ତ୍ରସାଧନାର ଦୀକ୍ଷା ପାଇଁ । ମୁଁ ଆସିବି ତୁମକୁ ପ୍ରସ୍ତୁତ କରାଇବି ଏବଂ କେମିତି ନୀତିନିୟମରେ ରହିବ ସେସବୁ ଶିଖାଇ ଦେବି । ତୁମେ ସେ ଦିନ ଲାଲ ମନ୍ଦାର, ଗୋଟିଏ ଘିଅ ଦୀପ ଏବଂ ଗୋଟିଏ ତାଳରେ କିଛି ଜଳ ରଖିଥିବ । ଆଉ ମନେରଖିବ ଏହି ସମୟରେ କାହାରି ବ୍ୟାଘାତ ଯେପରି ନହୁଏ ।"

ନିର୍ଦ୍ଦିଷ୍ଟ ଦିନ ଆସିବା ପୂର୍ବରୁ ବୃଦ୍ଧ ଅମ୍ରିତାକୁ ଆଗକୁ କେଉଁ କେଉଁ ସତର୍କତା ଅବଲମ୍ବନ କରିବା ହେବ ସେ ନେଇ ଆଉ କେତୋଟି ଉପଦେଶ ଦିଅନ୍ତି, "ସାଧନାରେ ଆଗକୁ ଯିବାକୁ ହେଲେ ତୁମକୁ ନିୟମିତ ଦିନ ଚର୍ଯ୍ୟାରେ କେତୋଟି ନିୟମ ପାଳନ କରିବାକୁ ପଡିବ ପ୍ରଥମତଃ ସକାଳର ତୁମ ନିଜ ପରିସ୍ରାକୁ ନିଜେ ପାନ କରିବ, ନଖ କାଟି ପରିଷ୍କାର ରଖିବ, ଯୋନି ଦେଶର କେଶକୁ କେବେ କାଟିବ ନାହିଁ ଏବଂ ବର୍ତ୍ତମାନ ତୁମେ ଚଳୁଥିବା ସଂସାରରେ ଛଳନା ଅଭିନୟ କରି ଚଳିବ । ଆବଶ୍ୟକ ସ୍ଥଳେ ମିଥ୍ୟାର ଆଶ୍ରୟ ନେବ ।" ଅମ୍ରିତା ବୃଦ୍ଧଙ୍କ ମୁହଁରୁ ଏସବୁ ଶୁଣି ଆଚମ୍ଭିତ ହୋଇଯାଏ । ଏସବୁ ସେ କଣ କହୁଛନ୍ତି ଯାହାସବୁ ତା'ପାଇଁ ଅସମ୍ଭବ ତାକୁ ଏସବୁ କରିବାକୁ ପଡିବ, ଭାବିବା ବେଳକୁ ତାର ଭ୍ରୁ-କୁଞ୍ଚନ ହୁଏ । ଛଳନା ଯାହାକି ଅମ୍ରିତା ପାଇଁ ଖୁବ୍ କଷ୍ଟ ଦାୟକ ଏବଂ ଅସମୀଚିନ ।

ବୃଦ୍ଧ ଶେଷରେ କହନ୍ତି, "ମନେରଖିବ ଯେଉଁସବୁ କଥା ମୁଁ ତୁମକୁ କହିଛି ତାହା ଯଦି ଅନ୍ୟ ପାଖରେ ପ୍ରକାଶ କରିବ ତୁମ ଦୃଷ୍ଟିଶକ୍ତି କ୍ଷୀଣ ହୋଇଯିବ ।"

ବୃଦ୍ଧଙ୍କର ଏହି କଥାଟି ଅମ୍ରିତାର ମନକୁ ପାଇଲାନାହିଁ । ଜଣେ ଯଦି ଜଣଙ୍କର ଶୁଭମନାସୁଥାଏ ତେବେ ତାକୁ କେମିତି ଅଭିଶାପ ଦେଇପାରିବ । ଅନେକ ଦିନ ପର୍ଯ୍ୟନ୍ତ ଅମ୍ରିତା ଏକଥାରେ ଘାଣ୍ଟି ହେଲା । ଏହା ଭିତରେ ସେ ସବୁବେଳେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଏ କେଉଁଟି ଠିକ୍ କେଉଁଟି ଭୁଲ ତାକୁ ସୂଚାଇଦେବାକୁ ।

ମଙ୍ଗଳବାର ଆସିଗଲା, ବୃଦ୍ଧଙ୍କର ଆସିବା କଥା ଚିନ୍ତା କରି ଅମ୍ରିତା ମନରେ ଭୟ ସଞ୍ଚାର ହେଲା । ବିପଦ ଆଡକୁ ସେ ମୁହାଉନାହିଁ ତ । ହେ' ଈଶ୍ୱର ମୋତେ ଶକ୍ତି ଦିଅ ମୋ ପାଇଁ ଯାହା ଉଦ୍ଦିଷ୍ଟ ତାହା ହେଉ, ତୁମ ଇଚ୍ଛା ପୂର୍ଣ୍ଣ ହେଉ ପ୍ରଭୁ, ମୋର ଏହି ଦ୍ୱନ୍ଦ୍ୱ ଘଡି ସନ୍ଧିରେ ତୁମ ଛଡା ଆଉ ମୋର କେହି ନାହିଁ ତୁମେ ବିଚାରିବ ପ୍ରଭୁ ! କହି ଈଶ୍ୱରଙ୍କୁ ସ୍ମରଣ କରେ ଅମ୍ରିତା । ଏତେ ବେଳକୁ ତାକୁ ଗୋଟିଏ ବୁଦ୍ଧି ଦିଶିଲା । ବୃଦ୍ଧ କହିଛନ୍ତି ସାଧନା ସମୟରେ କାହାରି ବ୍ୟାଘାତ ଯେପରି ନଘଟେ । ସେଥିପାଇଁ ପ୍ରସ୍ତୁତ ହେଲା ଅମ୍ରିତା । ବୃଦ୍ଧ ଆସି ପହଞ୍ଚିଲେ । ଘର ଭିତରେ ଅମ୍ରିତା ଏକୁଟିଆ, ଆବଶ୍ୟକ ସରଞ୍ଜାମ ପ୍ରସ୍ତୁତ ଥିଲା । ବୃଦ୍ଧ ଆସୁ ଆସୁ ହାତ ପାଦ ଧୋଇ ଆବଶ୍ୟକ ବସ୍ତ୍ର ପରିଧାନ କରି ଠାକୁର ଘରେ ବସିଗଲେ । ସଳିତାରେ ନିଆ ଲଗାଗଲା, ବୃଦ୍ଧ ସାଥିରେ ଆଣିଥିଲେ ବେଲପତ୍ର ଆଉ ଟଗର । ବୃଦ୍ଧ ଏବଂ ଅମ୍ରିତା ସାମ୍ନାସାମ୍ନି ହୋଇ ଦୁଇଟି ଆସନରେ ବସିଗଲେ । ତିନିଥର ଓମ୍‌ର ଉଚ୍ଚାରଣ ହେଲା । ଏଥର ଅମ୍ରିତାକୁ ଛିଡା ହେବାକୁ କହିଲେ ବୃଦ୍ଧ । ଅମ୍ରିତା ଛିଡା ହେଲା, ବୃଦ୍ଧ ନିଜ ହାତରେ ପାଣି ଆଣି ଅମ୍ରିତାର ପାଦକୁ ଧୋଇବାକୁ ଲାଗିଲେ । ଓଦା ପାଦକୁ ନିଜ ବସନରେ ପୋଛି ଦେଲେ ।

ଅମ୍ରିତାକୁ ଖୁବ୍ ଅଡୁଆ ଲାଗୁଥାଏ ଏସବୁ । ବୃଦ୍ଧ ଏକ'ଣ କରୁଛନ୍ତି... ?

ଏଥର ଅମ୍ରିତାକୁ ନିଜ ଆସନରେ ଚକାମାଲି ବସିବାକୁ କହିଲେ । ଢାଳରୁ ପାଣି ଆଣି ଅମ୍ରିତାର ଯୋନି ଦେଶରେ ସିଞ୍ଚନ କଲେ । ତା'ପରେ ଲାଲ ମନ୍ଦାର ଏବଂ ବେଲପତ୍ର ଦେଇ ଧୂପ, ଦ୍ୱୀପ, ଦେଖାଇଲେ । ଅମ୍ରିତା ମନେ ମନେ ଭାବୁଥାଏ କେତେବେଳେ ଘଟିବ ତା'ର ପ୍ରସ୍ତୁତ କରି ରଖିଥିବା ଯୋଜନା । ମନରେ ଖୁବ୍ ଭୟ, ସାଧନାରେ ବିଘ୍ନ ନପକାଇଲେ କାଳେ ସାଧନାରେ ବନ୍ଧା ପଡିଯିବ । ହେ' ଈଶ୍ୱର ମୋତେ ରକ୍ଷାକର । କଲିଂବେଲ୍ ବାଜିବାର ଶବ୍ଦ । ଆଶ୍ୱସ୍ତିରେ ଦୀର୍ଘନିଶ୍ୱାସ ଛାଡିମନେ ମନେ ଭାବିଲା ଅମ୍ରିତା "ଉଃ... ବଞ୍ଚିଗଲି ।" ବୃଦ୍ଧ ପ୍ରଶ୍ନ କଲେ, "କିଏ ? ତୁମକୁ କହିଥିଲିନା ସାଧନା ସମୟରେ କୌଣସି ବ୍ୟାଘାତ ଯେପରି ନ ହୁଏ ।"

"ଜାଣିନି, ବୋଧ ହୁଏ ମୋ ସ୍ୱାମୀ...।"

"ଉଃ... ।" ବୃଦ୍ଧ ବିବ୍ରତ ହେଲେ ।

ଅମ୍ରିତା କିନ୍ତୁ ଠିକ୍ ଜାଣେ ଘର ଦୁଆର ବାହାରେ କଲିଂଗ୍  ବେଲ୍ ମାରିଥିବା ବ୍ୟକ୍ତି ଜଣକ ତା' ସ୍ୱାମୀ ନୁହଁନ୍ତି, ଓଲଟି ସେ ପ୍ରସ୍ତୁତ କରିଥିବା କୁନି ପିଲାଟି ଯାହାକୁ ସେ ପୂର୍ବରୁ କହିଥିଲା ନିର୍ଦ୍ଦିଷ୍ଟ ସମୟରେ ବେଲ୍ ମାରିବା ପାଇଁ । କିନ୍ତୁ ଅମ୍ରିତା ବୃଦ୍ଧଙ୍କ ସାମ୍ନାରେ ଅଭିନୟ କଲା ତା'ସ୍ୱାମୀର ଆସିବାକୁ ନେଇ ଏବଂ ସବୁ ପୂଜା ସାମଗ୍ରୀକୁ ତରବରରେ ଉଠାଇ ନେଇ ଗୋଟିଏ କୋଣରେ ଥୋଇଦେଲା । ବୃଦ୍ଧଙ୍କୁ ସାମାନ୍ୟ ଭାବରେ ବସିବାକୁ ଅନୁରୋଧ କଲା ସିଏ ।

ଅମ୍ରିତା କବାଟ ଖୋଲିଲା ପରେ ପିଲାଟି ଅମ୍ରିତା ସହ କିଛି କଥାହୋଇ ଚାଲିଗଲା । ଗୋଟିଏ ବିରାଟ ଦୁର୍ଘଟଣାରୁ ମୁକୁଳିଯିବାର ଅନୁଭବ କଲା ଅମ୍ରିତା ।

ବୃଦ୍ଧ ଏଥର ଅମ୍ରିତାକୁ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ସହ ଯୋଗ ଦେବାକୁ ନିର୍ଦ୍ଦେଶ ଦେଲେ। ...."ଦେଖ ତୁମେ ଯେଉଁ ଇଛା କରିଛ ତା'ହା ପୂରଣ ହେବା ଏତେ ସହଜ କଥା ନୁହେଁ, ତୁମକୁ ସେଥିପାଇଁ ଗୋଟିଏ ବଡ ଅନୁଷ୍ଠାନର ସହଯୋଗ ନେଇ ତୁମ କାର୍ଯ୍ୟକୁ ସଫଳ କରିବାକୁ ହେବ। ଏମିତି ତ ମୁଁ ଜନସେବାରେ ଅଛି, ଜନହିତ ପାଇଁ ଅନୁଷ୍ଠାନଟିଏ ଗଢିଛି ଯଦି ତୁମେ ଚାହଁ ସେଠି ନିୟୋଜିତ ହୋଇପାରିବ।"

ଅମ୍ରିତା ବୃଦ୍ଧଙ୍କର ଏହି ପ୍ରସ୍ତାବରେ ରାଜିହେଲା । ଏବଂ ନିୟମିତ ସେହି ଅନୁଷ୍ଠାନକୁ ଯିବା ଆରମ୍ଭ କଲା । ବୃଦ୍ଧ ଦୈନିକ ଅମ୍ରିତାକୁ ଦେଖି ଆନନ୍ଦିତ ହୁଅନ୍ତି । ଯଦିଓ କିଛି ଶଙ୍କା ଭିତରେ ଅମ୍ରିତା ଗତି କରୁଥାଏ ତେବେ ବି ତା'ଭିତରେ ଗୋଟିଏ ବିଶ୍ୱାସ ଥିଲା ହୁଏତ ତା'ର ଇଚ୍ଛା ସାଧନରେ ଏହି ବୃଦ୍ଧ ସହାୟ ହୋଇପାରିବେ।

ଏହି ଅନୁଷ୍ଠାନକୁ ଅମ୍ରିତା ଆସିବା ପରେ ସେଠାରେ ବୃଦ୍ଧଙ୍କର ଜଣେ ନିକଟ ଏବଂ ଅତି ପୁରାତନ ବନ୍ଧୁ ଯାହାଙ୍କୁ ସେ ବଡଭାଇ ପରି ମାନନ୍ତି ତାଙ୍କ ସହ ଅମ୍ରିତାର ସାକ୍ଷାତ ହୁଏ ।

"ଆରେ ମ୍ୟାଡମ ଆପଣ ଏଠାକୁ କେମିତି ଆସିଲେ ?" ପୂର୍ବରୁ ଅଳ୍ପ ପରିଚୟ ଥିଲା ତାଙ୍କ ସହ ଅମ୍ରିତାର ।

"ବସନ୍ତୁ ।" ପାଖ ସିଟକୁ ହାତ ଦେଖାଇ ଭଦ୍ରବ୍ୟକ୍ତି ଅମ୍ରିତାକୁ ବସିବାକୁ କହିଲେ । ଅମ୍ରିତା ବସିଲା ପରେ ସେଠାକୁ ଆସିବାର ତାର ଉଦ୍ଦେଶ୍ୟ ବ୍ୟକ୍ତ କରେ - "ସେବା, ବ୍ୟକ୍ତି ଜୀବନର ଅବସତାକୁ ଦୂର କରେ ଏହି ଅଭିପ୍ରାୟ ନେଇ ମୁଁ ଏଠାକୁ ଆସିଛି ।"

ଭଦ୍ରବ୍ୟକ୍ତି ହସିଲେ, "ଆପଣ ଗୋଟିଏ ଭୁଲ ଜାଗା ଚୟନ କରିଛନ୍ତି ।"

ଅମ୍ରିତା ଆଶ୍ଚର୍ଯ୍ୟ ହୋଇ ଭଦ୍ରବ୍ୟକ୍ତିଙ୍କୁ ଚାହିଁଲା ।

"ହଁ ଆପଣ ଖୁବ୍ ସରଳ, ଏଠି ଲୋକଙ୍କୁ ଏକ୍ସପ୍ଲଏଟ୍ କରାଯାଏ । ଉପଯୁକ୍ତ ସମ୍ମାନ କିଏ କାହାକୁ ଦିଅନ୍ତି ନାହିଁ । ଆପଣ ପ୍ରତିମୁହୂର୍ତ୍ତରେ ଅପମାନ ଅନୁଭବ କରିବେ ।"

"ତେବେ ଆପଣ କେମିତି ଏଠି... ?"

"ହଁ, ମୁଁ ମୋର ଅବସର ସମୟ ଅତିବାହିତ କରିବାକୁ ଆସୁଛି । ଏମିତି ବି ମୁଁ କଥା ଦେଇଥିଲି ଅନ୍ତତଃ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏହି ଅନୁଷ୍ଠାନକୁ ସହଯୋଗ କରିବି ଅଧା ସମୟ ବିତିଗଲାଣି ବାକି ଅଧକ ବିତି ଗଲେ ମୁଁ ଆଉ ଏଠାକୁ ଆସିବି ନାହିଁ ।"

ଏପରି କଥା ସବୁ ଅମ୍ରିତାକୁ ଆଚମ୍ଭିତ କରୁଥାଏ । କୌଣସି ଭଲ କାମ ଆରମ୍ଭ କରିବାକୁ ଗଲାବେଳେ ଏପରିସବୁ ପ୍ରତିବନ୍ଧକ ଆସେ, ନିଜେ ସେପରି କୌଣସି ବିପଦକୁ ନଭେଟିବା ପର୍ଯ୍ୟନ୍ତ ସେ ତା'କାମରୁ ନ ଓହରିବାର ନିଷ୍ପତ୍ତି ନିଏ । ନିୟତି ଉପରେ ସବୁ ଛାଡି ଦେଇ ସେ ନିଜ କର୍ମରେ ନିମଗ୍ନ ରହିବାକୁ ଚେଷ୍ଟା କଲା । ହେଉ ଦେଖାଯାଉ ଯେଉଁ ଦିନ ଯେପରି ଘଟିବ ତାକୁ ସେହିଦିନ ସେପରି ସାମ୍ନା କରିବା । ଏପରି ଭାବନା ମଧ୍ୟରେ ଅମ୍ରିତା ନିଜ କାର୍ଯ୍ୟ ଜାରି ରଖେ । କେମିତି ନୂଆ ନୂଆ ସୂତ୍ରରେ ଅନୁଷ୍ଠାନ ଆଗକୁ ବଢିବ ସେ ନେଇ ଯୋଜନା କରେ । ତା'ର ଯୋଜନା ଫଳପ୍ରଦ ହେବାର ସମ୍ଭାବନା ଥିଲେ ବି ବୃଦ୍ଧ କିନ୍ତୁ ଜାଣିଶୁଣି ତାହା କରିବାକୁ ଦେଉନଥିଲେ ।

"କାହିଁକି ଏତେ ପରିଶ୍ରମ କରୁଛ, ଗୋଟିଏ ସହଜ ଉପାୟ ଅଛି ତୁମ ପାଖରେ । ଯଦି ତୁମେ ଚାହଁ ସେଥିରେ ସଫଳ ହେବ । ଏହି ଉପାୟ ସମସ୍ତଙ୍କ ପାଖରେ ଫଳପ୍ରଦ ହୁଏନା ।"

ଅମ୍ରିତା, ବୃଦ୍ଧଙ୍କଠାରୁ ଏପରି ଶୁଣି ଚୁପ୍ ରହିଥାଏ । ବୃଦ୍ଧ ଦ୍ୱନ୍ଦ୍ୱରେ ରୁହନ୍ତି ଅମ୍ରିତା ତାଙ୍କ ପରାମର୍ଶକୁ ସମର୍ଥନ କରୁଛି ନା ପ୍ରତିବାଦ କରୁଛି । ବୃଦ୍ଧ ନିଜ ବକ୍ତବ୍ୟ ଜାରି ରଖିଥାନ୍ତି, "ତନ୍ତ୍ର ସାଧନାରେ ମୋ ସହ ରହିବା ପରେ ତୁମେ ସବୁ ସୁଖ ଏବଂ ଆନନ୍ଦକୁ ନିଜ ଅକ୍ତିଆରରେ ରଖିପାରିବ । ତୁମର ବୁଝିବାରେ କିଛି ଅସୁବିଧା ହେଉଛି ବୋଧ ହୁଏ । କୁହ କେଉଁଠି ବୁଝିପାରୁନାହଁ ?"

ତଥାପି ଅମ୍ରିତା ସେମିତି ଚୁପ୍ ହୋଇ ରହିଥାଏ ।

"ମୁଁ ତୁମକୁ ପଚାରୁଛି ଅମ୍ରିତା; ମନରେ ଯାହା ଅଛି ସ୍ପଷ୍ଟ ଭାବେ କୁହ ।"

ଅମ୍ରିତା ମନେ ମନେ ଭାବୁଥାଏ ଏପରି କାହାଣୀର ସେ କେତେ ନମ୍ବର ଚରିତ୍ର ହୋଇଥିବ, ନିଶ୍ଚୟ ଏହି ବୃଦ୍ଧ ଏପରି କାହାଣୀ ପୂର୍ବରୁ କେତେ ଜଣଙ୍କୁ କହିଥାଇ ପାରନ୍ତି, ସେହି ନାରୀମାନଙ୍କର କି ଅବସ୍ଥା ହୋଇଥିବ ? ଓହୋ... ଏସବୁ ଭାବିଲା ବେଳକୁ ମୁଣ୍ଡ କ'ଣ ଯେ ହେଇଯାଉଛି ।

"ମୁଁ କିଛି ସମୟ ଚାହେଁ ନିଷ୍ପତ୍ତି ନେବାକୁ ।"

"ଠିକ୍ ଅଛି, ତୁମେ ସମୟ ନିଅ ଯେଉଁ ଦିନ ନିଷ୍ପତ୍ତି ନେଇ ସାରିବ ତୁମେ ମୋତେ ଜଣାଇବ। ଏଣିକି ମୁଁ ତୁମ ସହିତ ଏହି ବିଷୟରେ ଆଉ କିଛି ଆଲୋଚନା କରିବିନାହିଁ । ଯେଉଁ ଦିନ ତୁମେ ସମ୍ମତି ଦେବ, ମୁଁ ଯେଉଁଠି ଥିଲେ ମଧ୍ୟ ଅବିଳମ୍ବେ ତୁମ ପାଖରେ ପହଞ୍ଚିବି, ଏହା ଦେବୀଙ୍କର ନିର୍ଦ୍ଦେଶ । ମୋର ବିଶ୍ୱାସ ତୁମେ ମୋ କାର୍ଯ୍ୟରେ ମୋତେ ସହଯୋଗ କରିବ । ଦେବୀ କହିଛନ୍ତି ତୁମର ସମସ୍ତ ନିର୍ଦ୍ଦେଶକୁ ମୁଁ ପାଳନ କରିବି ।"

"ଦେବୀ ?" ଏପୁଣି କିଏ ! ଅମ୍ରିତା ମନରେ ପ୍ରଶ୍ନ, ସେ ବୃଦ୍ଧଙ୍କୁ ଏହି ଦେବୀଙ୍କୁ ନେଇ ପ୍ରଶ୍ନ କରେ, ବୃଦ୍ଧ ବିନା ସଙ୍କୋଚରେ କହିଗଲେ ଦେବୀଙ୍କ ବିଷୟରେ । ଦୀର୍ଘ ବର୍ଷ ଧରି ବୃଦ୍ଧ ସେବା କରିଆସୁଛନ୍ତି ସେହି ଦେବୀଙ୍କୁ ଏବଂ ଦେବୀ ଆଶୀର୍ବାଦରେ ବୃଦ୍ଧଙ୍କ ଭିତରେ ଅସୀମ ଶକ୍ତି ଜାଗିଉଠେ । ଏହି ଅସୀମ ଶକ୍ତିକୁ ହାସଲ କରିବା ପାଇଁ ବୃଦ୍ଧଙ୍କୁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପଦ୍ଧତି ମଧ୍ୟରେ ଦେବୀଙ୍କର ସେବା କରିବାକୁ ପଡିଥାଏ। ସେ ଦୀର୍ଘ ବର୍ଷ ଧରି ଏହି ସାଧନା କରିଆସୁଛନ୍ତି । ଦେବୀଙ୍କୁ ତୃପ୍ତ କରିବା ପାଇଁ ନାରୀ ପୁରୁଷ ଯୌନ ସଂପର୍କରୁ ନିର୍ଗତ ରସକୁ ଦେବୀ ପାନ କରିଥାନ୍ତି । ଦେବୀଙ୍କୁ ଏପରି ପ୍ରସାଦ ଲଗାଗଲାପରେ ଦେବୀ ପ୍ରସନ୍ନ ହୋଇ ବୃଦ୍ଧଙ୍କୁ ଆଶୀର୍ବାଦ କରନ୍ତି । ବୃଦ୍ଧଙ୍କ ମଧ୍ୟରେ ଶକ୍ତି ଭରିଯାଏ । ଯେଉଁ ଶକ୍ତିକୁ ଧାରଣ କରି ବୃଦ୍ଧ ଜନସେବାରେ ନିଜକୁ ନିୟୋଜିତ କରନ୍ତି । ଅମ୍ରିତା ଏଥର ପୁଣି ପ୍ରଶ୍ନ କରେ ବୃଦ୍ଧଙ୍କୁ, "ତେବେ କଣ ଆପଣ ଆଜି ପର୍ଯ୍ୟନ୍ତ ଆଉ କାହା ସହ ଯୌନ ସଂପର୍କରେ ଅଛନ୍ତି ?"

"ହଁ ଜଣେ ମହିଳା ଯିଏ ମୋର ଏହି କାର୍ଯ୍ୟରେ ଗତ ପନ୍ଦର ବର୍ଷ ଧରି ସହଯୋଗ କରିଆସୁଛନ୍ତି କିନ୍ତୁ ତାଙ୍କ ସହ ଏବେ ମୋର ସମୟ ଶେଷ ହେବାକୁ ବସିଲାଣି ଏଣୁ ମୁଁ ତୁମକୁ ଏହି ସଂପର୍କରେ ସବିଶେଷ ବିବରଣୀ ଦେଲି । ସମସ୍ତଙ୍କ ସହ ଏହି ବିଶେଷ କାର୍ଯ୍ୟ ସଂପନ୍ନ ହୁଏନା । ଏଥିପାଇଁ କିଛି ନିର୍ଦ୍ଦିଷ୍ଟ ମହିଳାଙ୍କୁ ଦେବୀଙ୍କର ଆଶୀର୍ବାଦ ରହିଛି। ଏପରି ଯୌନ ସଂପର୍କରେ ନାଥାଏ ଆବେଗ ନା ଶାରୀରିକ ତୃପ୍ତି। ସେହି ପୁରୁଷ ଏବଂ ସ୍ତ୍ରୀ କେବଳ ଦେବୀମାଆଙ୍କ ନିର୍ଦ୍ଦେଶର ଗୋଟିଏ ମାଧ୍ୟମ ହୋଇଥାଆନ୍ତି।"

ଅମ୍ରିତା କଣ କହିବ କିଛି ଭାବିପାରୁନଥାଏ । ତା’ ସହିତ ଏସବୁ କଣ ଘଟିଯାଉଛି ସେ କରିବବା କଣ ? ଭାବିବାବେଳକୁ ବୃଦ୍ଧ ନିଜ ଡାହାଣ ପକେଟରୁ ଟଙ୍କା ବିଡାଟିଏ ବାହାର କରି ଅମ୍ରିତା ଆଡକୁ ବଢାଇଦେଲେ, “ନିଅ, ତୁମ କାମରେ ଆସିବ ।”

ଅମ୍ରିତା ଏକାସାଙ୍ଗରେ ଏତେଗୁଡ଼ିଏ ଟଙ୍କା ଦେଖି ଆଶ୍ଚର୍ଯ୍ୟ ହୋଇଗଲା, “ମୁଁ ତ ଆପଣଙ୍କୁ ଟଙ୍କା ମାଗିନାହିଁ ।”

“ତୁମର ଆବଶ୍ୟକତା ଅଛି, ରଖ ।”

କେଉଁ ଆବଶ୍ୟକତାର କଥା ଭାବି ବୃଦ୍ଧ ଅମ୍ରିତାକୁ ଏତେଗୁଡାଏ ଟଙ୍କା ଦେଉଛନ୍ତି.... ହୋଇପାରେ ଦିବ୍ୟଦୃଷ୍ଟିରେ ଅମ୍ରିତାର ଆବଶ୍ୟକ ଥିବା କଥା ସେ ଜାଣିପାରିଛନ୍ତି, “ଆପଣଙ୍କୁ କେତେ ଦିନ ଭିତରେ ଫେରସ୍ତ କରିବି ?”

“ଫେରସ୍ତ କଥା ମୁଁ କହିନାହିଁ । ଏହା ତୁମର ପ୍ରାପ୍ୟ ।”

“ତେବେ ମୁଁ ଆଦୌ ନେବି ନାହିଁ ।”

“ବାପାର ପଇସା ଉପରେ ଝିଅର ଅଧିକାର ଅଛି । ଜାଣ ଏହା ମୋର ତୁମ ପ୍ରତି ଆଶିର୍ବାଦ ।”

ଏ କିଭଳି ଆଶିର୍ବାଦ, ଯାହା ଖାଲି ତାକୁ ହିଁ ମିଳୁଛି । ଯଦିଚ ଦୁନିଆଁରେ ଏତେ ଭିକାରୀ ପ୍ରତିଦିନ ଏତେ ଲୋକଙ୍କ ସାମ୍ନାରେ ହାତ ପତାନ୍ତି ଆଉ ସେମାନଙ୍କୁ ଛି ଛାକର ବିନା ଆଉ କିଛି ମିଳେନାହିଁ । ଅଥଚ ଅମ୍ରିତା ପ୍ରତି ଏପରି ଦୟା, “ନା, ଏହି ଟଙ୍କା ମୁଁ ନେଇପାରିବି ନାହିଁ ।”

“ହଉ ଠିକ୍ ଅଛି ତମର ଯେବେ ସୁବିଧା ହେବ ମୋତେ ଫେରାଇଦେବ ।” ଅମ୍ରିତା ଏହାପରେ ଅଧିକ କିଛି ନକହି ପଇସା ରଖିନେଲା ।”

ନୂତନ ସ୍ଥାନ, ଆଉ ନୂତନ ପରିବେଶ ଭିତରେ ସବୁ ଲୋକ ତାକୁ ଅଯବ ଲାଗିଲେ। କିନ୍ତୁ ଧିରେ ଧିରେ ଅମ୍ରିତା ସହଜ ହୋଇଗଲା ସେହି ପରିବେଶ ଭିତରେ । ଅମ୍ରିତା ସହଜ ହେବା ବେଳକୁ ବୃଦ୍ଧ ତା’ଠାରେ ପୁନଃ ବ୍ୟକ୍ତ କରନ୍ତି, “ଅମ୍ରିତା ତୁମେ ପ୍ରକୃତ ଲକ୍ଷ୍ୟରୁ ବିଚ୍ୟୁତ ହେଉଛ । ତୁମକୁ ମୋ କଥାନୁଯାୟୀ କାର୍ଯ୍ୟ କରିବାକୁ ହେବ ନଚେତ୍ ଏଠାରେ ଅଧିକ ପରିଶ୍ରମ କରି ସଭିଙ୍କ ବିଶ୍ୱାସ ଭାଜନ ହେବାକୁ ହେବ । ନହେଲେ ମୋତେ ଅନ୍ୟମାନେ ଅଙ୍ଗୁଳି ଦେଖାଇବେ ।

ଅମ୍ରିତା ବୃଦ୍ଧଙ୍କର ଏହି ବକ୍ତବ୍ୟରେ ମନେ ମନେ ଭାବେ ଏ କିଭଳି ସନ୍ଥ ଯାହାଙ୍କ ମନରେ ସେବା କରିବାର ଆଗ୍ରହ, ଆଉ ଲୋକଙ୍କଠାରେ ସମାଲୋଚିତ ହୋଇଯିବାର ଭୟ ? ନା, ନିଶ୍ଚୟ ଏହି ବୃଦ୍ଧ ଛଳନା କରୁଛନ୍ତି।

ଅମ୍ରିତା ଏଥର ଅଧିକ ନିଜକୁ ସଂଯତ କଲା, ବୃଦ୍ଧଙ୍କ ଚାଲିଚଳନକୁ ଅଧିକ ନିରିକ୍ଷଣ କଲା । ସତରେ ନିଜକୁ କେତେ ଚାଲାକ ଭାବୁଛନ୍ତି ଏହି ବୃଦ୍ଧ । ଜନସେବା ନାଁରେ ନିଜର

ଆତ୍ମ ସନ୍ତୁଷ୍ଟି ପାଇଁ ଏସବୁ କରୁନାହାନ୍ତି ତ ? ମୋତେ ସେଥିରୁ କଣ ମିଳିବ, ଉପରକୁ ଯାହା ଦେଖାଯାଉଛି ସେ ଜନସେବାରେ ନିଜକୁ ନିୟୋଜିତ ରଖିଛନ୍ତି । ଯେପରି ଭାବନା ଆସୁପଛେ ଅମ୍ରିତା ବୃଦ୍ଧଙ୍କ ସହ ଏଇଠି ଏକମତ ହୁଏ । ତେବେ କଣ ସତରେ ତନ୍ତ୍ର ସାଧନା ବଳରେ ଜନସେବା କରିବା ସହଜ ? ହେଇପାରେ ଗୋଟିଏ ଚାନ୍ସ ନିଆଯାଉ ।

କିଛି ଦିନ ପରେ ଅମ୍ରିତା ମନରେ କିଛି ଆଶଙ୍କା ଜନ୍ମ ନେଲା; ନା, ସେ ତନ୍ତ୍ର ସାଧନା କରିବ ନାହିଁ। ଛି... ବୃଦ୍ଧ ଯେଉଁସବୁ ନିୟମ ପାଳନ କଥା କହିଛନ୍ତି ସେସବୁ ପାଳନ କରିବା ତା'ପକ୍ଷରେ ସମ୍ଭବ ନୁହେଁ। ସେସବୁ କଥା ଚିନ୍ତା କଲା ବେଳକୁ ତା'ର ଭ୍ରୂ-କୁଞ୍ଚନ ହୁଏ; ନା, ସେ ଆଜି ହିଁ ବୃଦ୍ଧଙ୍କୁ ମନା କରିଦେବ । ବାହାରି ପଡିଲା ଏଥର ବୃଦ୍ଧଙ୍କୁ ଭେଟଇବା ପାଇଁ। ବୃଦ୍ଧଙ୍କ ପାଖରେ ପହଞ୍ଚିବା ପୂର୍ବରୁ ଗୋଟିଏ ବଡ ମନ୍ଦିର ସାମ୍ନାରେ ଧୁ... ଧୁ... ଖରାରେ ଭିକାରୀ ମାନଙ୍କର ବିକଳ ଡାକ ତାକୁ ବ୍ୟତିବ୍ୟସ୍ତ କରିପକାଉଥିଲା, "ମାଆ ଦିଅମା..., ବାବୁ ତମର ମଙ୍ଗଳ ହେବ..., ତୁମ ମନସ୍କାମନା ପୂରଣ ହେବ ବାବୁ ଦିଅ, ଦିଅ ବାବୁ... ।" ଏସବୁରେ ସେ ଅନ୍ୟମନସ୍କ ହୋଇଗଲା।

ଓଃ ଅମ୍ରିତାର କାନମୁଣ୍ଡା ଝାଏଁ ଝାଏଁ ହେଇଯାଉଥାଏ । କେତେ ଦୁଃଖିରେ ଅଛନ୍ତି ଏମାନେ...ଏପରି ଯନ୍ତ୍ରଣାରେ ଏମାନେ ବଞ୍ଚୁଛନ୍ତି କିପରି... ? ଏମାନଙ୍କର ଜୀବନର ଲକ୍ଷ୍ୟ କଣ...? ସେହି ଭିକାରୀମାନଙ୍କୁ ନିରେଖୁଥିବାବେଳେ ଅମ୍ରିତାର ପଛ ପାଖରୁ ଜଣେ ସ୍ତ୍ରୀଲୋକ କୋଳରେ ବର୍ଷକର ଛୁଆ ଏବଂ ଦୁଇ ହାତରେ ତିନିରୁ ପାଞ୍ଚବର୍ଷର ଦୁଇଟି ପିଲାଙ୍କୁ ଧରି, "ମାଆ କିଛି ଦିଅ... ପିଲାଙ୍କ ପେଟକୁ ଆଜି କିଛି ବି ଯାଇନି । ତୁମ ପିଲାଛୁଆର ମଙ୍ଗଳ ହେବ ମାଆ ତୁମକୁ ଠାକୁର ଆହୁରି ଦେବେ...।" ଅମ୍ରିତା ସେହି ସ୍ତ୍ରୀ ଲୋକକୁ କିଛି କାମ ଧନ୍ଦା ନକରି ରାସ୍ତାରେ କାହିଁକି ଭିକ ମାଗୁଛି ବୋଲି ପ୍ରଶ୍ନ କଲା। ସେହି ସ୍ତ୍ରୀଲୋକ ତା' ସହ ଘଟିଥିବା କାହାଣୀ ସଂକ୍ଷେପରେ କହିବା ଆରମ୍ଭ କଲା, "ମୁଁ ପାଠସାଠ ପଢିନି ମାଆ, ଘର କାମ କରିବା ପାଇଁ ମନ କଲି କେତେ ବାବୁ ବାବୁଆଣୀଙ୍କ ଘରେ କାମ ମାଗିଲି କାମ ପାଇଲି , ଆଉ କଲି ମଧ୍ୟ ହେଲେ ମାସ ପୂରି ପଇସାଟିଏ ପାଇବା ବେଳକୁ ମୋ ଦେହରେ ସେହି ବାବୁମାନଙ୍କର ଆଖି କାହାକୁ କଣ କହିବି ମାଆ । ଲାଜର କଥା, ଲାଜରେ କାହାକୁ କିଛି କହିପାରେନି କାମ ଛାଡି ଚାଲି ଆସେ ସେମାନଙ୍କୁ ଆଉ ଯାଇ ପଇସା କଥା କଉ ମୁହଁରେ କହିବି, ନା କାମ କରିବା କଥା କହିପାରିବି ?

ଅମ୍ରିତା ନିଃଶବ୍ଦରେ ସେହି ସ୍ତ୍ରୀଲୋକର କଥା ଶୁଣୁଥିଲା ଏବଂ ଭାବୁଥିଲା, 'ସତରେ କେତେ ଦୟନିୟ ଅବସ୍ଥାରେ ଏମାନେ ଜୀବନ କାଟୁଛନ୍ତି ।' ସେହି ସ୍ତ୍ରୀଲୋକଏବଂ ତାର ତିନି ପିଲାଙ୍କ ପେଟ ପୁରିଲାପରି ସେମାନଙ୍କୁ କିଛି ପଇସା ଦେଇ ଅମ୍ରିତା ଆଗେଇଲା । ମନେ ମନେ ଭାବୁଥାଏ ଏହି ଭିକାରୀଙ୍କ ପାଇଁ ସେ ଯାହା ଚିନ୍ତା କରିଛି ତୁରନ୍ତ କିଛି

ବ୍ୟବସ୍ଥା କରିବାକୁ ହେବ । ତେବେ କଣ ତନ୍ତ୍ର । ହଁ ମୁଁ ଏମାନଙ୍କ ଥଇଥାନ ପାଇଁ ସବୁ କିଛି କରିପାରିବି । ନା, ବୃଦ୍ଧଙ୍କୁ ମନା କରିବି ନାହିଁ । ବରଂ ଆଜି ତାଙ୍କୁ ଆହ୍ୱାନ କରିବି "ହ୍ଲୀଂ କ୍ଲୀଂ ଶ୍ଳୀଂ", "ହ୍ଲୀଂ କ୍ଲୀଂ ଶ୍ଳୀଂ", "ହ୍ଲୀଂ କ୍ଲୀଂ ଶ୍ଳୀଂ"... । ଅମ୍ରିତା ପହଞ୍ଚିଲା ବୃଦ୍ଧଙ୍କ ସାମ୍ନାରେ । ସେ ଆଜି ଖୁବ୍ ବଳିଷ୍ଠ, ଶକ୍ତି ମୟୀ, ତ୍ରିଶୂଳ ଧାରିଣୀ ପରି ଦେଖାଯାଉଛି । ବୃଦ୍ଧଙ୍କ ଆଡକୁ ଟଙ୍କା ବିଡାକୁ ବଢାଇ ଦେଇ ନିରୋଳାରେ ଦେଖା କରିବା କଥା ବ୍ୟକ୍ତ କରେ । ବୃଦ୍ଧ କିଛି ସମୟ ପରେ ଏକାନ୍ତ ବେଳାରେ ଅମ୍ରିତାକୁ ନିଜ କକ୍ଷକୁ ଡାକିଲେ, "କୁହ ଅମ୍ରିତା କଣ କହିବାର ଅଛି କୁହ ?"

"ମୁଁ ଆପଣଙ୍କ ସହ ତନ୍ତ୍ର ସାଧନା କରିବାକୁ ଚାହେଁ, କ'ଣ ଆପଣ ପ୍ରସ୍ତୁତ ଅଛନ୍ତି ।" ବୃଦ୍ଧ ଚକିତ ହୋଇ ତା' ଆଡକୁ ଚାହିଲେ, ଏବଂ ନିଜେ ଜିତିଯାଇଥିବାର ଗୌରବରେ ଆନନ୍ଦିତ ହେଲେ । ବୃଦ୍ଧ ଦୀର୍ଘ ଦିନ ଧରି ଏହି ସମୟକୁ ଅପେକ୍ଷା କରିଥିଲେ । କାଳବିଳମ୍ବ ନକରି ବୃଦ୍ଧ ତୁରନ୍ତ ନିର୍ଦ୍ଦିଷ୍ଟ ଦିନ ଏବଂ ସ୍ଥାନ ଧାର୍ଯ୍ୟ କଲେ । ଏବଂ ଅମ୍ରିତାକୁ ତାଗିଦ କଲେ ସ୍ୱାମୀ ସହ ନିର୍ଦ୍ଦିଷ୍ଟ ଦିନର ପୂର୍ବ ତିନି ଦିନରୁ ଯୌନ ସଂପର୍କ ନରଖିବାକୁ , "ଆଉ ମନେରଖ ଅମ୍ରିତା ଏହି ସାଧନା କରିବାକୁ ଆଠରୁ ବାର ଘଣ୍ଟା ଲାଗିବ ତେଣୁ ତୁମେ ତୁମ ସ୍ୱାମୀଙ୍କୁ କିଛି ମିଥ୍ୟା କହି ମୋ ସହିତ ଏହି ଦୀର୍ଘ ସମୟ ରହିବ, ଏହି ସମୟରେ ତୁମ ସ୍ୱାମୀଙ୍କର ଚିନ୍ତା ଯେପରି ତୁମ ମନକୁ ନଆସେ, ଆଉ ମନେରଖ ଯେମିତି ଏହି ସମୟରେ କୌଣସି ବ୍ୟାଘାତ ନହେବ ସେଥିପାଇଁ ତୁମେ ସତର୍କ ଥିବ ।"

"ମୁଁ ଜନସେବା ପାଇଁ ଏଭଳି ପଦକ୍ଷେପ ନେଉଛି ସେଥିରେ ସ୍ୱାମୀ କି ସମାଜକୁ ମିଛ କହିବାର କୌଣସି ପ୍ରୟୋଜନ ନାହିଁ। ମୁଁ ମୋ ସ୍ୱାମୀଙ୍କୁ ମିଥ୍ୟା କହିପାରିବିନାହିଁ, ମିଥ୍ୟାରେ ମୁଁ ବିଶ୍ୱାସ ରଖେନା କି ମିଥ୍ୟାର ସାହାରା ନେଇ ସଂପାଦିତ ହେଉଥିବା କାର୍ଯ୍ୟ କେବେ ସଫଳ ହୁଏନା ତାହା ମୁଁ ଜାଣିଛି।"

"କିନ୍ତୁ ମନେରଖ, ପରେ ଯେତେବେଳେ ତୁମ ସ୍ୱାମୀ ଜାଣିବେ ହୁଏତ ତୁମ ଜୀବନରେ ବିଶୃଙ୍ଖଳା ସୃଷ୍ଟି ହୋଇପାରେ ।"

"ହେଉ, ତାହା ସାମ୍ନା କରିବାକୁ ମୁଁ ପ୍ରସ୍ତୁତ ଅଛି ।"

"ଯଦି ତୁମେ ସାମ୍ନା କରିବ ତୁମ ସ୍ୱାମୀ ତୁମକୁ ତ୍ୟାଗ କରିପାରନ୍ତି ?"

"ସେଥିରେ ମୋର ଭୟ ନାହିଁ । ମୁଁ ଚାହେଁ ଭିକାରୀମାନଙ୍କର ଥଇଥାନ।"

ନିର୍ଦ୍ଦିଷ୍ଟ ଦିନ ଉପନିତ ହେଲା, ବୃଦ୍ଧ ଏବଂ ଅମ୍ରିତା ନିର୍ଦ୍ଦିଷ୍ଟ ସ୍ଥଳରେ ଏକାଠି ହେଲେ । ବୃଦ୍ଧ ନିରୋଳା କକ୍ଷ ଭିତରେ ଅମ୍ରିତାକୁ ନିଜ ବାହୁବନ୍ଧନରେ ଜାବୁଡ଼ି ଧରିଲେ । ଅମ୍ରିତା ପ୍ରତିକ୍ରୀୟା ବିହୀନ ହୋଇ ଉଚ୍ଚାରଣ କରୁଥିଲା, "ହ୍ଲୀଂ କ୍ଲୀଂ ଶ୍ଳୀଂ", "ହ୍ଲୀଂ କ୍ଲୀଂ ଶ୍ଳୀଂ" । ବୃଦ୍ଧଙ୍କ ଦେହ ଅବଶ ହୋଇପଡିଲା। ସେ ଅମ୍ରିତାକୁ ନିଜ

ବାହୁବନ୍ଧନରୁ ମୁକୁଳାଇ ନେଲେ ଏବଂ ଦୂରକୁ ଛିଟିକିଗଲେ । ଅମ୍ରିତା ସେମିତି ମନ୍ତ୍ର ଉଚ୍ଚାରଣ କରୁଥିଲା ଏବଂ ଗୋଟି ଗୋଟି କରି ନିଜ ଅଙ୍ଗରୁ ବସ୍ତ୍ର ତ୍ୟାଗ କରୁଥିଲା । ସଂପୂର୍ଣ୍ଣ ଉଲଗ୍ନ ହୋଇ ବୃଦ୍ଧଙ୍କ ଆଖିରେ ଆଖି ମିଶାଇଲା ଏବଂ ବୃଦ୍ଧଙ୍କ ଆଡକୁ ଦୁଇ ହାତ ବଢାଇ ଆହ୍ୱାନ କଲା । ବୃଦ୍ଧ ଶକ୍ତିହୀନ ହୋଇପଡୁଥିଲେ । ତାଙ୍କ ମୁଣ୍ଡକୁ କୌଣସି ବୁଦ୍ଧି ଦିଶୁନଥିଲା । ଅମ୍ରିତା ସେମ୍ତି ହାତ ବଢାଇ ଡାକୁଥିଲା, "ହ୍ଲୀଂ କ୍ଲୀଂ ଶ୍ଲୀଂ"ର ଉଚ୍ଚାରଣ ଶୁଭୁଥିଲା । ଅମ୍ରିତା ବୃଦ୍ଧଙ୍କୁ ଉଦ୍‌ବୁଦ୍ଧ କରେ ଏବଂ "ହ୍ଲୀଂ କ୍ଲୀଂ ଶ୍ଲୀଂ"ର ଉଚ୍ଚାରଣ କରିବାକୁ କହେ । ବୃଦ୍ଧ ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ ତେବେ ତାଙ୍କ ମୁହଁରୁ ମନ୍ତ୍ର ବଦଳରେ ଶୁଭୁଥିଲା କେବଳ ମାଆ, ମାଆ, ମାଆ...।

◆ *(ଆରୋହଣ, ଆଗାମୀ ଶତାବ୍ଦୀ)*

# ଉତ୍ତରାଧିକାରୀ

ଆରତୀ ବହୁତ ଦିନରୁ ଦେହ ଖରାପରେ ପଡି ଆଜି ଶେଷ ନିଶ୍ୱାସ ତ୍ୟାଗ କଲା । ଆଶ୍ରମର ସବୁ ଲୋକ ସ୍ତବ୍ଧ ଥିଲେ । ଘର ବାହାରେ ରହି କାହାର ମୃତ୍ୟୁ ଘଟୁଥିବା ମୁଁ ଜୀବନରେ ପ୍ରଥମ ଥର ଦେଖୁଥିଲି । ମୁଁ ସେତେବେଳେ ଆଶ୍ରମକୁ ଯାଇଥିଲି କିଛି ଦିନ ବୁଲିବାକୁ । ଆଶ୍ରମ ପରିବେଶ ସେଠାକାର ଚାଲିଚଳଣୀ ସତରେ ମଣିଷକୁ ଦିଏ ଆତ୍ମତୃପ୍ତି ଏବଂ ଜୀବନକୁ ଆଉ ଟିକେ ଆଗେଇ ନେବାକୁ ମିଳେ ଶକ୍ତି । ସେହି ଅଳ୍ପ ଦିନ ମଧ୍ୟରେ ଆରତୀ ମୋର ଖୁବ୍ ନିକଟ ହୋଇଥିଲା । ନିଜର ଅନେକ ଗୋପନ କଥା ସେ ମୋ ପାଖରେ ବ୍ୟକ୍ତ କରିଥିଲା । ମୁଁ ଅନୁଭବ କରିପାରୁଥିଲି ସେଠାରେ ରହୁଥିବା ମହିଳାମାନଙ୍କ ଆଖିରେ ଦୁଃଖ ଭାସୁଥିଲା । କିନ୍ତୁ ଆରତୀ, ଆଖିରୁ ଯେପରି ଦୁଃଖ ଓଗାଳୁଥିଲା ।

ଆରତୀର ଦୁଇ ପୁଅ । ଦୁହିଁଙ୍କ ପାଖକୁ ସେ ଅନେକ ଚିଠି ଲେଖିବା ପରେ ମଧ୍ୟ ସେମାନେ କେବେ ଆରତୀକୁ ଦେଖା କରିବାକୁ ଆସୁନଥିଲେ । ଦିନେ ସେ ଖୁବ୍ ଦୁଃଖିତ ସ୍ୱରରେ କହିଲା–'ଦେଖିବ ଅଞ୍ଜନା, ମୋ ପୁଅମାନେ ମୋ ମଲାପରେ ମଧ୍ୟ ମୋତେ ନିଆଁ ଦେବାକୁ ଆସିବେ ନାହିଁ ।'

ଆଶ୍ରମର ସଞ୍ଚାଳକଙ୍କ ଦ୍ୱାରା ଆରତୀର ଦୁଇ ପୁଅଙ୍କ ପାଖକୁ ମାଆର ମୃତ୍ୟୁ ଖବର ପଠାଇ ଦିଆଗଲା । ମୁଁ ଖୁବ୍ ଦୁଃଖି ହେବା ସହ ଭିତରେ ଭିତରେ କମ୍ପୁଥିଲି, ସାମ୍ନାରେ ଆରତୀର ମୃତ ଦେହ ପଡିଥିଲା ।

'ଆଉ କେତେ ଅପେକ୍ଷା କରିବା । ଚାଲ ଶ୍ମଶାନ ଯିବା ।' ଆଶ୍ରମର କର୍ମଚାରୀ ପରସ୍ପର ଭିତରେ କଥାବାର୍ତ୍ତା କରୁଥିଲେ । ହଁ ଏବେ ତାଙ୍କ ପୁଅମାନଙ୍କୁ ଅପେକ୍ଷା

କରିବା ନିରର୍ଥକ, ଅପେକ୍ଷା ନକରି ଶବଦାହର ବନ୍ଦୋବସ୍ତ କରିବା । ରାମନାମ ସତ୍ୟ ହେ ସମ୍ବୋଧନ କରି ଶ୍ମଶାନ ମୁଖ ହେଲେ ଆଶ୍ରମର କର୍ମଚାରୀମାନେ। ମୋ ପାଖରେ ସୁମିତ୍ରା ଆଶ୍ରମରେ ରହୁଥିବା ଆଉ ଜଣେ ମହିଳା ଉପସ୍ଥିତ ଥିଲେ । ତାଙ୍କ ମୁହଁରୁ ଗୋଟିଏ ଅଜବ ଭାବ ପ୍ରକଟ ହେଉଥିଲା । ମୁଁ ଠିକ୍ କରି ଠଉରାଇ ପାରୁ ନଥିଲି ତାଙ୍କର ଏପରି ଭାବନାକୁ । ତାଙ୍କ କାନ୍ଧ ଉପରେ ହାତ ରଖିଲି, ସେ ସେମିତି ଆରତୀର ଶବଦାହ ଶୋଭାଯାତ୍ରାକୁ ଏକ ଲୟରେ ଚାହିଁ ରହିଥିଲେ । ସେ ଗୁଣୁଗୁଣୁ ହୋଇ କିଛି କହିବା ଆରମ୍ଭ କଲେ, "ମୁଁ ଆରତୀ... ମୋତେ ଦାହ କରିବା ପାଇଁ ନିଆଯାଉଛି... ମୁଖାଗ୍ନି ପାଇଁ ସମସ୍ତେ ମୋ ପୁଅ ଭରତକୁ ଅପେକ୍ଷା କରିଛନ୍ତି... କିନ୍ତୁ ସେ ଆସୁନାହିଁ।" ତାଙ୍କର ପ୍ରଳାପ କ୍ରମାଗତ ଚାଲିଥାଏ ମୁଁ ସେଠାରେ ଉପସ୍ଥିତ ଅନ୍ୟମାନଙ୍କ ଆଡକୁ ଚାହିଁଲି ଆଶ୍ରମର ମହିଳାମାନେ ଆଖିର ଲୁହ ପୋଛୁଥିଲେ । ପୁରୁଷ ଲୋକମାନେ ନୀରବରେ ଠିଆ ହୋଇଥିଲେ ।

'ଏଇ ଏଇ ଦେଖ ଚାରିଜଣ ଲୋକ ମୋତେ ନିଜ କାନ୍ଧରେ ଉଠାଇ ନେଉଛନ୍ତି ।'

ଏଥର ମୁଁ ସ୍ପଷ୍ଟ ହୋଇଗଲି ସେ ନିଜକୁ ଆରତୀ ସ୍ଥାନରେ ଦେଖୁଛନ୍ତି ଏବଂ ନିଜ ମୃତ୍ୟୁ ପରେ ଏଭଳି ଏକ ଦୃଶ୍ୟ ଘଟିଯିବାର କଳନା କରୁଛନ୍ତି । ଆରତୀ ରୂପରେ ସୁମିତ୍ରା ନିଜ ଜୀବନର ଅନ୍ତିମ କଷ୍ଟଦାୟକ ସତ୍ୟ ଦେଖୁଥିଲେ । ଯେପରି ଆରତୀର ମୃତ୍ୟୁ ସୁମିତ୍ରାର ହୃଦୟକୁ ବିଦାରିତ କରୁଥିଲା, ଚିରି ପକାଉଥିଲା ଏବଂ ଛିନ୍‌ଭିନ୍ କରି ପକାଉଥିଲା । ସୁମିତ୍ରା ହଠାତ ଗର୍ଜିଉଠିଲେ । ସମସ୍ତେ ତାଙ୍କ ଆଡକୁ ଚାହୁଁଥିଲେ କିନ୍ତୁ ସେ ସେମିତି ଅନବରତ ଗର୍ଜୁଥିଲେ 'ନା, ମୋତେ ଜାଳନା, ମୋ ପୁଅ ଆସିବ । ସେ ମୋତେ ନିଆଁ ଦେବ, ପୁଅ ହିଁ ତ ବାପା ମାଆଙ୍କୁ ନିଆଁ ଦିଏ ? କ'ଣ ମୋର ଏତିକି ମଧ୍ୟ ଅଧିକାର ନାହିଁ ଯେ ମଲାବେଳକୁ ପୁଅ ପାଖରୁ ଟିକେ ନିଆଁ ପାଇବି ?'

ସମସ୍ତେ ସୁମିତ୍ରା ପାଖକୁ ଆସି ତାଙ୍କୁ ଚୁପ୍ କରିବାକୁ ଲାଗିଲେ । କିନ୍ତୁ ସେ ସେମିତି ପ୍ରଳାପ କରି ଚାଲିଥାଏ । ମାନସିକ ଭାରସାମ୍ୟ ହରାଇ ପିନ୍ଧିଥିବା ଲୁଗାକୁ ଟାଣଇ ଓଟାରି ଚିରିପକାଉଥାଏ ।

'ଆରେ ଏ ବୁଢୀ ତ ପାଗଳ ହୋଇଗଲାଣି ।' ଭିଡ ଭିତରୁ କେହି ଜଣେ କହିଲେ ।

'ହଁ ହଁ ମୁଁ ପାଗଳ ହେଇସାରିଲିଣି... ।' ଏହା କହି ସୁମିତ୍ରା ନିଜ ଖୋଲା ଚୁଟିକୁ ଯୋରରେ ଭିଡି ଧରି ଯନ୍ତ୍ରଣାରେ ଅଚେତ ହୋଇ ତଳେ ପଡିଗଲେ ।

ସାତ ଦିନ ପରେ ସାମାନ୍ୟ ଦିନଚର୍ଯ୍ୟା ଆରମ୍ଭ ହେଲା । ଗୋଟିଏ ଗୋଟିଏ ମୁହୂର୍ତ୍ତରେ ଏପରି କିଛି ଘଟଣା ଘଟିଯାଏ ଯାହା ବ୍ୟକ୍ତିର ଜୀବନକୁ ଦୋହଲାଇ ଦିଏ । ସେଦିନ ଯନ୍ତ୍ରଣାରୁ ମୁଁ ମୁକ୍ତ ହୋଇ ନଥିଲି । କେଡେ ବିଚିତ୍ର ସତରେ ଏ ଜୀବନ ଆପଣାର

କହୁଥିବା ମଣିଷଗୁଡ଼ାକ କେତେବେଳେ ଯେ ଦୂରେଇଯାଆନ୍ତି ତାହା ସମସ୍ତଙ୍କୁ ଅଛପା । କେତେ ଆଦର ଅନାଦର ଦୁଃଖ ସୁଖ ସିନ୍ଦୁକ ଭିତରେ ବନ୍ଦ ଥାଏ ଗୋଟିଏ ଜୀବନ।

ମୁଁ ଚାହୁଁନଥିଲି ମୋ ଜୀବନର ସିନ୍ଦୁକକୁ ଖୋଲିବା ପାଇଁ କିଏ ଜାଣେ ଦୁଃଖଗୁଡ଼ାକ ଆବୋରି ବସିବେ ମୋତେ ଆଉ ମୁଁ ଯନ୍ତ୍ରଣାରେ ଛଟପଟ ହେବି । ମୋ ଚାହିଁବା ନଚାହିଁବାରେ ବା କ'ଣ ହେବ । ସୁମିତ୍ରା ପାଖକୁ ଆସିଲି, ମୋ ଚାହାଣୀରୁ ସେ ମୋ ମନରେ ଉଙ୍କିମାରୁଥିବା ପ୍ରଶ୍ନ ବୁଝିଗଲେ, ଉତ୍ତର ଦେଲେ- ଏବେ ଟିକେ ଭଲ ଲାଗୁଛି । ତାଙ୍କ ଉତ୍ତରରୁ ଜାଣିପାରିଲି ସେ ସ୍ୱାଭାବିକ ହୋଇଗଲେଣି। ଜୀବନର ଶେଷପାହାଚରେ ପହଞ୍ଚି ତାଙ୍କ ଜୀବନରେ ଘଟିଯାଇଥିବା ଦୁଃଖ ସବୁ ତାଙ୍କୁ ଜଳ ଜଳ ହୋଇ ଦେଖାଯାଉଥିଲା । ତାଙ୍କୁ ଆଶ୍ୱସ୍ତ କରିବାକୁ ଯାଇ ସଜାଡ଼ି ହେଇଯିବାପାଇଁ ଅନୁରୋଧ କଲି। ପିଲାଟିଏ ବିନା ଦ୍ୱିଧାରେ ମାଆ କଥା ମାନିନେଲାପରି ସେ ମୋ କଥା ମାନି ମୁହଁ ଧୋଇବାକୁ ବାଥ୍‌ରୁମ ଆଡ଼କୁ ଚାଲିଗଲେ । ବାଥ୍‌ରୁମ୍‌ରୁ ଆସି ତଉଲିଆରେ ମୁହଁକୁ ପୋଛୁ ପୋଛୁ ଦର୍ପଣରେ ନିଜ ମୁହଁକୁ ଦେଖି କହିଲେ ଜୀବନ କେଉଁଠି ଆରମ୍ଭ କରିଥିଲି ଆଉ ଆଜି କେଉଁଠି ପହଞ୍ଚି ଗଲି ।

ମୁଁ ଆଶ୍ରମରେ ଦୀର୍ଘ ରାତି ପର୍ଯ୍ୟନ୍ତ ଉଜାଗର ଥାଏ। ଅନ୍ୟ ସମସ୍ତେ ନିଘୋଡ଼ ନିଦରେ ଶୋଇପଡ଼ିଲେଣି। କେଜାଣି ଏମାନଙ୍କୁ ନିଦ କିପରି ଆସୁଛି ? ବୋଧହୁଏ ଏମାନେ ଶୂନ୍ୟପଣ, ଏକାକୀପଣ ଓ ନିରବତାର ଜୀବନକୁ ଆପଣେଇ ସାରିଛନ୍ତି। ମୁଁ ସେଠାକାର ପରିବେଶକୁ ଦେଖି ତଟସ୍ଥ ହୋଇଯାଉଥାଏ । ଦୁଃଖଯନ୍ତ୍ରଣାକୁ ନିଜ ଛାତି ଭିତରେ ଜାକି ଧରି ସେମାନେ ଏଠାରେ ପଡ଼ିରହିଛନ୍ତି । ଛାତି ଭିତରର ଦୁଃଖ ସେମାନଙ୍କ ମୁହଁରେ ସ୍ପଷ୍ଟ ଭାବରେ ବାରି ହେଇଯାଉଥିଲା । ସୁମିତ୍ରା କଡ଼ ଲେଉଟାଇଲେ, ଆରତୀଙ୍କ ମୃତ୍ୟୁର ପରବର୍ତ୍ତୀ ଘଟଣା ତାଙ୍କୁ ହୁଏତ ଅଧିକ ବିବ୍ରତ କରୁଥାଏ । ମୁଁ ଶୋଇ ନଥିବାର ଦେଖି ସେ ଆସି ମୋ ପାଖରେ ବସିଲେ । ମୁଁ ତାଙ୍କୁ ସେମିତି ଚାହିଁ ରହିଥାଏ, ମୋ ମୁହଁରୁ ଗୋଟିଏ ବି ଶବ୍ଦ ବାହାରିଲାନାହିଁ । ଯଦିଓ ସୁମିତ୍ରା ମୋଠାରୁ କିଛି ଆଶ୍ୱସନା ଆଶା କରୁଥିଲେ କିନ୍ତୁ ମୁଁ ସେହି ମୁହୂର୍ତ୍ତରେ ଶୂନ୍ୟ ହୋଇଯାଇଥିଲି।

'ଜାଣ ଅଞ୍ଜନା ଏଠାକୁ ଆସିବା ପୂର୍ବରୁ ଭରତ ମୋତେ କ'ଣ କହିଥିଲା ?' ମୁଁ ଚୁପ ରହି ତାଙ୍କ କଥା ଶୁଣୁଥିଲି ।

'ମାଆ ତୁମେ ତ ଜାଣ ମୋର ଅବସ୍ଥା... ।' ଏତକ କହିଛି କି ନାହିଁ ମୁଁ ତାକୁ ଆଉ କିଛି କହିବାକୁ ଦେଲିନାହିଁ।

ମୁଁ ଭରତକୁ କଥା କୁହାଇ ନଦେଇ ଚୁପ କରାଇଦେଲି, କ'ଣ ବା କରିଥାନ୍ତି ତା' କଥା ଶୁଣି ? ସେ ବି କାହିଁକି ଅଯଥାରେ ସଫେଇ ଦେବ। ଯାହା ହେବାର ଥିଲା ତାହା ହୋଇଗଲା । ମୋର ଆଶ୍ରମକୁ ଆସିବାର ଥିଲା , ମୁଁ ଆସିସାରିଛି ।

'ତୁ ମୋତେ ଦେଖା କରିବାକୁ ଆସିବୁ ନା' ଭରତ ?' ମୋର ପ୍ରଶ୍ନ ଶୁଣି ଭରତ କିଛି ମୁହୂର୍ତ୍ତ ପାଇଁ ନିରବ ରହିଲା । ତା' ନିରବତାରେ ମୁଁ ମୋ ଉତ୍ତର ପାଇସାରିଥିଲି କିଛି ସମୟ ପରେ ସେ ତା'ଆଡ଼ୁ କହିଲା ଆସିବି ମାଆ ଚିନ୍ତା କର୍‌ନା ।

ଆଜକୁ ପ୍ରାୟ ତିନି ବର୍ଷ ହେବ, ସୁମିତ୍ରା ଏହି ଆଶ୍ରମକୁ ଆସିଛନ୍ତି କିନ୍ତୁ ଥରଟିଏ ବି ତାଙ୍କ ପୁଅ ଭରତ ଦେଖା କରିବାକୁ ଆସିନାହିଁ । କେତେ ସନ୍ଦେହରେ ଥାଏ ମଣିଷ କିନ୍ତୁ ଗୋଟିଏ ମୁହୂର୍ତ୍ତରେ ସବୁ ସତ୍ୟ ସାମ୍‌ନାକୁ ଚାଲିଆସେ ।

ତା' ପରେ ପରେ ମୁଁ ଅନେକ ସମୟରେ ସୁମିତ୍ରାକୁ ଦେଖିଛି ସେ ଝରକା ବାହାରକୁ ଦୀର୍ଘ ସମୟ ଧରି ଚାହିଁ ରହିବା । ଝରକା ବାହାରେ କେତେ ଲୋକ ଯା'ଆସ କରୁଥିବା ସେ ଦେଖୁଥାନ୍ତି । ମୁଁ ଠିକ ଅନୁମାନ କରିପାରୁଥିଲି ସେ ସେହି ଝରକା ବାହାରେ ନିଜ ପୁଅର ଆସିବା ବାଟକୁ ଚାହିଁ ରହୁଥିଲେ । କିନ୍ତୁ ସେ ଯେଉଁ ମୁହଁକୁ ଅପେକ୍ଷା କରୁଥିଲେ ସେ ମୁହଁକୁ କେବେ ଦେଖିବା ସୁଯୋଗ ହିଁ ଆସିନାହିଁ । ସେହି ସରଳ ନିଷ୍କପଟ ଆଖି ଦ୍ୱୟ ରାସ୍ତା ଆଡ଼କୁ ସେମିତି ନିର୍ମମ ଭାବେ ଚାହିଁ ରହିଥାଏ। କିନ୍ତୁ କେବେ ବି ଭରତ ଆସିଲାନାହିଁ।

ଥରେ ସୁମିତ୍ରା ଝରକା ବାହାରେ କ'ଣ ଦେଖିଲେ କେଜାଣି ଝରକା ପାଖରୁ ମୁହଁ ବୁଲାଇ ଆଣି ସେ ନିଜ ପିଲାଦିନେ ଘଟିଥିବା ଗୋଟିଏ ଘଟଣାକୁ ମନେପକାଇ ମଉଳା ହସଟିଏ ହସିଦେଲେ ।

'ଆଜି ମୋର ପିଲାଦିନ ମନେ ପଡ଼ିଯାଉଛି । ସତରେ ପିଲାଦିନ ବହୁତ ଭଲ । ଚିନ୍ତାମୁକ୍ତ, ଖେଳ-ଖେଳନା, କିନ୍ତୁ ସେତେବେଳେ ବି ମୋ ଭାଗରେ କିଛି ନଥିଲା । ମୋ ଭାଗରେ ଥିଲା ସ୍କୁଲ ଯିବା ପୂର୍ବରୁ ଏବଂ ଫେରିବା ପରେ ଘରର ଦାୟିତ୍ୱ। ଯେବେ ମୁଁ ବଡ଼ ହେଲି କଲେଜ ଗଲି, ମନ ଇନ୍ଦ୍ରଧନୁ ପରି ସ୍ୱପ୍ନ ଗୁନ୍ଥିବାରେ ଲାଗିଲା । ଭୂମିରୁ ପାଦ ଉଠି ଆକାଶ ଆଡ଼କୁ ଉଡ଼ିବାରେ ଲାଗିଲା । ସେହି ସମୟ ମଧ୍ୟ ଆସିଲା ଯେତେବେଳେ ମୋର ସ୍ୱପ୍ନ ସାକାର ହେବାକୁ ଲାଗିଲା । ବୋହୂ ସାଜି ଶ୍ୱଶୁର ଘରକୁ ଆସିଲି । ସେଠି ମୋର ଜୀବନ ଭିନ୍ନ ମୋଡ଼ ନେଲା। ସବୁ ସ୍ୱପ୍ନ ଭାଙ୍ଗି ଚୁରମାର ହୋଇଗଲା। ବିବାହର ଅଳ୍ପଦିନ ପରେ ଜାଣିଲି ମୋ ସ୍ୱାମୀ ଅନ୍ୟଜଣେ ମହିଳାଙ୍କୁ ଭଲ ପାଉଛନ୍ତି। ଏକଥା ସେ ମୋତେ ବିବାହର ପ୍ରଥମ ରାତିରେ ହିଁ ଜଣାଇଦେଲେ । ସେ ନିଜ ପିତାମାତାଙ୍କର ମନ ରଖିବାକୁ ମୋ ସହ ବିବାହ କରିଥିଲେ । ଯେ ପର୍ଯ୍ୟନ୍ତ ଶାଶୁ ଶ୍ୱଶୁର ବଞ୍ଚି ଥିଲେ ମୋର ଅନେକ ଆଦର କଲେ, ମୋ ସ୍ୱାମୀ ମଧ୍ୟ ଲୋକ ଦେଖାଣିଆ ପ୍ରେମ କଲେ । ଶାଶୁ ଶ୍ୱଶୁରଙ୍କ ମୃତ୍ୟୁ ପରେ ମୋ ସ୍ୱାମୀ ସେହି ସ୍ତ୍ରୀଲୋକକୁ ଆଣି ଘରେ ରଖିଲେ । ଭରତକୁ ସେତେବେଳକୁ ବର୍ଷେ ହେଲାଣି । ମୋ ସ୍ୱାମୀ ତ ମୋର ହେଲେ ନାହିଁ କିନ୍ତୁ ଆଶା ବାନ୍ଧିଥିଲି ମୋ ପୁଅ ସାରା ଜୀବନ ମୋ ପାଖେ

ପାଖେ ରହିବ । ମୋ ସ୍ୱାମୀ ସେହି ସ୍ତ୍ରୀ ଲୋକକୁ ନେଇ ଖୁସୀରେ ରହୁଥିବାବେଳେ ମୁଁ ସେମାନଙ୍କ ପାଇଁ ରନ୍ଧାବଢ଼ାଠାରୁ ଆରମ୍ଭ କରି ଘରର ସମସ୍ତ ପାଇଟି କରୁଥିଲି । ପୁଅର ସମସ୍ତ ଭବିଷ୍ୟତକୁ ଆଖି ଆଗରେ ରଖି ଛାତିକୁ ପଥର କରି ବଞ୍ଚିବାର ନିଷ୍ପତ୍ତି ନେଲି । ଆଜି ହୃଦୟଙ୍ଗମ ହେଉଛି ସେ ନିଷ୍ପତ୍ତି ମୋର ଭୁଲ୍ ଥିଲା । ଯାହା ପାଇଁ ଏତେ ସହିଲି ସେ ମୋତେ ଆଶ୍ରମରେ ରହିବାକୁ ବାଧ୍ୟକଲା ।

ମୁଁ ଯେ ପର୍ଯ୍ୟନ୍ତ ଘରର ସବୁ କାମ କରୁଥିଲି, ପିଲାଙ୍କୁ ସମ୍ଭାଳୁଥିଲି, ସେ ଯାଏଁ ଭରତ ଏବଂ ତା' ସ୍ତ୍ରୀ ମୋତେ ମାଆ ବୋଲି ଆଦର କରୁଥିଲେ କିନ୍ତୁ ଆଜି ଯେତେବେଳେ ମୁଁ ଦୁର୍ବଳ ହୋଇସାରିଛି ସେମାନଙ୍କର ଦାୟିତ୍ୱ ନେବାର ଶକ୍ତି ମୋ ପାଖରେ ନାହିଁ ସେତେବେଳେ ମୋ ଯତ୍ନ ନେବା ବଦଳରେ ସେମାନେ ମୋତେ ଆଶ୍ରମରେ ଛାଡିଦେଲେ । ଅନେକ ସମୟରେ ଏପରି ମଧ୍ୟ ହୋଇଛି ମୋ ବୋହୂର ଖରାପ ବ୍ୟବହାରରେ ମୋ ପୁଅ କେବେ ବି ପ୍ରତିବାଦ କରିନାହିଁ। ସେତେବେଳେ ମୁଁ ଭାବେ; ତୁ କାହାକୁ ଏତେ ଦୂରାଇଦେଉଛୁ-କାହାକୁ ଏତେ ଅନାଦର କରୁଛୁ। ତୋତେ ଦଶମାସ ଗର୍ଭରେ ଧରିବାର ଫଳ କ'ଣ ଏୟା... ? ଏହା କହି ସୁମିତ୍ରା ଭୋ ଭୋ କାନ୍ଦିବାକୁ ଲାଗିଲେ ।

'ସ୍ୱାମୀ ତ କେବେ ନିଜର ହୋଇପାରିଲେ ନାହିଁ କିନ୍ତୁ ଭରତ ତ ମୋ ନିଜ ରକ୍ତ, ମୋତେ ଏପରି ଅନାଦର କଲା କାହିଁକି ? ମୋର ତ ସେପରି କିଛି ଦୋଷ ନଥିଲା ମୋତେ କାହିଁକି ସେ ଆଶ୍ରମରେ ଛାଡିଦେଲା.. ? ଏଇଥି ପାଇଁନା ଚାକରାଣୀ ଭଳି ମୁଁ ତା'ଘରେ ଆଉ ଖଟି ପାରିଲିନାହିଁ । ସତରେ ମୋ ଜୀବନ ପ୍ରତି ମୋର ଘୃଣା ଆସୁଛି । ଏହା କହି ସୁମିତ୍ରା ଦୁଃଖରେ ଭାଙ୍ଗିପଡିଲା ।

ଏତେବେଳକୁ ମୋତେ ସେହି ଉକ୍ତିଟି ମନେପଡିଯାଉଥିଲା; ଯେବେ ଦୁର୍ଦ୍ଦିନ ଆସେ ସେତେବେଳେ କାହାର ସହଯୋଗ ମିଳେନା ନିଜର କହୁଥିବା ଲୋକଗୁଡାକ ଆପଣାଛାଏଁ ଦୂରେଇଯାଆନ୍ତି । ସୁମିତ୍ରା ଆଉ ଆରତୀ ସହିତ ମଧ୍ୟ ସେଭଳି ହିଁ ଘଟିଥିଲା, ସେମାନଙ୍କ ରକ୍ତର ସଂପର୍କୀୟମାନେ ସେମାନଙ୍କୁ ଏକା କରିଦେଇଥିଲେ ।

ମୁଁ ନିଜ ଭିତରେ ନିଜେ ଶୂନ୍ୟ ହୋଇଯାଉଥିଲି । ବ୍ୟକ୍ତିର ଜୀବନ କ'ଣ, ସେ ବଞ୍ଚେ କାହିଁକି, ତା' ବଞ୍ଚିବାର ଉଦ୍ଦେଶ୍ୟ କ'ଣ ? ଏସବୁ ପ୍ରଶ୍ନ ଭିତରେ ମୁଁ ଉତ୍ତର ବିହୀନ ହୋଇ ଏକ ରକମ ଶୂନ୍ୟତାରେ ରହିଲି । ଘର, ପରିବାର, ସମାଜ, ଉତ୍ତରାଧିକାରୀ ଏସବୁଙ୍କ ଭିତରେ ଆମେ ଏତେ ଜଟିଳ ଭାବରେ ଛନ୍ଦି ହୋଇଯାଉ କାହିଁକି ? ଅନେକ ମହାମନିଷୀ କହିଯାଇଛନ୍ତି ଆଶା ହିଁ ଜୀବନରେ ଦୁଃଖ ଦିଏ ଯେଉଁଠି ଆଶା ନଥାଏ ସେଠାରେ ଜୀବନ ହୁଏ ସୁଖୀ, ଆନନ୍ଦମୟ । ତେବେ ମଣିଷ ଭିତରେ ଆଶା ଜନ୍ମେ କେଉଁଠୁ ? ନିଶ୍ଚିତ ଭାବରେ ଏହା ଏକ ସ୍ୱାଭାବିକ ପ୍ରକ୍ରୀୟା ହୋଇଥିବ

କିମ୍ବା ଯାହାଠାରେ ଏହି ସ୍ୱାଭାବିକ ପ୍ରକ୍ରୀୟା ନାହିଁ ସେ ହୁଏତ ସମୟର ବାଧ୍ୟତାରେ ଏଭଳି ଆଶାବିହୀନ ଜୀବନଟିଏ ପ୍ରାପ୍ତ କରିପକାଉଥିବ । ଏ ପ୍ରାପ୍ତି ତାକୁ ନିୟତି ଦିଏ ବା ସମୟ ଦିଏ ବା ଈଶ୍ୱରୀୟ ବରଦାନ ହୋଇପାରେ । ତେବେ ସେ ପ୍ରାପ୍ତ କରେ ଏବଂ ବୁଦ୍ଧିଜୀବିଙ୍କ ମତାନୁସାରେ ଜୀବନର ଆଉ ଏକ ପାଦ ଆଗକୁ କାଢ଼େ । ସତରେ ସେ କ'ଣ ଜୀବନ ବଞ୍ଚିପାରେ ?

ଏଭଳି ଅନେକ ଭାବନା ଭିତରେ ମୁଁ ବୁଡ଼ିରହିଥିବାବେଳେ ମୋ ପଛରୁ କେହିଜଣେ ମୋତେ ଡାକିବା ଶୁଣି ପଛକୁ ଚାହିଁଲି , 'ଓଃ ରମେଶ , ଏଇ ନିଅ ଏ ସୁଟକେଶଟି ତୁମେ ଧର ମୁଁ ଏହି ବ୍ୟାଗ୍ ଧରିନେଉଛି ।'

'ଟ୍ରେନ ଅଧଘଣ୍ଟା ଲେଟ ଅଛି ମାଆ ଆପଣ ଏବେ ବାହାରି ଗଲେ ଠିକ୍ ସମୟ ପୂର୍ବରୁ ପହଞ୍ଚି ଯିବେ' କହି ସେ ଅଟୋରେ ମୋ ବ୍ୟାଗ୍ ଆଉ ସୁଟକେଶକୁ ରଖିଲା । ତା'ଆଡକୁ ଶହେଟଙ୍କିଆ ନୋଟ୍ ବଢାଇ ଦେଲି ସେ ଖୁସୀରେ ଟଙ୍କାନେଇଯାଇ ମୋତେ ଲମ୍ବା ଗୋଟିଏ ଦଣ୍ଡବତ ହେଲା । ସୁବିଧାରେ ପହଞ୍ଚିଲି କି ନା ଜଣାଇ ଦେବାକୁ ନିଜ ଫୋନ ନମ୍ବରଟି ମଧ୍ୟ ଦେଲା । ତାଗିଦ କରିଦେଲା, 'ମାଆ ଦେଖିଚାହିଁ ଯିବେ ଦୂରବାଟ, ଏକା ଅଛନ୍ତି ।'

ପିଲାଟିର କଥା ଶୁଣି ମୁଁ ମନେ ମନେ ଭାବୁଥାଏ ଆରତୀ ଏବଂ ସୁମିତ୍ରାର କଥା । ପ୍ରକୃତରେ ଆମେ ସମସ୍ତେ ସବୁ ବେଳେ ଏକୁଟିଆ ହିଁ ଥାଉ କିନ୍ତୁ ବାଧ୍ୟ ବାଧକତାରେ ପରସ୍ପର ସହ ଛନ୍ଦି ହୋଇ ସଂପର୍କର ସଂଜ୍ଞା ଦେଇ ତାକୁ ପାଳନ କରିବାର ଗୋଟିଏ ଗୋଟିଏ ସୁନ୍ଦର ପ୍ରହସନ କରୁ । ରମେଶର କଥା ମୋତେ କିଛି ସମୟ ପାଇଁ ଆନ୍ଦୋଳିତ କଲା । ଏବଂ ଜୀବନର ଗୋଟିଏ ବିରାଟ ସତ୍ୟକୁ ସେ ମୋ ଫେରିବା ବେଳେ ମୋତେ ପୁଣି ମନେ ପକାଇଦେଲା ।



*(ନବରବି, ଶିଳାଲିପି)*

# ଅବ୍ୟକ୍ତ

କଳା ମଚମଚ ଆକାଶକୁ ଚିତ୍ରା ଦୀର୍ଘ ସମୟ ହେଲା ଚାହିଁ ବସିଛି । କ'ଣ ସେ ଭାବୁଛି ? ରାତି ପ୍ରାୟ ନଅଟା ହେବ; ବେଶୀ ତ ନୁହେଁ । ତେବେ ବି ଆକାଶର ଅନ୍ଧାରର ଗଭୀରତା ବେଶ୍ ବାରିହୋଇପଡୁଛି । ଦିପକର ଅଫିସ ଫେରିବା ଡେରି ହେବା ଜାଣି ଚିତ୍ରା ରାତ୍ରି ଭୋଜନ ସାରି ନେଇଛି ।

ଡୋର ନକ୍ ଶୁଣି ଚିତ୍ରାର ଚାକରାଣୀ ଦରଜା ଖୋଲିଦେଲା ।

"ଚିତ୍ରା ?"

"ଛାତ ଉପରେ ବସିଛନ୍ତି, କ'ଣ ଡାକି ଦେବି ?"

"ନା, ମୁଁ ତା' ପାଖକୁ ଯାଉଛି ।"

ଦପ୍‌ଦପ୍ ହୋଇ ଦୀପା ସିଢି ଉପରକୁ ଚଢ଼ିଯାଏ । ଏବେ ବି ଠିକ୍ ସେମିତି ନିଶ୍ଚଳ ମୁଦ୍ରାରେ ବସିଥାଏ ଚିତ୍ରା ।

"ହାୟ ଚିତ୍ରା, କ'ଣ କରୁଛୁ ? ଓଃ..., ତାରା ଗଣୁଛୁ ?"

ଚିତ୍ରାର ବସିବା ମୁଦ୍ରାରେ ସାମାନ୍ୟ ପରିବର୍ତ୍ତନ ଘଟେ ।

"ଆ, ବସ ଦୀପା ।"

"କ'ଣ ଏକୁଟିଆ ବସିଛୁ ?"

"ହଁ ।''

"ଦିପକ କ'ଣ ଅଫିସରୁ ଫେରିନାହାନ୍ତି ?"

"ମାର୍ଚ୍ଚ ମାସ ତ, କାମ ଅଧିକ ଫେରିବା ଡେରିହେବ ।"

"ଆରେ ସେଗୁଡାକ ଆଉ କହନା, ତୋ ବର ଅଫିସରେ, ଆଉ ମୋ ବର ଘରକୁ ଅଫିସ କରିସାରିଛନ୍ତି । ଏଇ ପରା ସେ ବସି ତାଙ୍କ ଅଫିସ କାମ ଘରେ କରୁଛନ୍ତି । ଲିପୁନ ଶୋଇସାରିଛି, ମୋତେ ବୋର ଲାଗିଲା, ତୋ' ପାଖକୁ ଚାଲି ଆସିଲି ।"

"ହଉ ଭଲ କଲୁ ।"

"ଆରେ ତୁ ଏଠି ଅନ୍ଧାରରେ ବସି କେଉଁ କଥା ଭାବୁଛୁ ।"

"ନାଁରେ, ଅତୀତ ନୁହେଁ କି ଭବିଷ୍ୟତ ବି ନୁହେଁ ।"

"ଆଚ୍ଛା ତା' ହେଲେ ବର୍ତ୍ତମାନରେ ।"

"ହଁ, ବର୍ତ୍ତମାନ ହିଁ ତ ମୋର । ଯାହାକୁ ନେଇ ମୋର ଅସ୍ତିତ୍ୱ ଅଛି ।

ଖୁବ୍ ଗଭୀର ଏବଂ ନିବିଡ଼ ଅନ୍ତରଙ୍ଗତାର ସହ କିପରି ଗୋଟାଏ ଭିନ୍ନତାର ସ୍ୱର ଚିତ୍ରା ମୁହଁରୁ ଶୁଣି ଦୀପା ସିରିୟସ୍ ହୋଇଗଲା ।"

"ଦୀପା, ଖାଲି ବର୍ତ୍ତମାନରେ କ'ଣ ବଞ୍ଚିହୁଏନି ?"

"ନାଁ, ଚିତ୍ରା । ବର୍ତ୍ତମାନକୁ ଜାଣିବା ପାଇଁ ଅତୀତର ଅନୁଭୂତି ଆଉ ଭବିଷ୍ୟତର ସ୍ୱପ୍ନ ହିଁ ସହାୟକ ହୁଅନ୍ତି ।"

"ତେବେ କ'ଣ  ବର୍ତ୍ତମାନ ଦୂରୁହ । ବର୍ତ୍ତମାନରେ ବଞ୍ଚୁଥିବା ଚିତ୍ରା ଆଜି ଖୁବ୍ ଭାବବିହ୍ୱଳ ହୋଇପଡ଼ିଛି । ଅତୀତର ସତ୍ୟତାକୁ ସ୍ୱୀକାର କଲେ ବି ତାକୁ ଧରି ସବୁଦିନ ବଞ୍ଚି ହୁଏନା, ସେଥିରୁ କିଛି ନିଷ୍କର୍ଷ ବାହାରେନା ଆଉ ଭବିଷ୍ୟତ ତ ଆକାଶର ଅନ୍ଧାରକୁ ଅତିକ୍ରମ କଲାପରି ଏକ ଭିନ୍ନ ପୃଥିବୀର କଥା ।

"ଜାଣିଛୁ ଦୀପା, ଆଜି ରୋହିତଙ୍କ ସହିତ କିଛି ଅଧିକ ଅନ୍ତରଙ୍ଗ ହୋଇଯାଇଛି । ଆଉ ସେ ସବୁ କିଛି ଅଜାଣତରେ ନୁହେଁ ସବୁ ଜଣାତରେ ।"

"ମାନେ ?"

"ହଁ, ଦିପକ ସହିତ ବାହାଘର ହେବା ପରଠାରୁ ଦିପକ ମୋତେ ସବୁବେଳେ ସ୍ୱାମୀ-ସ୍ତ୍ରୀଙ୍କର ବୈବାହିକ ସଂପର୍କ ବାହାରେ ରହୁଥିବା ବହୁ ସ୍ୱାମୀ-ସ୍ତ୍ରୀ ଅନ୍ୟଠାରେ ସଂପର୍କ ରଖିବାର କଥା କହିଛନ୍ତି । ସେସବୁ ମୁଁ ଶୁଣିଲାବେଳେ ମୁଁ ବିସ୍ମୟ ଏବଂ ଆଶ୍ଚର୍ଯ୍ୟ ହେଉଥିଲି ।"

"ତେବେ କ'ଣ ତୁ ସେସବୁକୁ ଇମ୍ପ୍ଲିମେଣ୍ଟ କରୁଛୁ ?"

"ନିର୍ଦ୍ଦିଷ୍ଟ ଭାବରେ ତାହାନୁହେଁ । କିନ୍ତୁ ଗୋଟିଏ କଥା ବାରମ୍ବାର ଜଣକ ସାମ୍ନାରେ କହିବା ଦ୍ୱାରା ସେ ଯେ  କିପରି ପ୍ରଭାବିତ ହୋଇପାରେ, ସେ କଥା ହିଁ ଭାବୁଛି ।"

ରୋହିତଙ୍କ ସହିତ ଚିତ୍ରାର ପରିଚୟ ବେଶୀ ଦିନର ନୁହେଁ । କିନ୍ତୁ ରୋହିତଙ୍କ ଚିତ୍ରାର ସମସ୍ତ ଇଚ୍ଛାକୁ ସମ୍ମାନ କରେ ତା'ର ସବୁ ଅସୁବିଧାକୁ ହୃଦୟଙ୍ଗମ କରିପାରେ ଏବଂ  ସମସ୍ତ ପ୍ରକାର ଆବଶ୍ୟକତାକୁ ପୂରଣ କରିବାକୁ ଚେଷ୍ଟା କରେ । କେବେ

ବି ଯୋର କରି ତା' ଉପରେ କିଛି ଦାୟିତ୍ୱ ଲଦି ଦିଏନି କି ନିଜର ଇଚ୍ଛାକୁ ଜବରଦସ୍ତି ପୁରଣ କରିବାକୁ ଚେଷ୍ଟା କରେନି । ଯେତେବେଳେ ଦୁହିଁଙ୍କର ସାକ୍ଷାତ ହୁଏ ଦୁହେଁ ପରସ୍ପରକୁ ଖୁବ୍ ବୁଝନ୍ତି ଏବଂ ଗପନ୍ତି। ଦୁହିଁଙ୍କ ଭିତରେ ଗୋଟିଏ ଅଦ୍ଭୁତ ଆକର୍ଷଣ ବଢ଼ିଚାଲିଥାଏ ।

"ଚିତ୍ରା ତୁ ଏ କ'ଣ କହୁଛୁ, ତୋର ଯେ ଗୋଟିଏ ପରିବାର ଅଛି । ସମାଜ କ'ଣ କହିବ ?"

"ହଁ, ମାନୁଛି ମୋର ପରିବାର ଅଛି, ସ୍ୱାମୀ ମଧ୍ୟ ଅଛନ୍ତି, କିନ୍ତୁ ମୁଁ ତ ତାଙ୍କୁ ଅବହେଳା କରୁନି; ଏସବୁକୁ ସ୍ୱୀକାର କରି ମଧ୍ୟ ମୁଁ ବର୍ତ୍ତମାନରେ ବଞ୍ଚିବାକୁ ଚାହୁଁଛି।" ଏହା କହିବାବେଳେ ଚିତ୍ରା ମନରେ ଭାବୁଥାଏ ସତ କହିବାକୁଗଲେ ସେ ଏବେ କେଉଁ ସ୍ୱାମୀର ସୁଖରେ ଓଦା ହୋଇ ରହିଛି କି ?

"ତୋର ବର୍ତ୍ତମାନ, ଭବିଷ୍ୟତକୁ ନଷ୍ଟ କରିଦେଇପାରେ ।"

"ନା, ଯେଉଁ ବର୍ତ୍ତମାନ ଭବିଷ୍ୟତକୁ ନଷ୍ଟ କରିପାରେ ସେ କେବେ ବି ଗୋଟାଏ ଭଲ ଅତୀତ ନୁହେଁ । ମୁଁ ମୋର ସମସ୍ତ ବର୍ତ୍ତମାନକୁ ଭଲ, ସ୍ମୃତିମୟ ଅତୀତ କରିବାକୁ ଚାହେଁ । ତେବେ ବର୍ତ୍ତମାନ କଷ୍ଟ ଦେବ କାହିଁକି କି ନଷ୍ଟ କରିବ କାହିଁକି ? ସେ ତ ମୋର କେବଳ ମୋର । ମୁଁ ମୋ ନିଜକୁ କିପରି ନଷ୍ଟ କରିପାରିବି ।" ଏକଥା କହିବାବେଳେ ଚିତ୍ରା ଦିପକ ସହିତ ନିଜ ଅତୀତକୁ ମାପି ଖୁବ୍ କଷ୍ଟ ପାଉଥାଏ । ଏବଂ ଅପରପକ୍ଷରେ ଏହି କଷ୍ଟରୁ ନିବୃତ୍ତ ହେବାକୁ ବାଟ ଖୋଜୁଥାଏ ।

"ଦେଖ୍ ଦୀପା ଆମ ସମସ୍ତଙ୍କର ଗୋଟିଏ ମନ, ଇଚ୍ଛା, ବିବେକ, ହୃଦୟ ରହିଛି । ଆମେ ସବୁବେଳେ ଭଲମନ୍ଦ ବିଚାର କରି ଆଗେଇ ଚାଲୁ, ତେବେ ମନ୍ଦ କେଉଁଟା ? ସେ କଥା ଚିନ୍ତା କଲାବେଳେ ମୁଁ ମୋ ପିଲାଦିନକୁ ଚାଲିଯାଏ । ଆମ ବାପା ମାଆ ଗୁରୁଜନ ଯାହା ଆମକୁ ଶିଖାଇଛନ୍ତି । ବାସ୍ ଆମେ ତାଙ୍କରି ମାପକାଠିରେ ଭଲମନ୍ଦର ବିଚାର କରିଚାଲୁ ଆମର ଶେଷ ଜୀବନ ପର୍ଯ୍ୟନ୍ତ; ଆଉ ସେହି ବିଚାରକୁ ଆମେ ଚାପିଦେଉ ଆମରି ସନ୍ତାନ ଉପରେ । ତେବେ ଆମର ନିଜସ୍ୱ ଚିନ୍ତା କରିବାର କ୍ଷମତା ଜନ୍ମିଲା କେତେବେଳେ ? ସମାଜରେ ଆଜି ଯାହା ବି ରୀତିନୀତି ଆଦର୍ଶ ବୋଲି ଆମେ କହୁଛୁ ସବୁ ତ ଆମରି ଅର୍ଥାତ୍ କେହି ଜଣେ ମଣିଷ ମୁଣ୍ଡରୁ ହିଁ ବାହାରିଛି । ତେବେ ଏହି ମଣିଷ ଗଢ଼ା ନିୟମ ରୀତିନୀତି ସ୍ଥାନ-କାଳ-ପାତ୍ର ଅନୁଯାୟୀ ପରିବର୍ତ୍ତନ ହେଲେ ଅସୁବିଧା କ'ଣ ?"

"ଚିତ୍ରା, ସୁବିଧା ଅସୁବିଧାର ହିସାବ ମୋତେ କରିଆସେନି କିନ୍ତୁ ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ଯାହା ବି ନିୟମ ଆମ ସମାଜ ପରିବାରରେ ଲାଗୁ ହୋଇଛି ତା' କ'ଣ ଠିକ୍ ନୁହେଁ ।"

"ଠିକ୍  ଭୁଲର କଥା ମୁଁ କହୁନି ଦୀପା । ଯେତେବେଳେ ଏ ନିୟମ ସବୁ ଲାଗୁ ହୋଇଥିଲା । ସେତେବେଳର ସମାଜ ଓ ପରିବେଶକୁ ନେଇ ସେ ସବୁ ଗଢ଼ାଯାଇଥିଲା । ସବୁ ନିୟମକୁ ଯଦି ତନ୍ନ ତନ୍ନ କରି ଦେଖାଯାଏ ସବୁ ନିୟମ ପୁରୁଷ ସପକ୍ଷରେ ରହିଛି । ସ୍ତ୍ରୀର ମୃତ୍ୟୁ ପରେ ସ୍ୱାମୀର ଅନ୍ୟ ସ୍ତ୍ରୀ ସହ ସଂପର୍କ ବା ପୁନଃ ବିବାହକୁ ସହଜରେ ଗ୍ରହଣ କରାଯାଏ । କିନ୍ତୁ ସ୍ୱାମୀର ମୃତ୍ୟୁ ପରେ ସ୍ତ୍ରୀର ଅନ୍ୟ ପୁରୁଷ ସହ ସଂପର୍କ ବା ପୁନଃ ବିବାହକୁ କେଉଁ ମାପକାଠିରେ ଭୁଲ କୁହାଯାଏ ?"

"କିନ୍ତୁ, ସ୍ତ୍ରୀକୁ ହିଁ ଘର ସଜାଇ ରଖିବାକୁ ପଡେ ।"

"ନା, ଦୀପା ସ୍ତ୍ରୀକୁ ହିଁ ଘର ସଜାଇ ରଖିବାକୁ ପଡେ ନୁହେଁ ବରଂ ତାକୁ ସଜେଇ ଦିଆଯାଏ  ଗୋଟାଏ କଣ୍ଢେଇ ପରି ଆଉ ନିର୍ଦ୍ଦେଶ ଦିଆଯାଇଥାଏ ସେ କେତେ ପରିସୀମା ଭିତରେ ନିଜକୁ ନିୟନ୍ତ୍ରଣରେ ରଖିବ ।"

ଚିତ୍ରା ଦିପକ ସହିତ ଏତେ ବର୍ଷର ଦାମ୍ପତ୍ୟ ଜୀବନ ଅତିକ୍ରମ ପରେ ବି ଦିପକ ତା'ର ମନୋସ୍ଥିତିକୁ ବୁଝି ନ ପାରିବା, ତା'ର ପ୍ରକୃତ ଆବଶ୍ୟକତାକୁ ନ ବୁଝି କେବଳ ନିଜର ଆବଶ୍ୟକତାକୁ ପୁରଣ କରିବାକୁ ଚାହିଁବା ଏସବୁ ତାକୁ ଖୁବ୍ ବ୍ୟସ୍ତ କରି ପକାଉଥିଲା । ଏଣୁ ସେ ଚିନ୍ତା କରିଛି ବର୍ତ୍ତମାନରେ ବଞ୍ଚିବାକୁ । ଯେଉଁ ବର୍ତ୍ତମାନ ତାକୁ ଦେବ ତା'ର ଅସ୍ତିତ୍ୱ । ତା'ର ସ୍ୱରୂପ ସହିତ ତାକୁ ଚିହ୍ନାଇ ଦେବ । ଅନେକ ଥର ସେ ସାମ୍ନା କରିଛି ତା' ଇଚ୍ଛା ବିରୋଧରେ ତା' ଶରୀରରୁ ଦିପକର ଆନନ୍ଦ ସାଉଁଟିବାର ଅଭିପ୍ରାୟକୁ । କେତେଥର ଚିତ୍ରାର ଗଭୀର ନିଦ୍ରାକୁ ଛିନ୍‌ଭିନ୍ କରିପକାଇଛି ଦିପକ । କେତେଥର ତା'ର ଆଗ୍ରହକୁ ବେଖାତିର କରିଛି ସେ । ତା'ର ମାନସିକତାକୁ ଖଣ୍ଡ ଖଣ୍ଡ କରିଛି ।

ବିବାହ ଶୃଙ୍ଖଳରେ ଦୁଇଟି ଆତ୍ମାକୁ ଏକତ୍ର କରିଦେଲେ କ'ଣ ପ୍ରେମ ହୋଇଯାଏ । ତେବେ ବିବାହ ମଣ୍ଡପର ମନ୍ତ୍ରପାଠ, ହୋମାଗ୍ନିକୁ ସାକ୍ଷୀ ରଖି ଯେତେ ସବୁ ସର୍ତ୍ତ କରାଯାଏ ତା' ସତ୍ତ୍ୱେ ବି ବିବାହ ବନ୍ଧନଟି ଭାଙ୍ଗିଯିବାର ଆମ ସମାଜରେ ଅନେକ ନଜିର ରହିଛି । କାହିଁକି ପୁରୁଷ ଏବଂ ସ୍ତ୍ରୀକୁ ଗୋଟିଏ ବନ୍ଧନରେ ବାନ୍ଧିହେବାକୁ ବାଧ୍ୟ କରାଯାଏ ଯଦିଚ ସେମାନଙ୍କ ଭିତରେ ପ୍ରେମର ଉଦ୍‌ବେଳନ ସୃଷ୍ଟି କରିବାର ସଂପୂର୍ଣ୍ଣ ସଫଳତା ଆସିନଥାଏ । ପ୍ରକୃତରେ ପ୍ରେମ ଯେଉଁଠି; ସେଠି ମନ୍ତ୍ରପାଠ, ହୋମାଗ୍ନିକୁ ସାକ୍ଷୀ ରଖିବାର କି ପ୍ରୟୋଜନ ରହିଛି ?

"ତୁ କହ ଦୀପା ତୋର ବୈବାହିକ ଜୀବନରେ ତୁ କ'ଣ ସୁଖୀ ଅଛୁ ?"

"ସତ କହୁଛୁ ଚିତ୍ରା ଏତେ କଥା ମୁଁ ଚିନ୍ତା କରି ହିଁ ନଥିଲି । ମୋତେ ମୋ ବାପା ବୋଉ ପିଲାଟି ଦିନରୁ ଯାହା ଶିକ୍ଷା ଦେଇଛନ୍ତି କି ଆମ ପରିବାର ତଥା ସମାଜରେ ଯେଉଁ ଦମ୍ପତିମାନଙ୍କୁ ଦେଖି ଆସିଛି ସେମାନଙ୍କ ପରି ମୁଁ ମଧ୍ୟ ସେୟା  ହିଁ କରିଚାଲିଛି । କେତେବେଳେ ନିଜକୁ ଖୋଜିନି, ନିଜକୁ ଦେଖିବାର ଚେଷ୍ଟା କରିନି କି ନିଜ କଥା

ଭାବିବାକୁ ସମୟ କାଢ଼ିନି । ଏ ଦୃଷ୍ଟିରୁ ଯଦି ମୋତେ ପଚାରୁ ମୁଁ ସଂପୂର୍ଣ୍ଣ ଶୂନ୍ୟ ।"

"କେବଳ ତୁ ନୁହେଁ ଦୀପା ତୋ ପରି ଆମ ସମାଜରେ ଅନେକ ଏପରି ସ୍ତ୍ରୀ ଲୋକ ଅଛନ୍ତି ଯେଉଁମାନେ ପୁରୁଷର ଅଧୀନତା ନଥିବା ସତ୍ତ୍ୱେ ବି ଆପେ ଆପେ ଅଧୀନସ୍ଥ ହୋଇପଡ଼ନ୍ତି ଆଉ ନିଜର ସ୍ୱତନ୍ତ୍ରତାକୁ ହରାଇ ବସନ୍ତି ।"

"ସେହି ଏକତ୍ରର ମୂଲ୍ୟ କ'ଣ, ଯେଉଁଠି ଆପଣାର ସ୍ଥିତିକୁ ବଜାୟ ରଖାଯାଇ ପାରେନା ?"

"ହଁ ଦୀପା, ଯୁଗଳ ନୃତ୍ୟରେ ନର୍ତ୍ତକ-ନର୍ତ୍ତକୀ ଏକତ୍ର ନୃତ୍ୟ ପରିବେଷଣ କରନ୍ତି ଆପଣା ପାଦ, ହାତ ଚକ୍ଷୁର  ଭଙ୍ଗୀରେ । ନିଜ ନିଜ ଭାବଭଙ୍ଗୀରେ ସଫଳତା ପ୍ରଦର୍ଶନ କରି ସେମାନଙ୍କ ଯୁଗଳ ନୃତ୍ୟକୁ ଆକର୍ଷିତ କରନ୍ତି, ବିମୋହିତ କରନ୍ତି ଯାହାକି ଦର୍ଶକକୁ ମୁଗ୍ଧ କରିଥାଏ ।"

"ଠିକ୍, କହୁଛୁ ଚିତ୍ରା ପିଲାଟି ଦିନରୁ ମୁଁ ବି ଶୁଣି ଆସିଛି ପରିବାର ଶଗଡ଼ ଚାଲେ ତା'ର ଦୁଇଟି ଶକ୍ତିଶାଳୀ ଚକ ମାଧ୍ୟମରେ ସେଥିରୁ ଗୋଟିଏ ବି ଦୁର୍ବଳ ଥିଲେ ଶଗଡ଼ ଆଗକୁ ଯାଇପାରେନା ।"

"ସେଇଥି ପାଇଁ ତ କହୁଥିଲି ଦୀପା, ପ୍ରେମ ଆତ୍ମାକୁ ବାନ୍ଧିରଖୁ ; ମାତ୍ର ଆତ୍ମାର ବନ୍ଧନ ନହେଉ । ଯଦି ସେ ବନ୍ଧନ ପାଲଟିଯାଏ ତେବେ ଅଣନିଶ୍ୱାସୀ ବୋଧ ହେବ ଏବଂ ବର୍ତ୍ତମାନ ଦୂରୁହ ହୋଇପଡ଼ିବ । ଅନ୍ତତଃ ମୁଁ ମୋ ଆତ୍ମାକୁ କାରାରୁଦ୍ଧ କରିପାରୁନାହିଁ ।" ଜୀବନର ନିଚ୍ଛକ ସତ୍ୟକୁ ଦୁହେଁ ଗପୁଥିଲେ, ବାଣ୍ଟୁ ଥିଲେ ନିଜ ନିଜ ଭିତରେ ଆଉ ସେମାନେ ଦେଖିପାରୁଥିଲେ ସମୟ କେମିତି ଅଟକି ଯାଉଛି ।

ଚିତ୍ରା ଅନୁଭବ କରୁଥିଲା, ପ୍ରେମ ବାଧ୍ୟବାଧକତାରେ କରାଯାଇ ପାରେନା । ସେ ତ ଛଳଛଳ ଝରଣା, ସ୍ୱତଃ ପ୍ରବୃତ୍ତ କ୍ରିୟା, ସର୍ବୋପରି ପ୍ରକୃତି । ପ୍ରକୃତିକୁ କିଏ କ'ଣ କେବେ ବଦଳାଇ ପାରିଛି । ବାଧ୍ୟତାରେ ପରିବର୍ତ୍ତନ ପ୍ରକୃତିର ରୂପ ସୌନ୍ଦର୍ଯ୍ୟହୀନ ଏବଂ ବିମୋହିତ କରିବାର ଶକ୍ତି ହରାଏ । ଚିତ୍ରା ଶକ୍ତିହୀନ ହୋଇ ବଞ୍ଚିବାକୁ ଆଦୌ ଗ୍ରହଣ କରିପାରୁ ନଥିଲା । ପ୍ରେମ ସମନ୍ୱିତ ପ୍ରେରଣା; ସଂଯୁକ୍ତ ଚେତନା ଯାହା ସାର୍ଥକତା ବହନ କରେ । କିନ୍ତୁ ଚିତ୍ରାର ଏହି ଅବ୍ୟକ୍ତ ଚିନ୍ତନ ଚିନ୍ତନରେ ହିଁ ରହିଯାଏ ।



*(ପ୍ରଜାତନ୍ତ୍ର ସାପ୍ତାହିକୀ)*

# ଅବ୍ୟୟ

"**ସା**ର୍ ଆଜି ଘରକୁ ଆସୁଛନ୍ତି ।"

ଖବରଟି ଶୁଣି ଲୋପିତା ବେଶ୍ ଆନନ୍ଦିତ । ଦ୍ୱିପହର; ଖରା ଟାଣ ଥିଲା, ଲୋପିତା ଅଫିସ କାମରେ ବାହାରେ ବ୍ୟସ୍ତଥାଏ, ସେଦିନ ଖୁବ୍ କାମ ହେତୁ ସେ ଲଞ୍ଚ୍ ବି କରିପାରି ନଥିଲା । ସକାଳୁ ଖୁବ୍ ଜଲ୍‌ଦି ତାକୁ ବାହାରିଯିବାକୁ ପଡ଼ିଥିଲା ଘରୁ । ସେଦିନ ତା'ର ସବୁ କାମ ସରିବା ବେଳକୁ ଦିନ ଦୁଇଟା । ଏତେବେଳକୁ ସାରଙ୍କର ଫୋନ୍ ଆସେ ଏବଂ ଆଜି ସେ ଫ୍ରି ଥିବାରୁ ଲଞ୍ଚ ସମୟରେ ଆସୁଛନ୍ତି । ଲୋପିତା ପୂର୍ବରୁ ଅନେକଥର ସାର୍‌ଙ୍କୁ ଘରକୁ ଡାକିଛି । ତା' ବିବାହ ଭୋଜିରେ ଉପସ୍ଥିତ ରହି ନ ପାରିବାର ଦୁଃଖ ସାର୍ ଅନେକଥର କହିଛନ୍ତି । ଏଣୁ ଲୋପିତା ତାଙ୍କୁ ଲଞ୍ଚ ପାଇଁ ବାରମ୍ବାର ଡାକି ବିଫଳ ହୋଇଥିଲା ।

କିନ୍ତୁ ! ଆଜି ସାର୍ ନିଜେ ଆସିବା ଖବର ଦେଇଛନ୍ତି । ସାର୍ ଘରକୁ ଆସିଲେ ତାଙ୍କୁ ଦେବାକୁ ଭଲ କିଛି ଖାଦ୍ୟ ସାମଗ୍ରୀ ନଥିବ, ସେ ଆଜି କ'ଣ ଖୁଆଇବ ସାର୍‌ଙ୍କୁ । ଏଣୁ ଫେରିବା ବାଟରେ ରାସ୍ତା କଡ଼ରେ ଥିବା ଠେଲାରେ ବିକ୍ରୀ ହେଉଥିବା ଆପଲ୍ ଉପରେ ତା'ର ଦୃଷ୍ଟି ପଡ଼େ । ସେଥିରୁ ଅଳ୍ପକିଛି କିଣି ଆଣିଥିଲା ଲୋପିତା । ଆଉ ଅଳ୍ପ ସମୟ ପରେ ସାର୍ ଘରେ ପହଞ୍ଚିଯିବେ ଆଉ କିଛି ପ୍ରସ୍ତୁତ କରିବାକୁ ମଧ୍ୟ ସମୟ ନଥିଲା ତା' ପାଖରେ ।

ଲୋପିତା ଘରେ ପହଞ୍ଚୁ ପହଞ୍ଚୁ ସାର୍ ମଧ୍ୟ ପହଞ୍ଚିଯାଆନ୍ତି । ଅତି ଶ୍ରଦ୍ଧାରେ, ଅତି ବିନମ୍ର ଏବଂ ଆଗ୍ରହରେ ସେ ସାର୍‌ଙ୍କୁ ଘର ଭିତରକୁ ନିମନ୍ତ୍ରଣ କରେ । ଛୋଟିଆ

ଘରକୁ ବେଶ୍ ସୁନ୍ଦର ଭାବରେ ସଜାଇ ପାରିଥିବା ଲୋପିତାକୁ ସାର୍‌ଙ୍କର ପ୍ରଶଂସା ବିନମ୍ର କରାଏ । ଖରାଦିନକୁ ପୁଣି ଦ୍ୱିପହର ଅଧିକରୁ ଅଧିକ ଗରମ ହେଉଥାଏ ଦେହକୁ ଏବଂ ଗରମ କରୁଥାଏ ପରିବେଶକୁ ।

"ଖୁବ୍ ଝାଳେଇ ଯାଇଛ ଲୋପିତା, ଏଥର ଫ୍ରେସ୍ ହେଇଆସ ।"

"ନା ସାର୍, କିଛି କଥାନୁହେଁ, ଆପଣ ବସନ୍ତୁ ମୁଁ ଆପଣଙ୍କ ପାଇଁ ଖାଇବା ବ୍ୟବସ୍ଥା କରୁଛି ।" କହି ଲୋପିତା କିଚେନ୍ ଆଡ଼କୁ ଆଗଭର ହୁଏ । ତା'ପୂର୍ବରୁ ସାର୍ ଯେମିତି ବୋର୍ ନ ହୁଅନ୍ତି ସେଥିପାଇଁ ତାଙ୍କ ହାତକୁ ନିଜ ବିବାହ ଫଟୋର ଆଲବମ୍ ଦେଖିବାକୁ ବଢାଇ ଦେଇଛି, "ମୋ ବାହାଘର ମିସ୍ କରିଥିଲେ ନା ସାର୍ ଏଇ ଦେଖନ୍ତୁ ।"

ଆଲବମ୍‌ର ପୃଷ୍ଠା ଓଲଟି ଚାଲିଥିଲା, କିନ୍ତୁ ଫଟୋ ଦେଖିବାର ଆଗ୍ରହ ସେତେଟା ସାର୍‌ଙ୍କର ନଥିଲା ।

ଲୋପିତା ତମେ ବ୍ୟସ୍ତ ହୁଅନାହିଁ ମୋ ସାମ୍‌ନାରେ ବସ । ମୁଁ କିଛି ଖାଇବି ନାହିଁ, ମୋ ପାଖରେ ଖୁବ୍‌କମ ସମୟ, ମୋତେ ଅଫିସ ଫେରିବାକୁ ପଡିବ ।

ଲୋପିତା  କିନ୍ତୁ ନଛୋଡବନ୍ଧା । ଏତେ ବର୍ଷର ନିମନ୍ତ୍ରଣ ପରେ ଆଜି ସାର ଘରକୁ ଆସିଛନ୍ତି । ତାଙ୍କୁ ଖାଦ୍ୟରେ ଆପ୍ୟାୟିତ ନକରି କେମିତି ଛାଡିଦେବ । ସଙ୍ଗେ ସଙ୍ଗେ ଗରମ ଗରମ ପକୁଡି, ଥଣ୍ଡା ପାନୀୟ ଏବଂ ଅନ୍ୟାନ୍ୟ କିଛି ଖାଦ୍ୟ ସରଞ୍ଜାମ ସାର୍‌ଙ୍କ ସାମନାରେ ପରସି ଦିଏ ।

ଏସବୁ କିଛି ମୁଁ ଖାଇବି ନାହିଁ ଲୋପିତା । ଝାଳରେ ଭିଜିସାରିଛ ଏଥର ଡ୍ରେସ ବଦଳି ଦିଅ, ଲୋପିତା କିନ୍ତୁ ଏସବୁ କଥାକୁ ଖାତିର ନକରି ନିଜ ସଂସାର ଗପରେ ମସ୍‌ଗୁଲ୍ ଥାଏ । ସାର୍‌ଙ୍କୁ କେମିତି ଅଧିକରୁ ଅଧିକ ଖାଦ୍ୟ ପାନୀୟରେ ଆପ୍ୟାୟିତ କରିପାରିବ ବାସ୍ ସେହି ଚେଷ୍ଟାରେ ଲାଗିଥାଏ । କିନ୍ତୁ ସାର୍ ଯେ ଏ ସବୁ କଥାରୁ ବହୁ ଦୂରରେ ଭିନ୍ନ ଇଲାକାରେ ବିଚରଣ କରୁଥିଲେ ତା' ହୁଏତ ଲୋପିତାକୁ ଅଗୋଚର ।

"ମୁଁ ଆଜି ତୁମ ଘରକୁ ଆସିଛି, ଏକଥା କ'ଣ ତୁମେ ତୁମ ସ୍ୱାମୀଙ୍କୁ କହିବ ?"

"ହଁ, ସେ ମଧ୍ୟ ଖୁବ୍ ଖୁସୀ ହେବେ, ଆପଣଙ୍କ ଆସିବା ଜାଣି । ମୁଁ ନିଶ୍ଚୟ କହିବି ।"

"ଲୋପିତା ମୋତେ ତୁମର ଯୋଗ୍ୟ ମନେ କରୁଛ ?" ସାର୍ ପ୍ରଶ୍ନ କରନ୍ତି ।

"ଆପଣଙ୍କୁ ନେଇ ଯୋଗ୍ୟତା ମାପିବାର ମାପକାଠି ମୋ ପାଖରେ ନାହିଁ ସାର୍ । ଆପଣ ତ' ମୋ ପୂଜନୀୟ, ବରିଷ୍ଠ, ବୟୋଜ୍ୟେଷ୍ଠ କେଉଁ ମାପକାଠିରେ ଆପଣଙ୍କ ଯୋଗ୍ୟତା ମାପିବି ?" ଲୋପିତା ଏଯାଏଁ ବି ବୁଝିପାରୁ ନଥାଏ ସାର୍‌ଙ୍କ ଇଙ୍ଗିତକୁ ।

"ସତରେ ସାର୍ ଆପଣ ମୋ ବାହାଘରକୁ ଆସିନପାରିବାର ଦୁଃଖ ମୋ ଭିତରେ ଏ ଯାଏ ବି ରହିଛି । ଆପଣ  ଆସିଥିଲେ ମୁଁ ଖୁସୀ ହୋଇଥାନ୍ତି ।"

"କେମିତି ଆସିଥାନ୍ତି ଲୋପିତା ତମେ ଯେ, ମୋଠାରୁ ଦୂରେଇ ଯାଉଥିଲ ।"

"ମୁଁ ବୁଝିପାରିଲିନି ସାର୍ ।"

"ହଁ, ଲୋପିତା ତମପ୍ରତି ପ୍ରଥମ ଦିନର ଦେଖାରୁ ହିଁ ମୁଁ ଦୁର୍ବଳ ହୋଇପଡ଼ିଥିଲି। ତୁମ ଅଜାଣତରେ ତୁମକୁ ନେଇ ଅନେକ ସ୍ୱପ୍ନ ସଞ୍ଚୁଥିଲି ଅଥଚ ତୁମେ ମୋତେ ଏତେ ଉଚ୍ଚପଦରେ ରଖିସାରିଥିଲ ଯେ, ସେସବୁ ବ୍ୟକ୍ତ ହିଁ କରିପାରୁ ନଥିଲି ।"

ଲୋପିତା ପାଦତଳୁ ମାଟି ଖସିପଡୁଥାଏ ଏବଂ ମୁଣ୍ଡ ଉପର ଛାତ ଘୁରିଯିବା ପରି ଅନୁଭବ କରୁଥାଏ । ସେ ଆଜି କ'ଣ ଶୁଣୁଛି ତା' ଚିନ୍ତାରାଜ୍ୟର ବାହାର କଥା । ଲୋପିତା ମନର ଭାବନା, "ତେବେ କ'ଣ ସବୁ ସମ୍ବୋଧନ ଘୁରିଆସି ସେଇଠି ହିଁ ଶେଷହୁଏ ।"

"ଦେଖ ଆଜି ତମେ ବିବାହ କରି ଦଶ ବର୍ଷ ଅତିକ୍ରମ କରିବା ପରେ ମଧ୍ୟ ଆମେ ଦୁହେଁ ସାମ୍ନାସାମ୍ନି ଆଜି। କ'ଣ, ତୁମେ କିଛି ଅନୁଭବ କରିପାରୁନ ଲୋପିତା ?"

"ଏତେବେଳକୁ ଲୋପିତା ଖୁବ୍ ଦୁଃଖୀ ହୋଇସାରିଥାଏ । ସେ କ'ଣ ଯେ ଭାବୁଥିଲା ଏବଂ କ'ଣ ସବୁ ଘଟିଯାଉଛି ? ସବୁ ପୁରୁଷ କ'ଣ ଏମିତି ଏକ ସୁଯୋଗର ଅପେକ୍ଷାରେ ଥାଆନ୍ତି, ସେ ସୁଯୋଗ ଆସିଲେ କେମିତି ହାତଛଡ଼ା କରିବେ ନାହିଁ ସେଥିପାଇଁ ପ୍ରାଣପଣେ ଚେଷ୍ଟା କରିଚାଲନ୍ତି । ସୁଯୋଗ ଆସିଛି ଏଣୁ ପ୍ରସ୍ତାବ ଦିଆଯାଏ, ସେ ପ୍ରସ୍ତାବ କେତେ ଶୋଭନୀୟ କି ଅଶୋଭନୀୟର ଚିନ୍ତା ବି କରାଯାଏନା । ସେଥିରେ କେତେ ସଫଳ କି ବିଫଳ ହେବାର ବି ହିସାବ କରାଯାଏନା । ଦୀର୍ଘଦିନଧରି ମନର ଇଚ୍ଛାକୁ କ'ଣ ସେହି ମୁହୂର୍ତ୍ତ ପାଇଁ ଆୟତ୍ତ  କରିହୁଏନି । ଧନୁରୁ ତୀର ବାହାରି ଯିବା ପରେ ଆଉ କ'ଣ ଫେରିଆସେ ? ତା' ନଫେରିବା ଜାଣି ନିକ୍ଷେପ କରାଯାଏ । ଧନୁ ଭିତରେ ତୀରକୁ ଆୟତ୍ତ କରିପାରିଲେ ହୁଏତ ପୁରୁଷ ଭିତର ପଶୁ ପଣିଆଟି ବାହାରକୁ ଆସନ୍ତା ନାହିଁ । ଚିରଦିନ ସେ ସମ୍ମାନୀୟ, ପୂଜନୀୟ ହୋଇ ରହିପାରନ୍ତା ।"

"ନା, ଲୋପିତା ତୁମେ ଯଦି ମୋତେ ତୁମ ଯୋଗ୍ୟ ଭାବୁନାହଁ,  ମୁଁ ମୋ କଥାକୁ ଫେରାଇ ନେଉଛି । କିନ୍ତୁ ତୁମେ ଦୁଃଖୀହେବା ହୁଏତ ମୋତେ ଅପରାଧୀ କରିଦେବ ।"

ଲୋପିତା  ଭିତରେ ଦୁଃଖ;  ପୁରୁଷ ଏପରି ଦୁର୍ବଳ କାହିଁକି  ହୁଏ ? ବ୍ୟକ୍ତ କରିସାରିଥିବା ଉକ୍ତିକୁ ନେଇ ସାର୍ ଖୁବ୍ ଦୁଃଖ ପ୍ରକାଶ କରନ୍ତି ଏବଂ ବାରମ୍ବାର କ୍ଷମା ପ୍ରାର୍ଥନା କରୁଥାନ୍ତି । ଏଥର ଲୋପିତା ଆଶ୍ୱସ୍ତ ହୁଏ । ତା' ଦୃଷ୍ଟିପଟଳରେ ଏକ ଦୟନୀୟ ଚିତ୍ର  ଆଙ୍କି ହୋଇଯାଉଥାଏ ।

"ପ୍ଲିଜ୍ ଲୋପିତା ଏହାକୁ ଦୁଃସ୍ୱପ୍ନ ଭାବି ଫେରିଯିବା ଚାଲ ମୁଁ ମୋ ସ୍ୱପ୍ନରେ ତୁମେ ତୁମ ରାଜ୍ୟରେ, କ୍ଷମାକର ।"

"ନାଁ ସାର୍ ଫେରିଯିବା କଥା ଆଦୌ ଚିନ୍ତା କରନ୍ତୁନାହିଁ, କାହିଁକି ନାଁ ଆପଣଙ୍କୁ ମୁଁ ଖୁବ୍ ସମ୍ମାନ କରେ । ଯଦି ଆପଣ ପୁଣି ଫେରିଯାଆନ୍ତି ତେବେ ସମ୍ମାନର ଅପମାନ ଘଟିବ ବାରମ୍ବାର ଆପଣଙ୍କ ପାଖରେ ।"

"କିନ୍ତୁ କଥାହେବା ବନ୍ଦ ନକର ଯେମିତି; ମୁଁ ଭୁଲିଯିବି ସେସବୁ, ତମେ ଖୁସୀରେ ରୁହ ତମେ ବି ଭୁଲିଯିବ ଜାଣିବ ଆଜି ତମ ସହ ମୋର ଦେଖା ହିଁ ହୋଇନାହିଁ ।"

ସାର୍ ଫେରିଯାଆନ୍ତି, ଲୋପିତା ଖୁବ୍ କ୍ଷତାକ୍ତ ହୋଇସାରିଥାଏ ମାନସିକ ସ୍ତରରେ । ପୁରୁଷର ଏ ଦୟନୀୟ ଅବସ୍ଥାରେ ସେ ମ୍ରିୟମାଣ ଏବଂ ଦୁଃଖୀତ ଯାହାର ଅନ୍ତନାହିଁ, ବୋଧେ ସୃଷ୍ଟି ଥିବା ଯାଏଁ ।



*(ପ୍ରଜାତନ୍ତ୍ରସାପ୍ତାହିକୀ)*

# ବ୍ରହ୍ମଚାରୀ ସହ ଗୋଟିଏ ରାତି

ଶ୍ରୀୟା ଶୁଣୁଥିଲା ଧିର ସ୍ୱରରେ ପ୍ରତିଧ୍ୱନୀତ ହେଉଥିବା ଓଁର ଧ୍ୱନୀ । ଚାରିଆଡ ଶାନ୍ତ ଏବଂ ନୀରବତାର ଅନୁଭବ । ମଣିଷ ଯେଉଁ ଶାନ୍ତିକୁ ଜୀବନ ସାରା ଖୋଜୁଥାଏ- ଏ କ'ଣ ସେହି ଶାନ୍ତି ? କିଏ କହିବ- ହୁଏତ ହୋଇପାରେ ? ଓଁ ଶବ୍ଦ ଭାସିଆସୁଥିବା ଦିଗ ଆଡକୁ ସେ ଅଗ୍ରସର ହେଲା ମାତ୍ର ଯେତେ ନିକଟତର ହେବାର ଅନୁଭବ କଲେ ବି ସେ ସେହି ଧ୍ୱନୀ ପାଖରେ ପହଞ୍ଚିପାରୁ ନଥିଲା। ଶାନ୍ତିର ଧ୍ୱନୀ ଆସି ଶାନ୍ତ କରିଦେଉଥିଲା ତାର ଦେହ ଆଉ ମନକୁ ।

ଗୋଟିଏ ହାତରେ ଭ୍ୟାନିଟି ବ୍ୟାଗ ଆର ହାତରେ ଚକଲଗା ଲଗେଜ୍ । ସେ ସଠିକ୍ ଠିକଣାରେ ପହଞ୍ଚିବାପରେ ହଠାତ୍ ସ୍ଥିର କରିପାରୁନ ଥିଲା କ'ଣ କରିବ । କାହାକୁ ଖୋଜିବ, ସତେ ଅବା ମହାଶୂନ୍ୟରେ ସେ ପହଞ୍ଚିଯାଇଛି । ଯେଉଁଠି କାହାରି ପରିଚୟ ଖୋଜିବାର ଆବଶ୍ୟକ ହୁଏନା ।

ସେଠାରେ ଥିଲା ମଣିଷମାନଙ୍କର ଭୀଡ ତଥାପି ତାକୁ ଛୁଉଁ ନଥିଲା ସେମାନଙ୍କର କୋଳାହଳ। ସେ ଥିଲା ସତ୍ୟର ସନ୍ଧାନରେ । ସତ୍ୟର ସନ୍ଧାନ... ସେ ବା କିପରି ସନ୍ଧାନ... ? କ୍ଷଣେ ଚୁପ୍ ହୋଇ ପାଖରେ ଥିବା ସିମେଣ୍ଟ ଆସ୍ଥାନରେ ବସିପଡିଲା, ମୁଣ୍ଡ ଉପରେ ବିରାଟ ଗଛ, ଦୁଇଟି ଚଢେଇ ଥଣ୍ଟ ଲଗାଲଗି ହୋଇ ନିଜ ଭିତରେ କଥା ଦିଆନିଆ ହେଉଥିଲେ । ଚଢ଼େଇ ଦୁଇଟିଙ୍କର ଏପରି ଭାବ ଦିଆନିଆକୁ ଦେଖି ଶ୍ରୀୟା ମନେ ମନେ ସାମାନ୍ୟ ହସିଲା। ଏ ଆନନ୍ଦର ମୁହୂର୍ତ୍ତ ପାଣି ଫୋଟକା ପରି କେତେବେଳେ ଯେ ବିଷାଦର ରୂପ ନେଇଯିବ ସେକଥା କିଏ ଜାଣେ ? ତଥାପି ବି ଆନନ୍ଦର ମୁହୁର୍ତ୍ତଗୁଡାକ

ସବୁବେଳେ ବିଷାଦକୁ ଘୋଡେଇ ରଖି ମଣିଷ ଭିତରେ ବଞ୍ଚିବାର ସାହସ ଯୁଟାଏ । ମଣିଷକୁ ବଞ୍ଚି ରହିବା ପାଇଁ ଆନନ୍ଦକୁ ଖୋଜିବା କ'ଣ ନିହାତି ଜରୁରୀ ? ଗୋଟିଏ ମୁହୂର୍ତ୍ତରେ ତା' ମନକୁ ଏଭଳି ଅନେକ ପ୍ରଶ୍ନ ଛାଏଁ ଆସି ଛୁଇଁଯାଉଥାଏ ।

ଦୀର୍ଘଯାତ୍ରା ପରେ ଠିକଣାରେ ପହଞ୍ଚି ଶ୍ରୀୟା ଆଶ୍ୱସ୍ତ ହେଲା । ଚତୁଃର୍ଦ୍ଦିଗକୁ ଥରେ ଆଖି ବୁଲାଇ ଆଣିଲା । ଆଖି ତାର ଅଟକି ଗଲା ସୂଚନା କେନ୍ଦ୍ର ଲେଖାଥିବା ଏକ ଫଳକ ଉପରେ। ହୁଏତ ସେଠାରେ ତାକୁ ସବୁ ଖବର ମିଳିଯିବ। ତତ୍‌କ୍ଷଣାତ ନିଜ ବସିଥିବା ସ୍ଥାନରୁ ଉଠି ଅଫିସ୍ ଆଡକୁ ଆଗଭର ହେଲା । ନିଜ ପରିଚୟ ଦେଇ ତା' ଆସିବାର ଅଭିପ୍ରାୟ କର୍ମକର୍ତ୍ତାଙ୍କୁ ଜଣାଇଲା । ସଙ୍ଗେ ସଙ୍ଗେ ତା'ର ରହିବା ବ୍ୟବସ୍ଥା କରାଗଲା । ଶାନ୍ତ ଶୀତଳ ଆଶ୍ରମ ପରିବେଶରେ ମଣିଷକୁ ଶିକ୍ଷା ଦିଆଯାଏ ଜୀବନକୁ କିପରି ବଞ୍ଚି ହେବ । ଏହି ଆଶ୍ରମ ରୂପକ ବିଶ୍ୱବିଦ୍ୟାଳୟ ସେହିମାନଙ୍କ ପାଇଁ ଯେଉଁମାନେ ଜୀବନର ଉଦ୍ଦେଶ୍ୟକୁ ବୁଝନ୍ତି ବଞ୍ଚିବାର ଅର୍ଥକୁ ସାର୍ଥକ କରିବାକୁ ଚାହାନ୍ତି। ଏଠାରେ ସେଭଳି ଧରାବନ୍ଧା ନୀତିନିୟମ ନାହିଁ ଯେ ରାତିରୁ ଉଠି ଧୂପ ଦ୍ୱୀପ ନୈବେଦ୍ୟର ସରଞ୍ଜାମ ପ୍ରସ୍ତୁତ କରାଯିବ । ପୂଜା ପାର୍ବଣ ସାମଗ୍ରୀର ବ୍ୟବସ୍ଥା କରି ଆଶ୍ରମର ଯଥାର୍ଥତା ପ୍ରତିପାଦନ କରିବାକୁ ହେବ । ନା ଏ ସେଭଳି ଧରାବନ୍ଧା ନୀତିନିୟମରେ ମଣ୍ଡିତ ଆଶ୍ରମ ନୁହେଁ । ଶ୍ରୀୟାକୁ ଏହି ପରିବେଶ ଭଲ ଲାଗୁଥିଲା । ହୁଏତ ଏଠାରେ ଜୀବନର ସେହି ଚିରକାଂକ୍ଷିତ ଶାନ୍ତି ମିଳିଯିବ । ଦୀର୍ଘଯାତ୍ରାର କ୍ଲାନ୍ତିରୁ ଆଶ୍ୱସ୍ତ ହେବାକୁ ସେ ଫ୍ରେସ୍ ହୋଇ ଯାଇ ପୁଣି ଓଁ ସହ ଏକାତ୍ମ ହେବାକୁ ବାହାରି ଆସିଲା କୋଠରୀ ବାହାରକୁ।

ଧିରେ ଧିରେ ଆଶ୍ରମରେ ଉପସ୍ଥିତ ଭକ୍ତମାନଙ୍କ ସହିତ ତା'ର ପରିଚୟ ହେଲା । ଏ ସମସ୍ତଙ୍କ ସହ ପରିଚୟ ଭିତରେ ସେ ମନେ ମନେ ଖୋଜୁଥିଲା ତା'ର ଚିରକାଂକ୍ଷିତ ସତ୍ୟକୁ । କ'ଣ ସେହି ସତ୍ୟ, ତା'ର ସନ୍ଧାନର ଶେଷ ହେବ କେବେ ? ସତ୍ୟର ସେପରି କ'ଣ କୌଣସି ନିର୍ଦ୍ଦିଷ୍ଟ ସଜ୍ଞା ଅଛି ?

'ଓଃ ମୁଁ ଏକୁଟିଆ ହୋଇଯାଉଛି । ଏମାନଙ୍କ ସହ ପରିଚୟ ହେବାର କୌଣସି ଆବଶ୍ୟକତା ନାହିଁ । ଜୀବନରେ ଏତେ ଜଣାଶୁଣା, ସାଙ୍ଗସାଥି, ଭାବ ଆଦାନପ୍ରଦାନ ପରେ ବି ମହାଶୂନ୍ୟରେ ଏକୁଟିଆ ବିଚରଣ କରିବାର ଅନୁଭବ ହେଉଛି ।'

ଶ୍ରୀୟା ପ୍ରକୃତିସ୍ଥ ହୁଏ...। ନିଜର କିଛି ଆବଶ୍ୟକତାକୁ ନେଇ ମନକୁ ମନ ପ୍ରଶ୍ନକରେ। 'ନା, ମୋର କିଛି ଆବଶ୍ୟକତା ନାହିଁ।' ମନକୁ ମନ ସେ ଉତ୍ତର ପାଇଯାଏ। ଜୀବନର ସତ୍ୟତାକୁ ସେ ଶୂନ୍ୟତା ଭିତରେ ଅନୁଭବ କରେ ଆଉ ତାର ଅନୁଭବ ଆସେ ମହାଶୂନ୍ୟତାର ଘେର ଭିତରେ ସେ ଯେପରି ବାନ୍ଧି ହୋଇଯାଉଛି ।

ରୁମ୍ ଭିତରକୁ ଚାଲିଆସେ ଶ୍ରୀୟା । ଧଡାସ୍ କରି ବେଡ୍ ଉପରେ ଚିତ ହୋଇ ପଡିଯାଏ । ପାଖ ବେଡ୍‌ରେ ଥିବା ଜଣେ ମହିଳା, ଶ୍ରୀୟାର ସୁସ୍ଥତାକୁ ନେଇ ପ୍ରଶ୍ନ କରନ୍ତି । ଶ୍ରୀୟାର ମୋବାଇଲ ବାଜି ଉଠିଲା । ଚାହୁଁ ନଥିଲେ ବି ରିସିଭ୍ କରେ ଶ୍ରୀୟା। ଫୋନ୍‌ର ସେପଟ ପକ୍ଷରେ ଥିଲେ ବ୍ରହ୍ମଚାରୀ ଅକ୍ଷୟ। ଶ୍ରୀୟା ରହୁଥିବା କୋଠରୀ ବାହାରୁ ସେ ଫୋନ୍ କରୁଥିଲେ । ଶ୍ରୀୟାର କଣ୍ଠସ୍ୱରରୁ ସେ ଅନୁମାନ କରିନେଲେ ଶ୍ରୀୟାର ମାନସିକ କ୍ଳାନ୍ତିର କଥା। ତତ୍‌କ୍ଷଣାତ୍ ତାକୁ ରୁମ୍ ବାହାରକୁ ଆସିବାକୁ ନିର୍ଦ୍ଦେଶ ଦେଲେ । ଶ୍ରୀୟା ବାହାରକୁ ଚାଲିଆସିଲା । କୋଠରୀ ବାହାରେ ବ୍ରହ୍ମଚାରୀ ଅକ୍ଷୟ ଅପେକ୍ଷା କରିଥିଲେ। ବ୍ରହ୍ମଚାରୀ ଅକ୍ଷୟ ଯଦିଓ ଜଣେ ଶାନ୍ତ ଓ ସରଳ ମଣିଷ ତଥାପି ଗାମ୍ଭୀର୍ଯ୍ୟ ତାଙ୍କ ମୁଖ ମଣ୍ଡଳରେ ବାରି ହୋଇପଡୁଥିଲା । ଶ୍ରୀୟାକୁ ଭୋଜନ ପାଇଁ ଆମନ୍ତ୍ରଣ କଲେ ଆଉ ଦୁହେଁ ଡାଇନିଂ ଆଡକୁ ଅଗ୍ରସର ହେଲେ। ଲମ୍ବା ଯାତ୍ରାର କ୍ଳାନ୍ତିର ଚାପରେ ଶ୍ରୀୟାର ଆଦୌ ଖାଇବାକୁ ଇଚ୍ଛା ନଥିଲା ତଥାପି ବ୍ରହ୍ମଚାରୀ ଅକ୍ଷୟଙ୍କର ନିର୍ଦ୍ଦେଶକୁ ଅମାନ୍ୟ ନକରି ସେ ଖାଇବାପାଇଁ ପ୍ରସ୍ତୁତ ହୋଇଗଲା । ଖାଇବାବେଳେ ଜୀବନର ଅନେକ ଆଚରଣ ଉପରେ ଶ୍ରୀୟାକୁ ଉପଦେଶ ଦେବା ଆରମ୍ଭ କଲେ ବ୍ରହ୍ମଚାରୀ ଅକ୍ଷୟ ।

ବ୍ରହ୍ମଚାରୀ ଅକ୍ଷୟଙ୍କ ସହ ଆଲୋଚନା କରୁ କରୁ ଶ୍ରୀୟା ଆଶ୍ଚର୍ଯ୍ୟ ହେଲା ଜଣେ ବ୍ରହ୍ମଚାରୀ ହୋଇ ସେ କିପରି ଗୃହସ୍ଥିର ନିତିବାଣୀ ପ୍ରଦାନ କରୁଛନ୍ତି । ତଥାପି ଧୈର୍ଯ୍ୟର ସହ ଶୁଣୁଥିଲା ଶ୍ରୀୟା। ଆଲୋଚନାର ବିଷୟବସ୍ତୁ କେତେ ଗ୍ରହଣ ଯୋଗ୍ୟ ବା ନୁହେଁ ତାହା ସଠିକ୍ ଅନୁମାନ କରିପାରୁନଥିଲା।  ଏବେ ବି ମହାଶୂନ୍ୟରେ ରହିବାପରି ଶ୍ରୀୟା ଅନୁଭବ କରୁଥିଲା । ଅନେକ ସମୟ ବ୍ରହ୍ମଚାରୀଙ୍କ ସହ କଥାବାର୍ତ୍ତା କଲାପରେ ଶ୍ରୀୟା ଏବଂ ବ୍ରହ୍ମଚାରୀ ଡାଇନିଂରୁ ଉଠି ଆସି ଆଶ୍ରମର ବିଭିନ୍ନ ସ୍ଥାନ ବୁଲିବାକୁ ଲାଗିଲେ। ବୁଲିବାବେଳେ ବ୍ରହ୍ମଚାରୀ ଅକ୍ଷୟଙ୍କ ଅଧିକ ଆଗ୍ରହ ଥାଏ ଶ୍ରୀୟାକୁ ଆଶ୍ରମର ପରିବେଶ ସହିତ ଅଧିକ ନିବିଡ କରାଇବାକୁ। ଯାତ୍ରାଜନିତ କ୍ଳାନ୍ତିରୁ ମୁକ୍ତି ପାଇବା ପାଇଁ ଶ୍ରୀୟା ଟିକିଏ ବିଶ୍ରାମ ଚାହୁଁଥିବାବେଳେ ବ୍ରହ୍ମଚାରୀ ଅକ୍ଷୟ ତାକୁ ଆଶ୍ରମର ବିଭିନ୍ନ ବିଭାଗ ସହିତ ପରିଚୟ କରାଇବାରେ ବ୍ୟସ୍ତ ଥାଆନ୍ତି ଆଉ ମଝି ମଝିରେ ଶ୍ରୀୟାକୁ ପ୍ରଶଂସା କରିବାକୁ ଭୁଲୁନଥାନ୍ତି।

ଆଶ୍ରମର ପରିବେଶ ସହିତ ଶ୍ରୀୟାର ନିବିଡତା ବଢ଼ାଇବା ପାଇଁ ବ୍ରହ୍ମଚାରୀ ଅକ୍ଷୟ ସିନା ଚେଷ୍ଟିତ ଥିଲେ କିନ୍ତୁ ଶ୍ରୀୟାକୁ ଏକାକୀପଣ ଆବୋରି ବସିଥିଲା । ଶୂନ୍ୟତା ଭିତରେ ସେ ନିଜକୁ ହଜାଇ ଦେବାକୁ ପସନ୍ଦ କରୁଥିଲା । ଏତେ ବେଳକୁ ଦୁହେଁ ଆସି ଶ୍ରୀୟାର କୋଠରୀ ସାମ୍ନାରେ ପହଞ୍ଚି ଗଲେଣି। ଶ୍ରୀୟାକୁ ଶୁଭରାତ୍ରୀ କହି ବ୍ରହ୍ମଚାରି

ଅକ୍ଷୟ ବିଦାୟ ନେଲେ। ଶ୍ରୀୟା କୋଠରୀ ଭିତରେ ପଶିଯାଇ ତା' କ୍ଳାନ୍ତ ଶରୀରକୁ ଅଜାଡିଦେଲା ବିଛଣା ଉପରେ ।

ଦିନ ସାରାର କ୍ଳାନ୍ତି ଶ୍ରୀୟା ଆଖିରେ ନିଦ ମାଡିଆସେ। ସକାଳକୁ ଶ୍ରୀୟାର ନିଦ ଭାଙ୍ଗିବା ଆଗରୁ ତା' ଫୋନ ବାଜି ଉଠିଲା। ଅଧାଭଙ୍ଗା ନିଦରେ ଆଖି ମଳି ମଳି ମୋବାଇଲ ଉଠାଇବା ଭିତରେ ଫୋନ୍‌ର ରିଂ ବନ୍ଦ ହୋଇଗଲା । ମିସ୍‌କଲ୍‌ରୁ ଜାଣିଲା କଲ୍ ଥିଲା ବ୍ରହ୍ମଚାରୀ ଅକ୍ଷୟଙ୍କର। ଆଉ ବିଛଣା ଛାଡିବାକୁ ନିଷ୍ପତ୍ତି ନେଲା । ନିତ୍ୟକର୍ମ ସାରି ପ୍ରସ୍ତୁତ ହେବା ଭିତରେ ବ୍ରହ୍ମଚାରୀ ଅକ୍ଷୟଙ୍କର ଆଠଥର ଫୋନ୍ ଆସିସାରିଥାଏ। ବ୍ରହ୍ମଚାରୀଙ୍କର ବାରମ୍ବାର ଫୋନ୍‌ରେ ଶ୍ରୀୟା ବ୍ୟସ୍ତ ନହୋଇ ନିଜ ଢ଼ଙ୍ଗରେ ପ୍ରସ୍ତୁତ ହୋଇ ବାହାରକୁ ବାହାରି ଆସିଲା ।

'ଆରେ, ଆପଣ କେତେବେଳୁ ?'

'ଆପଣଙ୍କର ଫୋନ ଦେଖନ୍ତୁ ।'

'ଉଃ, ଆଠଥର କଲ । କ୍ଷମାକରିବେ ମୁଁ ଶୁଣିପାରିନାହିଁ , ବାଥ୍‌ରୁମ୍‌ରେ ଥିଲି ।'

'ଜାଣନ୍ତି ମୁଁ ଅଧଘଣ୍ଟାରୁ ଅଧିକ ହେବ ଏଠି ଆପଣଙ୍କୁ ଅପେକ୍ଷା କରିଛି ।'

'ଆପଣ ଅପେକ୍ଷା କରିବାର କିଛି ଆବଶ୍ୟକ ନଥିଲା, କାହିଁକି କଷ୍ଟକଲେ ।'

'ଏହା ଆପଣଙ୍କ ପାଇଁ କଷ୍ଟ ହୋଇପାରେ ଆମ ପାଇଁ ନୁହେଁ, ଆମର ଏହା ପରମ ଧର୍ମ । ଅତିଥିର ସେବା କରିବା ଆମର କର୍ତ୍ତବ୍ୟ ।'

'ଏ କର୍ତ୍ତବ୍ୟ କଥା ଯଦି ମୋତେ ଆଗରୁ କହିଥାନ୍ତେ ମୁଁ ଆଦୌ ଆପଣଙ୍କୁ କଷ୍ଟ ଦେଇ ନଥାଆନ୍ତି ।'

'ଛାଡନ୍ତୁ, କେଉଁ ଜନ୍ମର ଗୋଟିଏ ଋଣ ଶୁଝିଗଲା ।'

'ଆରେ ବାଃ, ଆପଣ ତ ଭାରି ଚାଲାକରେ ଋଣ ଶୁଝାଇ ଦେଉଛନ୍ତି ।'

'ଆପଣଙ୍କୁ ବ୍ୟସ୍ତ କଲି ଏଇଥି ପାଇଁ ଯେ ଆପଣ ଯେପରି ସକାଳର ପ୍ରବଚନକୁ ମିସ୍ ନ କରନ୍ତି ।'

'ପ୍ରବଚନ, ଆହୁରି ଶୁଣିବାକୁ ପଡିବ ।' ମନେ ମନେ ଶ୍ରୀୟା ବିବ୍ରତ ହେଲା । ବ୍ରହ୍ମଚାରୀ ତା'ମୁଖମଣ୍ଡଳର ଭାବରୁ ଜାଣିପାରିଲେ କି କ'ଣ ଖୁବ୍ ଆଦରରେ, ସ୍ନେହଭରା ଗଳାରେ ସେଦିନର ରୁଟିନ୍ ତା' ଆଗରେ କହିବାରେ ଲାଗିଲେ, "ପ୍ରବଚନ, ବ୍ରେକଫାଷ୍ଟ ତା'ପରେ ଭ୍ରମଣ ।" ଏହା ମଧ୍ୟରୁ କୌଣସିଥିରେ ଶ୍ରୀୟାର ବିଶେଷ ଆକର୍ଷଣ

ନଥିଲା । ହେଉ କିଛି ସମୟ ବୁଲି ଆସିଲେ ହୁଏତ ମନର ଶୂନ୍ୟପଣ ଦୂର ହୋଇଯିବ ଏହି ଆଶାରେ ଶ୍ରୀୟା ବାହାରି ପଡିଲା ଅନ୍ୟାନ୍ୟ ସାଥୀଙ୍କ ସହ, ସାଥୀରେ ବ୍ରହ୍ମଚାରୀ ମଧ୍ୟ । ବ୍ରହ୍ମଚାରୀ କଥା ଛଳରେ ଏକଥା ବି ଶ୍ରୀୟା ଆଗରେ ବ୍ୟକ୍ତ କରନ୍ତି, 'ମୁଁ କେବଳ ଆପଣଙ୍କ ପାଇଁ ଆସୁଛି ।' ଏହି କଥାଟି ଶ୍ରୀୟାକୁ ବିଶେଷ ଆକର୍ଷିତ କରିନଥିଲା । ରାସ୍ତା ଉପରେ ବସ୍ ଆଗେଇ ଚାଲିଥାଏ । ଝରକା ବାହାରକୁ ଶ୍ରୀୟା ସେମିତି ଚାହିଁଥାଏ ହୁଏତ କେଉଁଠି ଶୂନ୍ୟତାର ଶେଷ ହେବ । ବ୍ରହ୍ମଚାରୀ ରାସ୍ତାସାରା ଶ୍ରୀୟାକୁ ଖୁସୀ କଲାପରି ଅନେକ କଥା କହି ଚାଲିଥାନ୍ତି । ମଝିରେ ମଝିରେ କିଛି ଫଳ ଏବଂ ବିସ୍କୁଟ ଶ୍ରୀୟାକୁ ଖୁଆଇ ଦେଇ ନିଜେ ସେହି ଅଇଁଠା ଫଳ ଏବଂ ବିସ୍କୁଟକୁ ଖାଇବାକୁ ପଛାଉନଥାନ୍ତି ।

ଶ୍ରୀୟାର ମୁଖରେ ଆଶ୍ଚର୍ଯ୍ୟର ପ୍ରଶ୍ନ । ଏଭଳି କରି ସେ ତାକୁ ପାପ ମୁଣ୍ଡାଉ ନାହାନ୍ତି ତ ? ଶ୍ରୀୟାର ପ୍ରଶ୍ନରେ, ବ୍ରହ୍ମଚାରୀ ନିଜ ଓଠ ଉପରେ ଆଙ୍ଗୁଳି ରଖି ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଲେ । ଶ୍ରୀୟା ଚୁପ୍ ରହିଲା ତେବେ ମନେ ମନେ ଭାବିଲା ଏପରି କରିବାର କି ପ୍ରୟୋଜନତା ଅଛି ?

ବସ୍ ଆସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା । ବସ୍‌ର ସମସ୍ତ ଯାତ୍ରୀ ବସରୁ ଓହ୍ଲାଇ ଭ୍ରମଣ ପାଇଁ ଧାଡିବାନ୍ଧି ଗଲେ । ଭ୍ରମଣ ସମୟରେ ବ୍ରହ୍ମଚାରୀ ଶ୍ରୀୟାର ଖୁବ୍ ଯତ୍ନ ନେଉଥାନ୍ତି । ତାର ପ୍ରତିଟି କଥାକୁ ବୁଝିବା ଏବଂ କରିବାରେ ସର୍ବଦା ଆଗଭରଥାନ୍ତି । ନିର୍ଦ୍ଦିଷ୍ଟ ସ୍ଥାନର ଦୁଇ କିଲୋମିଟର ପୂର୍ବରୁ ବସ ରହିଯାଏ । ଦର୍ଶନୀୟ ସ୍ଥଳକୁ ପହଞ୍ଚିବାକୁ ବସ୍‌ର ସମସ୍ତ ଯାତ୍ରୀ ଦଳ ବାନ୍ଧି ଗଲେ । ଫେରିବାବେଳେ ଶ୍ରୀୟା ପ୍ରଥମ ଦଳଙ୍କ ସହ ବସ୍‌କୁ ଫେରି ଆସିଲା । ଏପରି ଦେଖି ବ୍ରହ୍ମଚାରୀ ଶ୍ରୀୟାକୁ ଆକଟ କରି କହିଲେ, "ଅପେକ୍ଷା କରିଥିଲେ କ'ଣ ହୋଇନଥାଆନ୍ତା ?"

ଶ୍ରୀୟା ସେଭଳି କିଛି ଅପେକ୍ଷାର ଆବଶ୍ୟକ ଥିବା ଅନୁଭବ କରିନଥିଲା, "ଅନ୍ୟ ସମସ୍ତେ ଥିଲେ, ସାଥୀ ହୋଇ ଆସିବାରେ କୌଣସି ଅସୁବିଧା ନଥିଲା ସେଥିପାଇଁ ଚାଲିଆସିଲି ।"

ବ୍ରହ୍ମଚାରୀ ଶ୍ରୀୟାର କିଛି ଅଧିକ ଧ୍ୟାନ ନେଉଥିବା ସେ ଅନୁମାନ କରେ । ସେଠାରୁ ଫେରିବାବେଳେ ଶ୍ରୀୟା ଖୁବ୍ ଅସ୍ୱସ୍ତି ଅନୁଭବ କଲା । ପରବର୍ତ୍ତୀ ନିର୍ଦ୍ଦିଷ୍ଟ ସ୍ଥାନ ଦେଖିବାକୁ ବସ୍‌ରୁ ଜଣ ଜଣ କରି ସବୁ ଯାତ୍ରୀ ଓହ୍ଲାଇ ଗଲେ, ଶ୍ରୀୟା କିନ୍ତୁ ବସ୍‌ରେ ବସିରହିଲା । ଶ୍ରୀୟାର ରହିବା ଦେଖି ବ୍ରହ୍ମଚାରୀ ଅକ୍ଷୟ ମଧ୍ୟ ବସ୍ ଭିତରେ ରହିଗଲେ । ଏଥର ଶ୍ରୀୟା ବସ୍‌ର ପଛସିଟ୍‌କୁ ଚାଲିଯାଇ କିଛି ସମୟ ଚିତ୍ ହୋଇ ଶୋଇପଡିଲା । ବ୍ରହ୍ମଚାରୀ ଶ୍ରୀୟା

ପାଖକୁ ଆସିଲେ, ଶ୍ରୀୟାର ମୁଣ୍ଡକୁ ନିଜ କୋଳ ଉପରେ ରଖି ତା'କପାଳକୁ ନିଜ ହାତ ପାପୁଲିର ଚାପରେ ଆଶ୍ୱସ୍ତ କରିବାକୁ ଲାଗିଲେ। ଶ୍ରୀୟା ଧିରେ ଧିରେ ଆରାମ ଅନୁଭବ କରିବାକୁ ଲାଗିଲା। ବ୍ରହ୍ମଚାରୀ ଶ୍ରୀୟାର ଆରାମ ପାଉଥିବା ଦେଖି ତା' ହାତ, ପାଦ, ଗୋଡ ସବୁ ଘସାଘସି କରିବାରେ ଲାଗିଲେ । ଶ୍ରୀୟା କିଛି ସମୟପରେ ଉଠିବସିଲା । ବ୍ରହ୍ମଚାରୀଙ୍କୁ ବଧେଇ ଜଣାଇ କ୍ଷମାଭିକ୍ଷା କଲା, ସେ ଯେ ତା'ପାଇଁ କଷ୍ଟ ଭୋଗ କରିଛନ୍ତି । ଯାହାଙ୍କ କଥାକୁ ସେ ଏତେଟା ଗୁରୁତ୍ୱ ଦେଉନଥିଲା ସେ ତା'ର ଏତେ ସେବା କରିବା ଦେଖି ଶ୍ରୀୟା ମନରେ ବ୍ରହ୍ମଚାରୀଙ୍କ ପ୍ରତି ଶ୍ରଦ୍ଧା ଉତ୍ପନ୍ନ ହେଲା । ବ୍ରହ୍ମଚାରୀ ପ୍ରତିକ୍ଷଣ ଶ୍ରୀୟାର ଯତ୍ନ ନେବା, ତାର ସୁବିଧା ଅସୁବିଧା ବୁଝିବା ଆଦି ଦେଖି ଶ୍ରୀୟା କିଛିଟା ନିକଟତର ହୋଇଯାଏ ବ୍ରହ୍ମଚାରୀଙ୍କ ସହିତ । ସଞ୍ଜ ଆସିସାରିଥିଲା । ଆଶ୍ରମକୁ ସମସ୍ତେ ଫେରିଆସିଲେ। ଶ୍ରୀୟା ବ୍ରହ୍ମଚାରୀ ଅକ୍ଷୟଙ୍କୁ ଆଉ ଟିକେ ଅଧିକ ଚିହ୍ନିସାରିଥାଏ । ଜ୍ଞାନସହ ପରିଚିତ ହୋଇସାରିଥାଏ । ଦିନ ତମାମ୍ ବ୍ରହ୍ମଚାରୀଙ୍କସହ କଥୋପକଥନ ଏବଂ ତାଙ୍କ ଉତ୍ତମ ବ୍ୟବହାରରେ ଶ୍ରୀୟା ମନରୁ ବ୍ରହ୍ମଚାରୀଙ୍କୁ ନେଇ ଥିବା ବିରୋଧାଭାସ ଦୂର ହୋଇ ବିଶ୍ୱାସ ଜନ୍ମ ହୋଇସାରିଥାଏ ।

ଶ୍ରୀୟା ଏଥର ବ୍ରହ୍ମଚାରୀଙ୍କଠାରୁ କିଛି ଈଶ୍ୱରୀୟ ତତ୍ତ୍ୱ ଏବଂ ଦର୍ଶନକୁ ଜାଣିବାର ଇଚ୍ଛା ପ୍ରକଟ କରେ । ଶ୍ରୀୟା ମନରେ ପ୍ରଶ୍ନ, "ସନ୍ୟାସୀମାନେ ଗେରୁଆ ବସ୍ତ୍ର ପରିଧାନ କରନ୍ତି କାହିଁକି ?" ବ୍ରହ୍ମଚାରୀ ଏହାର ଉତ୍ତର ଦେବାକୁ ଯାଇ ତତ୍‌କ୍ଷଣାତ କହନ୍ତି- ଏହାର ଦୁଇଟି କାରଣ ରହିଛି । ଗୋଟିଏ ହେଲା ଅଗ୍ନିର ରଙ୍ଗ ନାରଙ୍ଗୀ, ଅଗ୍ନି ମଧ୍ୟରେ ଯାହାକିଛି ଚାଲିଆସିଲେ ତାହା ଯେପରି ଭସ୍ମିଭୂତ ହୋଇଯାଏ ଠିକ୍ ସେପରି ଜୀବନର ମୋହମାୟା ପ୍ରୀତି ବନ୍ଧନ ସବୁକୁ ତୁଚ୍ଛ କରିବାକୁ ହେଲେ ସନ୍ୟାସ ଜୀବନ ଗ୍ରହଣ କରିବାକୁ ପଡେ । ଆଉ ସନ୍ୟାସୀମାନଙ୍କର ବସ୍ତ୍ରର ରଙ୍ଗ ନାରଙ୍ଗୀ ଯାହା କି ଅଗ୍ନିର ରଙ୍ଗ। ଏହି ରଙ୍ଗ ସର୍ବଦା ଚେତେଇ ଦିଏ ଯେ ଜୀବନର ଶେଷ ଅଛି ତେଣୁ ନିଜ କର୍ତ୍ତବ୍ୟ ପ୍ରତି ଏବଂ ନିଜ ଜୀବନର ନିଷ୍ଠାରେ ଏକାଗ୍ରତା ରଖିବାକୁ ସନ୍ନ୍ୟାସୀ ନାରଙ୍ଗୀ ବସ୍ତ୍ର ଧାରଣ କରିଥାଏ । ଦ୍ୱିତୀୟଟି ହେଉଛି; ଈଶ୍ୱରଙ୍କ ପରିଧି ନାରଙ୍ଗୀ, ସନ୍ୟାସୀମାନେ ଚାହାନ୍ତି ଈଶ୍ୱରଙ୍କ ପରିଧି ମଧ୍ୟରେ ସର୍ବଦା ଲୀନ ହୋଇଯିବା ପାଇଁ ସେଥିପାଇଁ ହୁଏତ ସେମାନେ ନାରଙ୍ଗୀ ବସ୍ତ୍ର ପରିଧାନ କରନ୍ତି ।

ବ୍ରହ୍ମଚାରୀଙ୍କଠାରୁ ଏଭଳି ଉତ୍ତର ଶୁଣି ଶ୍ରୀୟା ମନରେ ଅନେକ ପ୍ରଶ୍ନ ଏବଂ ଦ୍ୱନ୍ଦ୍ୱ। ସେତେବେଳକୁ ଯିଏ ଯାହା କୋଠରୀକୁ ରାତ୍ରି ଭୋଜନ ସାରି ଦିନସାରାର କ୍ଳାନ୍ତି ମେଣ୍ଟାଇବାକୁ ଫେରି ସାରିଥିଲେ । ନିରୋଳା କୋଠରୀ ଭିତରେ ଶ୍ରୀୟା ଏବଂ

ବ୍ରହ୍ମଚାରୀ । ଶ୍ରୀୟା ମନରେ ଆଦୌ ଭୟ କି ଶଂକା ନଥିଲା । ସେ ତା'ମନକୁ ଆସୁଥିବା ସମସ୍ତ ପ୍ରଶ୍ନର ଉତ୍ତର ଖୋଜୁଥିଲା । "ଈଶ୍ୱରଙ୍କର ତେବେ କ'ଣ ନିର୍ଦ୍ଦିଷ୍ଟ ଗୋଟିଏ ଘର ପରିଧି ରହିଛି, ସେ ପରିଧିର ରଙ୍ଗ କ'ଣ ନାରଙ୍ଗୀ ? ସେଠି ସେ କରନ୍ତି କ'ଣ ? କାହିଁକି ମୋକ୍ଷର ଆଗ୍ରହ ଏତେବେଶୀ ସନ୍ୟାସୀଙ୍କୁ ବ୍ୟତିବ୍ୟସ୍ତ କରେ ? ମୋକ୍ଷ ପ୍ରାପ୍ତି ପରେ ମଣିଷ କ'ଣ ସତରେ ମାନସିକ ସ୍ତରରେ ସ୍ଥିର ହୋଇପାରେ ? ହୋଇପାରେ ମୋକ୍ଷପ୍ରାପ୍ତି ପରେ ମାନସିକ ସ୍ଥିରତା ସହିତ ମଣିଷ ତା'ଜୀବନର ଚତୁଃପାର୍ଶ୍ୱରେ ଥିବା ଚରିତ୍ରମାନଙ୍କ ଦ୍ୱାରା ଘଟୁଥିବା କାହାଣୀରୁ ନିଜେ ହୃଦୟଙ୍ଗମ କଲା ପରି ହୃଦୟଟେ ଖୋଜିପାଏ । ସେହି ହୃଦୟରେ କେତେ ଢ଼େଉ ସେମାନଙ୍କ ତରଙ୍ଗରେ କେତେ ଭଙ୍ଗୀରେ ଖେଳନ୍ତି । ସେସବୁ ବୁଝିବା, ଜାଣିବା, ଅନୁଭବ କରିବାପରି ଏହି ରକ୍ତମାଂସର ଶରୀର ହିଁ ସବୁ ଉପଲବ୍ଧ କରାଏ ମୋକ୍ଷ ପ୍ରାପ୍ତି ହେବା ପରେ ।

ବ୍ରହ୍ମଚାରୀ ଶ୍ରୀୟାକୁ ନିରେଖିଲେ, କହିଲେ "କ'ଣ କିଛି ଦ୍ୱନ୍ଦ୍ୱ ?"

"ନା ।"

'ତେବେ ଚୁପ୍ ରହିଗଲେ କାହିଁକି ?' ଶ୍ରୀୟା ତଥାପି ଚୁପ୍ ରହିଥାଏ । ବ୍ରହ୍ମଚାରୀ ଭୟ ପାଇଗଲେ, ଦିନ ତମାମର ବୁଲାବୁଲି ଅସୁସ୍ଥ ଶରୀରକୁ କିଛି ଅଧିକ ଅସୁସ୍ଥ କରିଦେଇନି ତ ? ଶ୍ରୀୟା ସଂପୂର୍ଣ୍ଣ ମୌନହୋଇ କିଛିକ୍ଷଣ ରହିଯିବା ବ୍ରହ୍ମଚାରୀଙ୍କୁ ବ୍ୟସ୍ତକରେ ।

ହଠାତ୍ ନୀରବତା ଭଙ୍ଗ କରି ଶ୍ରୀୟା ଉତ୍ତର ଦେଲା-"ମୁଁ ପାପ କରିବାକୁ ଚାହେଁ ?"

ବ୍ରହ୍ମଚାରୀ ଆଶ୍ଚର୍ଯ୍ୟ ହୋଇ ଶ୍ରୀୟାକୁ ଚାହିଁ କହିଲେ, 'ପାପ କରି ମୋକ୍ଷଲାଭ କରାଯାଇପାରେନା ମୋକ୍ଷ ଲାଭର ଆଶା ଯଦି ରଖିଥାଅ ତେବେ ପୁଣ୍ୟର ସାହାରା ନିଅ । କିନ୍ତୁ ତୁମେ ତ ପାପ... ?

'ମୁଁ ପୁନଃର୍ଜନ୍ମର ଆଶା ରଖୁଛି । ମୋକ୍ଷ ପ୍ରାପ୍ତି ମୋର ଦରକାର ନାହିଁ । ଏକ ନିଶ୍ୱାସରେ ଉତ୍ତର ଦେଇଗଲା ଶ୍ରୀୟା । କେଉଁ ଭଳି ପାପ କଲେ ପୁନଃର୍ଜନ୍ମ ସମ୍ଭବ ହୋଇଥାଏ ଦୟାକରି ମୋତେ କହିବେ ?' ଶ୍ରୀୟାଠାରୁ ଏପରି ପ୍ରଶ୍ନରେ ହତବାକ୍ ହୋଇଗଲେ ବ୍ରହ୍ମଚାରୀ ଅକ୍ଷୟ ।

'ଅନେକ ପ୍ରକାର ପାପ ଅଛି, ଆପଣ କେଉଁ ପାପକୁ ଗ୍ରହଣ କରିବେ ?'

'ଯେଉଁ ପାପରେ ଅନ୍ୟର କ୍ଷତି ନଥିବ, ଅନ୍ୟକୁ ଆଘାତ ହେଉ ନଥିବ, କେହି ଯେପରି କଷ୍ଟ ନ ପାଆନ୍ତି ।'

'କିନ୍ତୁ, ସେଭଳି କିଛି ପାପ ସଂସାରରେ ନାହିଁ ଯେଉଁଠି ଅନ୍ୟ ଜଣେ କ୍ଷତାକ୍ତ ହେବନାହିଁ ।'

'ନିଶ୍ଚୟ ରହିଛି, ଯେଉଁ ପାପର ଭାଗିଦାରୀ ମୁଁ ନିଜେ ହିଁ ହେବି ? କ'ଣ ମୋତେ ସାହାର୍ଯ୍ୟ କରିବେ ନାହିଁ ?'

'ପାପରେ ସାହାର୍ଯ୍ୟ କଲେ ମୁଁ ନିଜେ ପାପୀ ହୋଇଯିବି ।'

'ଆପଣ ତ କହୁଥିଲେ ଶରୀର ଏବଂ ଆତ୍ମା ଭିନ୍ନ ଭିନ୍ନ ବୋଲି ।'

'ହଁ ଭିନ୍ନ, ମୁଁ ଏବେ ବି କହୁଛି ଶରୀର ଏବଂ ଆତ୍ମା ଭିନ୍ନ । ଶରୀରର କୌଣସି ମହତ୍ତ୍ୱ ନାହିଁ ସୃଷ୍ଟି ଚକ୍ରରେ, ସେ ତ କେବଳ ଗୋଟିଏ ଶେଷ ହେବା ବସ୍ତୁ । ଆଉ ଏହି ବସ୍ତୁକୁ ଆତ୍ମା ହିଁ ପରିଚାଳିତ କରାଇଥାଏ ।'

'ମୋ ମନ କହୁଛି, ଆପଣ ମୋତେ ସାହାର୍ଯ୍ୟ କରିପାରିବେ ପାପରେ ଭାଗୀଦାର ନହୋଇ ।'

'ମୋର ଆପଣଙ୍କୁ ସାହାର୍ଯ୍ୟ କରିବାରେ କୌଣସି କୁଣ୍ଠା ନାହିଁ । କୁହନ୍ତୁ ମୁଁ କଥା ଦେଉଛି ଆପଣଙ୍କୁ ସାହାର୍ଯ୍ୟ କରିବି ।'

'ମୋତେ ସାହାଯ୍ୟ କରି ହୁଏତ ଆପଣ କିଛି ହରାଇପାରନ୍ତି । ଏଣୁ ପୁଣି ଥରେ ଭାବି ଦେଖନ୍ତୁ ।'

'ନା, କିଛି ଭାବିବାର ନାହିଁ, ଜନସେବାରେ ନିଜକୁ ବାଲ୍ୟକାଳରୁ ସମର୍ପି ଦେଇଛି । ଆପଣଙ୍କ ପାଇଁ ଯାହାବି କରିବି ତାହା ମୋର ଧର୍ମ, ସେବା । ଯେଉଁ ସେବାରୁ ମୁଁ ପରମ ଶାନ୍ତି ପାଇବି ।'

'ତେବେ କ'ଣ, ଆପଣ ପାଇବାର ଇଚ୍ଛା ରଖନ୍ତି ?'

'ଶାନ୍ତି । ଶାନ୍ତି ଛଡା ମୋ ମନରେ ଆଉ କୌଣସି ଦ୍ୱିତୀୟ ଆଶା ନାହିଁ ।'

'ଆପଣ ଯେଉଁ ଶାନ୍ତି କଥା କହୁଛନ୍ତି ତାହା ପରବର୍ତ୍ତୀ ସମୟରେ ଅଶାନ୍ତିର କାରଣ ହୋଇପାରେ ।'

'ନା, ଭବିଷ୍ୟତକୁ ଚିନ୍ତା କରି ମୁଁ ମୋର ବର୍ତ୍ତମାନ ଧର୍ମକୁ ଛାଡି ପାରିବି ନାହିଁ । କୁହନ୍ତୁ କେଉଁ ଭଳି ସହଯୋଗ ଚାହାନ୍ତି ?'

ଶ୍ରୀୟା ଏଥର ଆଉ କୌଣସି କଥାବାର୍ତ୍ତା ନ କରି ନିଜ ବସିଥିବା ସ୍ଥାନରୁ ଉଠି ଆସି ଟେବୁଲ ଉପରେ ଥିବା ପାଣି ଜଗରୁ ପାଣି ଢାଳି ଢକ ଢକ କରି ଦୁଇ ଗ୍ଲାସ ପାଣି ପିଇଗଲା । ବ୍ରହ୍ମଚାରୀଙ୍କ ଆଡକୁ ଅନ୍ୟ ଏକ ଗ୍ଲାସରେ ପାଣି ବଢାଇ ଦେଲା । ବ୍ରହ୍ମଚାରୀ ଶ୍ରୀୟା ହାତରୁ ପାଣି ନେଇ ପିଇଲେ । ତାଙ୍କ ଶୋଷ ମେଣ୍ଟିଲାନାହିଁ । ପୁଣି ଗିଲାସେ ପାଣି

ମାଗିଲେ । ତଥାପି ଶୋଷ ମେଣ୍ଟିଲା ନାହିଁ । ଗ୍ଲାସ ପରେ ଗ୍ଲାସ ଆଠ ଗ୍ଲାସ ପାଣି ପିଇଗଲେ ବ୍ରହ୍ମଚାରୀ ଅକ୍ଷୟ । ଆଉ ଗିଲାସେ ମାଗିବାବେଳେ ଶ୍ରୀୟା ବ୍ରହ୍ମଚାରୀଙ୍କୁ ପ୍ରଶ୍ନ କଲା, 'ଏ କିଭଳି ଶୋଷ ।'

'ହଁ, ମୋତେ ଅନୁଭବ ହେଉଛି ଜନ୍ମଜନ୍ମର ଶୋଷ ଆଜି ମୋତେ ବିବ୍ରତ କରୁଛି । ଆଉ କେତେ ପାଣି ପିଇଲେ ମୋର ଏହି ଶୋଷ ମେଣ୍ଟିବ ମୁଁ ଜାଣେନା, ଦିଅ ମୋତେ ଆହୁରି ପାଣି ଦିଅ ମୋର ଶୋଷ ମେଣ୍ଟିବା ଯାଏଁ ମୋତେ ପାଣି ଦିଅ ।'

ଶ୍ରୀୟା ଗ୍ଲାସ ପରେ ଗ୍ଲାସ ପାଣି ଦେଇ ଚାଲିଥାଏ । ବ୍ରହ୍ମଚାରୀ ନିର୍ବିଘ୍ନରେ ପାଣି ପିଇ ଚାଲିଥାନ୍ତି ।

'ଆଉ ଆଉ ପାଣି ପିଅନ୍ତୁ ନାହିଁ ।'

'ମୋର ଶୋଷ ମେଣ୍ଟିନାହିଁ ।'

'ଆଉ ପାଣି ପିଇଲେ ପେଟ ଫାଟିବାର ସମ୍ଭାବନା ଅଛି । ଏଣୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଆଉ ପାଣି ପିଅନ୍ତୁ ନାହିଁ । ସୀମା ଭିତରେ ସବୁ ଠିକ୍, ଅତ୍ୟଧିକ ପାଣି ପିଇଲେ ବିସ୍ଫୋରଣର ଆଶଂକା ରହିଛି । ଏଣୁ ସୀମାଲଂଘନ ନକରିବା ଉଚିତ୍ ହେବ । ମୋ ହାତରୁ ପାଣି ପିଇ ଆପଣଙ୍କ ପେଟ ଫାଟିଲେ ମୁଁ ଅପରାଧୀ, ପାପିନୀ ହୋଇଯିବି ।'

'ଆପଣଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।'



*(କାହାଣୀ)*

# କାଚକାନ୍ଥ

ସବିତା ସେଦିନ କିଛି ବି ପ୍ରତିକ୍ରିୟା ଦେଖାଇ ନଥିଲା । ହଁ ସ୍ୱାମୀ ବଞ୍ଚିଥିଲାବେଳେ ଅବା ତାକୁ କି ସୁଖ ଦେଇଥିଲା ଯେ ସେ ଚାଲି ଯାଇଥିବା ଖବର ଶୁଣି ଭୋ ଭୋ ହୋଇ କାନ୍ଦିବ । ସବିତାକୁ ପଚାଶ ବର୍ଷ । ସେ ତା' ସ୍ୱାମୀର ଦ୍ୱିତୀୟ ସ୍ତ୍ରୀ । ସ୍ୱାମୀର ପ୍ରଥମ ସ୍ତ୍ରୀର ଦୁଇ ପୁଅ ଆଉ ଗୋଟିଏ ଝିଅକୁ ନିଜର ସଂସାର ବୋଲି ମଣୁଥିଲା । ସବିତା ସମସ୍ତଙ୍କ ଉପସ୍ଥିତିରେ ମଧ୍ୟ ଏକୁଟିଆ ପ୍ରାଣୀ । ତାର ଆବଶ୍ୟକତା କେହି ବି ଅନୁଭବ କରି ନଥିଲେ । କେତେବେଳେ କେମିତି ଭାଇ ଭାଉଜ ସବିତା ବିଷୟରେ ଖବର ନିଅନ୍ତି । ସବିତାର ଶାଶୁ ଘର ଗାଁ ମୁଖିଆଙ୍କର ଝିଅ ଭୁବନେଶ୍ୱରରେ ରହେ । ମୁଖିଆଙ୍କ ଝିଅ ଘରେ କାମ କରିବାକୁ ଏବଂ ମୁଖିଆଙ୍କ ନାତୁଣୀର ଯତ୍ନ ନେବା ପାଇଁ ଜଣେ ସ୍ତ୍ରୀ ଲୋକର ଆବଶ୍ୟକ ବେଳେ ସବିତାକୁ ଖୋଜା ଯାଇଥିଲା । ସବିତା ଏହି କାମରେ ସନ୍ତୁଷ୍ଟ ଏବଂ ଖୁସୀ ଥିଲା । କିନ୍ତୁ ଗାଁ ମାଟି ଛାଡି ସେ କେବେବି ବାହାରକୁ ଯାଇନି । ଗାଁଠାରୁ ଭୁବନେଶ୍ୱରର ଦୂରତା ପାଞ୍ଚଶହ କିଲୋମିଟର । ସବିତା ଜାତିରେ ବ୍ରାହ୍ମଣ । ସ୍ୱାମୀ ବଞ୍ଚିଥିବା ସମୟରେ ଯଦିଓ ତା' କଥା ବୁଝାସୁଝା କରୁନଥିଲା ତେବେ ବି ସ୍ୱାମୀ ସହ ସଂପର୍କକୁ ଛିନ୍ନ କରିବାକୁ ଚାହୁଁ ନଥିଲା ସବିତା । ଏଣୁ ସ୍ୱାମୀକୁ କିଛି ନ କହି ସେ ଭାଇ ଭାଉଜଙ୍କ ପରାମର୍ଶରେ ଭୁବନେଶ୍ୱର ଚାଲି ଆସିଥିଲା ।

ମୁଖିଆଙ୍କ ଝିଅ ସୁନନ୍ଦାଦେବୀ ସବିତାର ସବୁ ଭଲମନ୍ଦ ବୁଝୁଥିଲେ । ମିଥ୍ୟା ଗାଉଁଲି ସଂସ୍କାରରୁ ତାକୁ ମୁକୁଳି ଆସିବାକୁ ବାରମ୍ବାର ତାଗିଦ କରୁଥିଲେ । ସୁନନ୍ଦା

ଦେବୀ ତାଙ୍କ ସ୍ୱାମୀ ଏବଂ କୁନିଝିଅ ପ୍ରଥା ସହ ସବିତାର ଦିନ ବେଶ ହସଖୁସୀରେ ବିତି ଚାଲିଥିଲା ।

ପାଞ୍ଚ ବର୍ଷ ପରେ ଖବର ଆସିଲା ସବିତାର ସ୍ୱାମୀ ଖୁବ୍ ଅସୁସ୍ଥ । ସବିତା କିନ୍ତୁ ମନ କଲାନି ସ୍ୱାମୀ ପାଖକୁ ଯିବାକୁ। ମନରେ ଅବଶ୍ୟ କେଉଁ କୋଣରେ ଟିକିଏ ଇଚ୍ଛା ସ୍ୱାମୀର ସେବା ସୁଶ୍ରୁସା କଲେ କାଳେ ଭଲ ହୋଇଯିବ । କିନ୍ତୁ ମନରେ ଭୟ ଓ ଆଶଙ୍କା । ସେ ସ୍ୱାମୀର ବିନା ଅନୁମତିରେ ଭୁବନେଶ୍ୱର ଚାଲିଆସିଛି । ସ୍ୱାମୀ ତା' ଉପରେ ବିରକ୍ତ ହେବ। ପେଟର ଭୋକକୁ ସହି ନପାରି ସେଦିନ ସବିତା ଗାଁ ମାଟିକୁ ଛାଡିବାକୁ ବାଧ୍ୟ ହୋଇଥିଲା । ଆଉ ଗୋଟିଏ ଛାତ ତଳେ ନିଜ ମୁଣ୍ଡ ଗୁଞ୍ଜି ପେଟର ଜ୍ୱାଳାକୁ ଶାନ୍ତ କରିବା ଥିଲା ତା'ର ଉଦ୍ଦେଶ୍ୟ । ଏବଂ ସେହି ଛାତ ତଳେ ସେ ଅନେକ ସମୟରେ ନିଜର ଅତୀତକୁ ମନେ ପକାଇଛି, ଆଉ ଝୁରିଛି ମଧ୍ୟ । କିନ୍ତୁ ଅନନ୍ୟୋପାୟ ସବିତାଠାରୁ ସୁନ୍ଦର ସଂସାରର ସ୍ୱପ୍ନ ଖୁବ୍ ଦୂରେଇ ସାରିଥିଲା କେଉଁ ଦିନରୁ।

ମାତ୍ର ଷୋହଳ ବର୍ଷ ବୟସରେ ସ୍ୱାମୀ ବୋଲି ଯାହାର ହାତ ଧରିଥିଲା ତା' ପାଖରେ ନିଜର ସର୍ବସ୍ୱ ହରାଇ ସାରିବା ପରେ ବି ସେ ମାତୃତ୍ୱ ଲାଭ କରିପାରିନଥିଲା । ଏହି କାରଣ ଜାଣିବା ବେଳକୁ ସବିତା ନିରୁପାୟ । ସ୍ୱାମୀ ଏବଂ ପ୍ରଥମ ସ୍ତ୍ରୀର ଅନ୍ୟ ତିନି ସନ୍ତାନଙ୍କର କେବଳ ଲାଳନ ପାଳନ ପାଇଁ ହିଁ ସବିତାର ବିବାହ ହୋଇଥିଲା । ଦ୍ୱିତୀୟ ବିବାହବେଳକୁ ସବିତାର ସ୍ୱାମୀ ଆଉ କୌଣସି ସନ୍ତାନସନ୍ତତି ଜନ୍ମ ନକରିବାର ଡାକ୍ତରୀ ବ୍ୟବସ୍ଥା କରିସାରିଥିଲା । ବିବାହ ଆଗରୁ ଜାଣି ନଥିବା ଏହି କଥାକୁ ବିବାହ ପରେ ସବିତା ଜାଣିଲାବେଳକୁ ନେଡିଗୋଡ କହୁଣୀକୁ ବୋହିସାରିଲାଣି। ହିନ୍ଦୁ ନାରୀ ଥରେ ମଥାରେ ସିନ୍ଦୁର ପିନ୍ଧି ସାରିବା ପରେ ସ୍ୱାମୀ ହିଁ ତାର ଇହ କାଳ ପରକାଳର ଦେବତା ବୋଲି ମାନିଥାଏ । ଅତି ସହଜରେ ସବୁ ଦୁଃଖକୁ ଗ୍ରହଣ କରି ସେହି ସ୍ୱୀକୃତିରେ ସେ କେତେ ଆନନ୍ଦ ପାଏ ତା'କୁ ହିସାବ କରିବାର ଅବକାଶ ହିଁ ନଥାଏ । ଏହି ସମୟ ଭିତରେ ସବିତା ଅନେକ ଥର ଭାବିଛି ସ୍ୱାମୀକୁ ଯାଇ ଥରେ ଦେଖି ଆସିବ। ଖବର ପାଇଛି ତା' ସ୍ୱାମୀର ଅସୁସ୍ଥତା ବିଷୟରେ। ହିନ୍ଦୁ ନାରୀର ମର୍ଯ୍ୟାଦା ରଖିବାକୁ ଯାଇ ସ୍ୱାମୀର ସୁସ୍ଥତାକୁ ନେଇ କେତେ ମନ୍ଦିରରେ ଦ୍ୱୀପ ଜାଳିଛି କେତେ ମାନସିକ ରଖିଛି ତା'ର ହିସାବ ନାହିଁ। ଏଥର କିନ୍ତୁ ଦଇବ ସାହା ହେଲେନି । ବୁଢ଼ାଟା'ର ଦେହ କ'ଣ ଏମିତି ଖରାପ ହେଲା କେଜାଣି ସବୁ କିଛିକୁ ପଛ କରି ଆର ପାରିକି ଚାଲିଗଲା । ବୁଢ଼ାର ମରିବା ଖବର ସବିତାର ଭାଇ ସୁନନ୍ଦା ଦେବୀକୁ ଜଣାଇ ଦେଲେ ଏବଂ ବ୍ୟସ୍ତ ନହୋଇ ସୁଯୋଗ ଦେଖି ଏହି ଦୁଃସମ୍ବାଦକୁ ସବିତାକୁ ଜଣାଇ ଦେବା

ପାଇଁ ଅନୁରୋଧ କରେ । ବ୍ୟସ୍ତତା ମଧ୍ୟରେ ଏତେ ଲମ୍ବା ଯାତ୍ରା ନକରି ସୁବିଧା ଦେଖି ଟିକେ ଗାଆଁ ଆଡୁ ବୁଲି ଗଲେ ସବିତା ପାଇଁ ଭଲ ହେବ ବୋଲି ମଧ୍ୟ କହନ୍ତି ।

ସେତେବେଳକୁ ସୁନନ୍ଦାଦେବୀଙ୍କ ସ୍ୱାମୀ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ। ଛୋଟଝିଅ ପ୍ରଥାକୁ ଅସୁସ୍ଥ ସ୍ୱାମୀ ପାଖରେ ଛାଡି ସବିତାକୁ ନେଇ ଗାଆଁକୁ ଯିବା ଠିକ୍ ମନେ କଲେନାହିଁ ସୁନନ୍ଦାଦେବୀ । ସବିତା ସ୍ୱାମୀର ମୃତ୍ୟୁରେ ଖୁବ୍ ବିବ୍ରତ ଥିଲେ ସୁନନ୍ଦାଦେବୀ । ସ୍ୱାମୀଙ୍କର ସୁସ୍ଥ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଉଚିତ୍ ମନେ କଲେ ସେ। ଏହା ଭିତରେ ଚାରି ପାଞ୍ଚ ଦିନ କଟିଗଲାଣି। ସୁଯୋଗ ଦେଖି ସୁନନ୍ଦାଦେବୀ ସବିତାକୁ ତା'ସ୍ୱାମୀର ମୃତ୍ୟୁ ଖବର ଦେଇସାରିଥାନ୍ତି। ସୁନନ୍ଦାଦେବୀ ଏବଂ ତାଙ୍କ ସ୍ୱାମୀ କିଶୋରଚନ୍ଦ୍ର ଖୁବ୍ ବିଚଳିତ ଥିଲେ । ଯଦି ସବିତା କାନ୍ଦା କଟା କରେ ସ୍ୱାମୀର ମୃତ୍ୟୁ ଖବର ଶୁଣି କିମ୍ବା ତା'ର କିଛି ଅଘଟଣ ଘଟେ ସେମାନେ କରିବେ କ'ଣ ? କିନ୍ତୁ ସେଭଳି କିଛି ବି ଘଟି ନଥିଲା ସେଦିନ । ପଡିଶା ଘରର ବାଲ୍‌ଟି ଚୋରି ହୋଇଯାଇଥିବା ଭଳି ଖବରଟି ବେଶ କିଛି ସମୟ ପରେ ନିସ୍ତବ୍ଧତା ମଧ୍ୟରେ ହଜିଯାଇଥିଲା। ସବିତା ମଧ୍ୟ ସ୍ୱାମୀର ଦଶାହ କାର୍ଯ୍ୟକୁ ଯିବା ପାଇଁ ବିଶେଷ ଆଗ୍ରହ ଦେଖାଇ ନଥିଲା । କହିଦେଲା ଏଠି ଚୁଡି ଭାଙ୍ଗି ଦେଇ ସିନ୍ଦୁର ପୋଛି ଦେବ। କିନ୍ତୁ ସୁନନ୍ଦାଦେବୀ ସେପରି କିଛି ହେବାକୁ ଦେଇ ନଥିଲେ। ସେହିଦିନ ରାତି ବସ୍‌ରେ ସବିତା ଏବଂ ଝିଅ ପ୍ରଥାକୁ ନେଇ ସୁନନ୍ଦାଦେବୀ ବାହାରି ପଡିଲେ ସବିତାର ଗାଆଁ ଅଭିମୁଖେ । ସବିତା ମନରେ ଭୟ ଏବଂ ଆଶଙ୍କା; ତା' ସହିତ ମନ ଭିତରେ କ୍ଷୋଭ ଯେ ସ୍ୱାମୀକୁ ଶେଷ ବେଳକୁ ଦେଖିପାରିଲା ନାହିଁ । ଗାଆଁରେ ପହଞ୍ଚିଲେ ତା' ସ୍ୱାମୀର ପ୍ରଥମ ସ୍ତ୍ରୀର ପିଲାମାନଙ୍କର ବ୍ୟବହାର ତା'ପ୍ରତି କିପରି ରହିବ ସେହି ଭାବନା ମଧ୍ୟରେ ସେ ମନେ ମନେ ବିବ୍ରତ ହେଉଥିଲା । ପିଲାମାନେ ସମସ୍ତେ ବିବାହିତ ଏବଂ ନିଜ ନିଜ ସଂସାରକୁ ନେଇ ବ୍ୟସ୍ତ ।

ସବିତା, ସ୍ୱାମୀର ମୃତ୍ୟୁ ଖବର ଶୁଣି ପାଞ୍ଚ ଶହ କିଲୋମିଟର ଯାତ୍ରା ଆରମ୍ଭ କରିଦେଇଛି ସତ କିନ୍ତୁ ସ୍ୱାମୀ ତା'ର ମଶାଣିରେ ପାଉଁଶ ପାଲଟି ଶୀତଳ ହୋଇସାରିଛି। ସବିତା ସ୍ୱାମୀ ମୃତ୍ୟୁର ପଞ୍ଚମ ଦିନର ସକାଳ ସବିତା ପାଇଁ ପାଲଟିଥିଲା ଅତି ନିଷ୍ଠୁର ଏବଂ କ୍ରୁର। ସ୍ୱାମୀର ମୃତ୍ୟୁରେ ତାକୁ ଶୁଦ୍ଧି ହେବାକୁ ବାସନ୍ଦ କରାଗଲା । ଯେଉଁମାନଙ୍କୁ ନିଜ ସନ୍ତାନ ଭଳି ଲାଳନ ପାଳନ କରୁଥିଲା ଶେଷରେ ସେମାନେ ତାକୁ ଗାଁକୁ ପ୍ରବେଶ କରିବାକୁ ମନାକଲେ । ସବିତା ଗାଁ ମାଟିକୁ ପ୍ରବେଶ କରିବା ପୂର୍ବରୁ ତା' ପାଖରେ ଖବର ପହଞ୍ଚାଇ ଦିଆଗଲା ସେ ଯେମିତି ସେଠାକୁ ନଯାଏ । ଗାଁ ମୁଖିଆଙ୍କଠାରୁ ଏ ଖବର ପାଇବା ପରେ ସବିତା ଖୁବ୍ ଅସହାୟ ବୋଧ କରିଥିଲା । କହିବାକୁ ତା'ପାଖରେ ସତେ ଅବା ଆଉ ଶବ୍ଦ ନଥିଲା କେବଳ ଦୁଇ ଧାର ଲୁହ ତା'ର ଅବସ୍ଥାକୁ ସାବ୍ୟସ୍ତ

କରୁଥାନ୍ତି । ତା'ର ଦୋଷ ଥିଲା ଦ୍ୱିତୀୟ ସ୍ତ୍ରୀ ହେବା । ଛୋଟ ଛୋଟ ତିନି ତିନିଟା ପିଲାଙ୍କୁ ନିଜ ମାଆଠାରୁ ଅଧିକ ସ୍ନେହ ମମତା ଦେଇ କୋଳେଇ କାଖେଇ ମଣିଷ କରିବାର। ମଣିଷ ପଣିଆର ଫଳ ତାକୁ କେବଳ ପ୍ରତାରଣାରେ ମିଳୁଥିଲା । ସ୍ୱାମୀର ଅକର୍ମଣ୍ୟତାକୁ ସମାଜ ସାମ୍ନାରେ ଲୁଚାଇବା ସହ ପରିବାରର ସଦସ୍ୟମାନଙ୍କର ଭୋକିଲା ପେଟକୁ ଦାନା ଦେବାକୁ ନିଜ ଦେହର ଅଳଙ୍କାରକୁ ବିକ୍ରୀ କରିବାକୁ କେବେ ବି କାର୍ପଣ୍ୟତା କରିନଥିଲା ସେ। ଯେଉଁମାନଙ୍କ ପାଇଁ ତାର ଏହି ତ୍ୟାଗ ଥିଲା ସେମାନେ ମୁହଁ ମୋଡିଦେଇ ତାକୁ କେବଳ ନିଃସଙ୍ଗ ତ କରିଦେଲେନି ଲକ୍ଷ୍ମଣ ରେଖାଟିଏ ଟାଣି ଦେଲେ ନିଜ ଗାଆଁକୁ ପ୍ରବେଶ କରିବାକୁ ନେଇ।

ସବିତା ପାଇଁ ତା' ସ୍ୱାମୀ ଘରର ଦ୍ୱାର ବନ୍ଦ ହେବା ପରେ ଭାଇ ଭାଉଜଙ୍କୁ କୁହାଯାଇଥିଲା ସବିତାକୁ ଶୁଦ୍ଧି କରାଇ ଦେବା ପାଇଁ । ସେଠୁ ସେ ଶୁଦ୍ଧି ହେବା ପରେ ସୁନନ୍ଦାଦେବୀ ତାକୁ ପୁଣି ନେଇଯିବେ ବୋଲି କହନ୍ତି । କିନ୍ତୁ ନା ସବିତା ପାଇଁ ତାର ଭାଇର ଦ୍ୱାର ମଧ୍ୟ ବନ୍ଦ ହୋଇଯାଇଥିଲା ସେତେବେଳକୁ । କାରଣ ସେ ଆଉ ସଧବା ନଥିଲା ବିଧବାର ପରିଚୟ ତାକୁ ସମାଜ ସାମ୍ନାରେ ଯେପରି ଅଛୁଆଁ ଆଉ ଅଦରକାରୀ କରିସାରିଥିଲା । ସଧବା ବେଳେ ସ୍ୱାମୀର ଯନ୍ତ୍ରଣାଠାରୁ ବିଧବା ହେବା ପରେ ସମାଜର ଯନ୍ତ୍ରଣା ତା'ପାଇଁ ଥିଲା ଅସହ୍ୟ, ବିଚାରି ସବିତା ଯନ୍ତ୍ରଣାର ଅଭିଜ୍ଞତା ଭିତରେ ଜୀଇଁବା ବୋଧହୁଏ ଶିଖିସାରିଥିଲା ସେଥିପାଇଁ ଏତେ ଦୁର୍ଘଟଣା ପରେ ମଧ୍ୟ ବଞ୍ଚିବାର ଇଚ୍ଛା କୋଉଠିନା କୋଉଠି ତା' ଭିତରେ ବଞ୍ଚି ରହିଥିଲା ।

ସ୍ୱାମୀର ମୃତ୍ୟୁ ପରେ ଦଶ ଦିନ ପର୍ଯ୍ୟନ୍ତ ସ୍ତ୍ରୀର ମୁହଁ ନଚାହିଁବାର କଠୋର ନିୟମରେ ଆଜି ସଭିଏଁ ବନ୍ଧା । ଗାଁ ମୁଖିଆଙ୍କ ସ୍ତ୍ରୀ ମଧ୍ୟ ତାକୁ ସେଦିନ ଚାହିବେ ନାହିଁ ବୋଲି ସ୍ପଷ୍ଟ କହିଦେଇଥିଲେ । ଭୁବନେଶ୍ୱରରୁ ଏତେ ବାଟ ଆସିବା ପରେ ସବିତାକୁ ଯେ ଏପରି ଅଧା ରାସ୍ତାରେ ଏପରି ଝୁଲି ରହିବାକୁ ହେବ ହୁଏତ ପୂର୍ବରାତିର ଦୁଃଖ ଭିତରେ ଏହି ଅସହିଷ୍ଣୁ, ନିର୍ମମ ଯନ୍ତ୍ରଣାକୁ ସେ ଚିନ୍ତା ବି କରିନଥିଲା । ସୁନନ୍ଦାଦେବୀ ଏବଂ ଗାଁ ମୁଖିଆ ବ୍ୟସ୍ତ ହୋଇପଡନ୍ତି କ'ଣ ଯେ କରିବେ ? ଭୁବନେଶ୍ୱର ଫେରିବାକୁ ହେଲେ ଆଉ ଦଶ ଘଣ୍ଟା ଅପେକ୍ଷା କରିବାକୁ ପଡିବ।

ସବିତାକୁ ବିନା ଶୁଦ୍ଧିରେ ଭୁବନେଶ୍ୱରକୁ ଫେରାଇ ଆଣିବା ମଧ୍ୟ ଅସମ୍ଭବ ଥିଲା । କାରଣ ସୁନନ୍ଦାଦେବୀଙ୍କ ସ୍ୱାମୀ ଏବଂ ଶାଶୁ ତାକୁ ବିନା ଶୁଦ୍ଧିରେ ପ୍ରବେଶ ନିଷେଧ କରିଥିଲେ । ହାଏରେ ସମାଜର ନିୟମ, କିଏ କରିଛି ଏ ନିୟମ ? ଆଜି ଏତେ ମାତ୍ରାରେ ନିଜକୁ ଆଧୁନିକ କହୁଥିବା ମଣିଷ ଭଲା ଏ କେଉଁ ମଣିଷ ପଣିଆ, ଏ କିପରି ଆଧୁନିକତା ?

ସବିତା ଧିରେ ଧିରେ ଭାଙ୍ଗି ପଡୁଥାଏ । ଗୋଟାଏ ଦୋଳାୟମାନ ରଜ୍ଜୁରେ ନିଜକୁ ମାପିବାର କ୍ଷମତା ବି ଆଉ ତା' ପାଖରେ ନଥିଲା । ତା' ମୁଣ୍ଡ ଉପରେ ଆକାଶ ଛିଣ୍ଡି ପଡୁଥାଏ ଏବଂ ପାଦ ତଳୁ ମାଟି ଖସି ଖସି ଯାଉଥିଲା ।

ସବୁ ଦ୍ୱାର ବନ୍ଦ ହେବା ପରେ ଶୁଦ୍ଧି ହେବା ପାଇଁ ସେହି ଦିନ କେଇଟା କଟାଇବାକୁ ସବିତା ପାଇଁ ଲଜ୍‌ର ଗୋଟିଏ କୋଠରୀର ବନ୍ଦୋବସ୍ତ କରାଗଲା । ବନ୍ଦ କୋଠରୀର ଚାରିକାନ୍ଥ ଭିତରେ ସବିତା ଅତି ନିର୍ମମ ଏବଂ ଦରଦୀ କଣ୍ଠରେ କହେ, 'ଏଇଠି ସିନ୍ଦୂର ଆଉ ଶଙ୍ଖା ସହ ସଂପର୍କ ତୁଟାଇ ଦେଇଯିବି ।' ସବିତା ପାଇଁ ଶଙ୍ଖା ଓ ସିନ୍ଦୂରର ମହତ୍ୱ କେବେ ବି ନଥିଲା ଆଉ ସେ ମହତ୍ୱ ନଥିବା ସଂପର୍କ ସହିତ ଅଯଥାରେ ଯୋଡ଼ିହେବାପାଇଁ ସେ ଚାହୁଁ ବି ନଥିଲା । ଏମିତି ତ ସମାଜ ଏବେ ସେହି ସଂପର୍କକୁ ଭାଙ୍ଗିବା ପାଇଁ ସହଯୋଗର ହାତ ବଢ଼ାଇଛି । ସମାଜର ଏ ଧରାବନ୍ଧା ନିୟମକୁ କିଏ ଯେ ତିଆରି କରିଛି ତା'ଭାବି ଦ୍ୱନ୍ଦ୍ୱରେ ଥିଲେ ସୁନନ୍ଦା ଦେବୀ । ଦିନେ ବି ସ୍ୱାମୀର କର୍ତ୍ତବ୍ୟ କରିନଥିବା ସ୍ୱାମୀ ପାଇଁ ଯେଉଁ ସମାଜ ସ୍ତ୍ରୀକୁ ଶଙ୍ଖା ସିନ୍ଦୂର ପିନ୍ଧିବା ପାଇଁ ବାଧ୍ୟ କରେ ଠିକ୍ ସେହି ସମାଜ ଆଜି କର୍ତ୍ତବ୍ୟ କରିବାକୁ ଚାହୁଁଥିବା ଗୋଟିଏ ସ୍ତ୍ରୀ ପାଖରୁ ଶଙ୍ଖା ସିନ୍ଦୂର ଛଡାଇ ନେବାରେ କାଣିଚାଏ କାର୍ପଣ୍ୟତା ଦେଖାଉ ନାହିଁ ।

ମାତ୍ର ଷୋହଳ ବର୍ଷ ବୟସରେ ଚଉତିରିଶ ବର୍ଷର ଜଣେ ପୁରୁଷ ସହିତ ଘର ସଂସାର କରିବା ପାଇଁ ସାମାଜିକ ରୀତି ନିତିରେ ଆବଦ୍ଧ କରିଦିଆଯାଇଥିଲା ସବିତାକୁ । କିନ୍ତୁ ସଂସାରର ସ୍ୱପ୍ନ ଦେଖୁଥିବା ମଣିଷଟା ଯେ ଦୁଃଖ ଛଡା ଆଉ କିଛି ସାଉଁଟି ପାରିଲାନି ଏହି ସ୍ୱାର୍ଥପର ସାମାଜିକ ଧରାବନ୍ଧା ନିୟମ ଭିତରୁ ।



*(ସୁଚରିତା, ପ୍ରଜାତନ୍ତ୍ର ସାପ୍ତାହିକୀ)*

# ଅନୁପମା

ବିବାହ ପରେ ଅନୁପମା ଶ୍ୱଶୁରାଳୟରେ ପନ୍ଦର ଦିନ ରହି ସେଠାରୁ ଦୁଇଶହ କିଲୋମିଟର ଦୂର ସହରରେ ରହୁଥିବା ଦାଦାଶ୍ୱଶୁରଙ୍କ ଘରେ ଦଶଦିନ ରହେ । ବିବାହର ପ୍ରଥମ କିଛି ଦିନ ସମସ୍ତଙ୍କ ପାଇଁ ଅଭୁଲା ଆଉ ରୋମାଞ୍ଚକର ଥିଲା। ଅଞ୍ଜନ ଆଉ ଅନୁପମାକୁ ପ୍ରେମର ନିବିଡତା ଏତେ ନିକଟତର କରିସାରିଥିଲା ଯେ ମିଳନର ପ୍ରଥମ ରାତିରୁ ଅଞ୍ଜନ ଅନୁପମାକୁ ଅନୁ ବୋଲି ସମ୍ବୋଧନ କରିସାରିଥିଲା। ତା'ପରେ ସ୍ୱାମୀ ଅଞ୍ଜନର କର୍ମସ୍ଥଳ ରାଜଧାନୀକୁ ସେମାନେ ଆସନ୍ତି ନିଜ ଭବିଷ୍ୟତ ଗଢ଼ିବାକୁ । ଜୀବନର ସବୁ ସ୍ୱପ୍ନ ଆନନ୍ଦକୁ ସାଉଁଟିବା ପାଇଁ ନୂଆ ଘର ନୂଆ ସ୍ଥାନ ଅନୁ ଓ ଅଞ୍ଜନ ମନରେ ଆନନ୍ଦର ଲହରୀ ଭରିଦିଏ । ବିବାହ ପାଇଁ ଦୀର୍ଘଦିନ ଧରି ଅଫିସରୁ ଛୁଟି ନେଇଥିବା ଅଞ୍ଜନ ପୁଣି  ଅଫିସ ଯିବା ଆରମ୍ଭ କରେ । ଅନୁର ପ୍ରେମରେ ଅଞ୍ଜନକୁ କିନ୍ତୁ ଅଫିସରେ ଆଦୌ ମନ ଲାଗୁନଥିଲା । ଏଣୁ ବାରମ୍ବାର ଅଫିସରୁ ବାହାନା କରି ସେ ଅନୁ ପାଖକୁ ଚାଲିଆସେ ।

ଘର ଭିତରେ କେବଳ ଅନୁ ଆଉ ଅଞ୍ଜନ । ଘଣ୍ଟା ଘଣ୍ଟା ଧରି  ସେମାନେ ଗପନ୍ତି, ମଜା କରନ୍ତି, ଏକରକମ ସ୍ୱର୍ଗ ସୁଖ ଅନୁଭବ କରନ୍ତି । ଅଞ୍ଜନ ଅନୁକୁ ପାଇ ଖୁବ୍ ଖୁସି ଏ କଥା ବାରମ୍ବାର ଅନୁ ପାଖରେ କହେ । ଅନୁ ମଧ୍ୟ ଉଲ୍ଲସିତ ହୁଏ ଏତେ ପ୍ରେମ କରୁଥିବା ସ୍ୱାମୀଟିଏ ପାଇ । ବିବାହ ପୂର୍ବ ଅପେକ୍ଷା ବିବାହ ପରେ ଅଞ୍ଜନ ଅଫିସରୁ ଶୀଘ୍ର ଘରକୁ ଆସିବାରେ ଲାଗିଲା । ଘରକୁ ଆସିବା ପୂର୍ବରୁ ଫୋନ କରି ଅନୁକୁ ପ୍ରସ୍ତୁତ ରହିବାକୁ କହି ଦେଇଥାଏ । ଅଞ୍ଜନ ଅଫିସରୁ ଫେରୁ ଫେରୁ ଦୁହେଁ ବୁଲିବାକୁ ଯାଆନ୍ତି, ହୋଟେଲରେ ଖାଆନ୍ତି, ଜୀବନରୁ ଭରପୂର ଆନନ୍ଦ ସାଉଁଟି ନିଅନ୍ତି । ବୈବାହିକ ଜୀବନ ସେମାନଙ୍କର ଖୁବ୍ ସୁଖମୟ ଥିବ ତାଙ୍କୁ ଦେଖିଲେ ଯେକେହି ସହଜରେ ଅନୁମାନ କରିନେବ।

ବିବାହ ପରେ ପରେ ହିଁ ଅନୁ ଗର୍ଭବତୀ ହୁଏ । ପେଟରେ ପିଲା ତିନିମାସର ଥିଲା ସେମାନଙ୍କୁ ଗାଁକୁ ଯିବାକୁ ଥିଲା, ଅନୁ ନଣନ୍ଦ ଝିଅର ଏକୋଶିଆ ଉଦ୍ଦେଶ୍ୟରେ । ରାଜଧାନୀରୁ ଅଞ୍ଜନର ଗାଁ ପାଞ୍ଚଶହ କିଲୋମିଟର । ଗର୍ଭବତୀ ମହିଳା ବସ୍‌ରେ ଯିବା ଠିକ୍ ହେବନି । ଏଣୁ ସ୍ଥିର ହେଲା ଟ୍ରେନରେ ଯିବାକୁ । ଟ୍ରେନରେ ଯିବାକୁ ହେଲେ ଦୁଇଟି ଟ୍ରେନ ବଦଳ କରି ଯିବାକୁ ପଡେ । ରାଜଧାନୀ ଏବଂ ଗାଁ ମଝିରେ ପଡ଼େ ଅଞ୍ଜନର ଦାଦାଘର । ଏଣୁ ଗାଁକୁ ଯିବା ପୂର୍ବରୁ ହେଉ କି ପରେ ଫେରିବା ବାଟରେ ହେଉ ଦାଦାଘର ହାଜିରା କୌଣସି ନା କୌଣସି ଗୋଟାଏ ବାହାନାରେ ପଡ଼ିଯାଏ । ଏଥର କିନ୍ତୁ ଗାଁକୁ ଯିବା ପୂର୍ବରୁ ଦାଦାଘରେ ପ୍ରଥମେ ହାଜିରାଟି ପଡ଼ିବାର ସୁଯୋଗ ସୃଷ୍ଟି ହୁଏ । ଦାଦାଘରେ ପହଞ୍ଚିବାର ପାଞ୍ଚଘଣ୍ଟା ପରେ ଅନ୍ୟ ଏକ ଟ୍ରେନ ଧରି ଯିବାର ଥାଏ ଗାଁକୁ । ରାଜଧାନୀରୁ ବାହାରି ଦାଦାଘରେ ପହଞ୍ଚିଲା ବେଳକୁ ଅନୁ ପେଟରେ ସାମାନ୍ୟ ବ୍ୟଥା ଅନୁଭବ କରେ ଏବଂ ତା'ର ରକ୍ତସ୍ରାବ ହୁଏ । ଅଞ୍ଜନ ଏକଥା ଜାଣିବା ପରେ ସଂଗେ ସଂଗେ ଡାକ୍ତରର ପରାମର୍ଶ ନିଅନ୍ତି । ଡାକ୍ତର ରୋକ୍‌ଠୋକ୍ ନିର୍ଦ୍ଦେଶ ଦିଅନ୍ତି ସାତଦିନ ବେଡ୍‌ରେଷ୍ଟ୍ ପାଇଁ ।

ଡାକ୍ତରଙ୍କର ଏପରି କଥା ଶୁଣୁ ଶୁଣୁ ଖୁଡ଼ୀଶାଶୁର ଭୃକୁଞ୍ଚନ ହୁଏ । ତା' ପରେ ସ୍ଥିର ହେଲା ଅନୁ; ଦାଦାଘରେ ସାତଦିନ ରହିଯିବ ଏବଂ ଅଞ୍ଜନ ଗାଁକୁ ଯାଇ ଭାଣିଜିର ଏକୋଶିଆ ଉତ୍ସବରେ ଯୋଗ ଦେଇ ପୁଣି ଫେରିଆସିବ, ଏହା ପରେ ଦୁହେଁ ଏକାଠି ଭୁବନେଶ୍ୱର ଫେରିଯିବେ । ଦାଦାଙ୍କର ଅଫିସ୍ ଯିବା ପରେ ତାଙ୍କ ଦୁଇଝିଅ କଲେଜ ବାହାରି ଯାଆନ୍ତି, ଅଞ୍ଜନ ପରବର୍ତ୍ତୀ ଟ୍ରେନରେ ଗାଁକୁ ଚାଲିଯାଏ । ଘରେ କେବଳ ଅନୁ ଆଉ ଖୁଡ଼ୀ । କେହି ନଥିବାର ସୁଯୋଗ ଦେଖି ଖୁଡୀ ଶାଶୁ ଅନୁ ଉଦ୍ଦେଶ୍ୟରେ କଟୁ ମନ୍ତବ୍ୟ ଦେଇ କହନ୍ତି, 'ହଁ ମ ! ଡାକ୍ତର ଏମିତି କେତେ କ'ଣ କଥା କହିବେ, ଏପରି ସମୟରେ ଆମେ କେତେ ପାଣି ଗରା ବୋହିଛୁ, କେତେ ଯାତ୍ରା କରିଛୁ । କପାଳରେ ଯାହା ଲେଖା ଥିବ ତାହା ହିଁ ଘଟିବ ତା'ବୋଲି କ'ଣ ବନ୍ଧୁବାନ୍ଧବ ଜ୍ଞାତି କୁଟୁମ୍ବଙ୍କ ଘରକୁ ଭଲ ମନ୍ଦରେ ଯିବା ବନ୍ଦ କରିଦେବ । ପିଲାଟା ପେଟରେ ବଞ୍ଚି ରହିଲେ ରହିବ ଆଉ ମରିବାର ଥିଲେ ମରିବ– ଦଇବ ଯାହାକୁ ନଚାହିଁଛି ଡାକ୍ତର ବଇଦ ବା ସେଠାରେ କ'ଣ କରିପାରିବେ ?'

କଥାଟା ଅନୁ ଦେହରେ ନିଆଁ ପରି ଲାଗିଲା । ସେ ତା' ଖୁଡ଼ୀଶାଶୁଙ୍କୁ କେତେ ସମ୍ମାନ କରେ । ଅଞ୍ଜନ କେତେ ଥର ଖୁଡିର ପ୍ରଶଂସା ତା' ଆଗରେ କରିଥିବ । ପିଲାଟି ଦିନରୁ ଅଞ୍ଜନ ଖୁଡୀ ପାଖରେ ରହି ମଣିଷ ହୋଇପାରିଛି । ଅଞ୍ଜନକୁ ମାଆର ସ୍ନେହ ଦେଇ ଖୁଡୀ ପାଳିପୋଷି ବଡ଼ କରିଛନ୍ତି ବୋଲି ଖୁଡୀଶାଶୁ ପାଖରେ ଅନୁ ସବୁବେଳେ କୃତକୃତ୍ୟ ହେଉଥିଲା । ସେହି ଖୁଡୀଶାଶୁଙ୍କର ଏପରି ଯନ୍ତ୍ରଣାଦାୟକ ମନ୍ତବ୍ୟକୁ ସହଜରେ

ହଜମ କରିପାରିଲା ନାହିଁ ଅନୁ । ନୀରବତା ହିଁ ଶ୍ରେଷ୍ଠ ଉତ୍ତର ଭାବି ସେ ନିରବ ରହିବାକୁ ଉଚିତ୍ ମନେକଲା । ଏମିତି ବି ବଡମାନଙ୍କର କଥାରେ ଜବାବ ନଦେବାର ସଂସ୍କାରରେ ସଂସ୍କାରିତ ହୋଇସାରିଥିଲା ଅନୁ ତା'ବାପଘରୁ। ନିଜ ଦୁଃଖକୁ ନିଜ ଛାତି ଭିତରେ ଚାପି ରଖି କିଛି କହି ନଥିଲା ସେ । ଭଗବାନଙ୍କୁ ଡାକୁଥିଲା ଛାତି ଭିତରର ଦୁଃଖ ଯେପରି ବାଡ ଡେଇଁ ପେଟ ଭିତରର ସନ୍ତାନ ପାଖରେ ପହଞ୍ଚି ନଯାଉ। ଡାକ୍ତର ତା'କୁ କେତେ ଥର କହିଥିବେ ମାଆର ଭାବନା ଏବଂ ଅନୁଭବ ହିଁ ତା' ଭିତରେ ବଢୁଥିବା ଛୁଆଟି ଭିତରେ ପ୍ରତିଫଳିତ ହୋଇଥାଏ । ଅଞ୍ଜନର ଆସିବା ବାଟକୁ ଅପେକ୍ଷା କରିବା ଛଡା ଅନ୍ୟ ରାସ୍ତା ନଥିଲା ତା'ପାଖରେ । ଏତେ ବେଳକୁ ଅନୁର ମନେ ପଡ଼ିଯାଏ ବିବାହ ପରେ ପ୍ରଥମ କରି ଖୁଡ଼ୀଶାଶୁ ଘରକୁ ଆସିଥିବାବେଳେ ଖୁଡ଼ୀ ବଡଯା, ଅର୍ଥାତ ଅନୁର ଶାଶୁ ଏବଂ ଅନୁର ନଣନ୍ଦକୁ ଆକ୍ଷେପ କରି ସେ କେତୋଟି କଥା ଅନୁ ଆଗରେ କହିଥିଲେ । ଏପରିକି ସେମାନଙ୍କୁ ଜଗି ରଖି ଚଳିବା ପାଇଁ ତାଗିଦ୍ କରିଥିଲେ । ସେ ସମୟରେ ଖୁଡୀଶାଶୁଙ୍କର ଏପରି ମନ୍ତବ୍ୟ ଅନୁକୁ ଆଶଙ୍କା ଭିତରକୁ ଟାଣି ନେଇଥିଲା । କିନ୍ତୁ ପରବର୍ତ୍ତୀ ସମୟମାନଙ୍କରେ ଶାଶୁ ନଣନ୍ଦଙ୍କର ସ୍ନେହ ଆଉ ସହଯୋଗରେ ସେ ଖୁଡୀ ଶାଶୁ କରିଥିବା ଆକ୍ଷେପର କାଣିଚାଏ ଛିଟା ଅନୁଭବ କରିବାର ସୁଯୋଗ ପାଇନଥିଲା । ନିଜ ପେଟରେ ଥିବା ସନ୍ତାନ ପ୍ରତି ଖୁଡୀଶାଶୁର ଏପରି ମନ୍ତବ୍ୟ ନିଶ୍ଚିତ ଭାବରେ ଅନୁର ଖୁଡୀଶାଶୁ ଉପରେ ଥିବା ସମ୍ମାନ ବୋଧକୁ ଦୋହଲାଇ ଦେଇଥିଲା।

ସାତଦିନ ପରେ ଅଞ୍ଜନ ଆଉ ଅନୁ ରାଜଧାନୀକୁ ଫେରିଆସନ୍ତି। ଅନୁର ପ୍ରାୟତଃ ନୀରବ ରହିବା ଦେଖି ଅଞ୍ଜନ କ'ଣ ହୋଇଛି ବାରମ୍ବାର ପ୍ରଶ୍ନ କରେ । ଯେତେ ଚେଷ୍ଟା କଲେ ବି ଅନୁ ଅଞ୍ଜନ ଆଗରେ ସେମାନଙ୍କର ସନ୍ତାନକୁ ନେଇ ଖୁଡ଼ୀର ଆକ୍ଷେପ କଥା ନକହି ଆଉ ରହିପାରିଲା ନାହିଁ । ଅଞ୍ଜନ କଥାଟି ଶୁଣି ଦୁଃଖ ପ୍ରକାଶ କଲା, 'ଖୁଡ଼ୀ ଏପରି କହିବାର ନଥିଲା । ପିଲାଟି ଜନ୍ମ ହେଇନାହିଁ ଅଥଚ ତା' ପ୍ରତି...। ହଁ ସେମାନଙ୍କର କେବେ ଆମ ପ୍ରତି ଭଲ ଭାବନା ଥିଲା ଯେ ଆଜି ରହିବ ?' ଅନୁ ଆଶ୍ଚର୍ଯ୍ୟ ହୋଇ ଅଞ୍ଜନ ମୁହଁକୁ ଚାହିଁ ରହିଥାଏ।

'ହଁ ଅନୁ, ପିଲାଟି ଦିନରୁ ଦାଦା ଖୁଡ଼ୀଙ୍କ ପାଖରେ ରହିଛି ସତ କିନ୍ତୁ ମୁଁ ତାଙ୍କ ପାଖରେ ସେତେ ଭଲରେ ନଥିଲି । ତୃତୀୟ ଶ୍ରେଣୀ ପରେ ନନା ମୋତେ ବଡ଼ ସହରର ସ୍କୁଲରେ ପାଠ ପଢ଼ାଇବେ ବୋଲି ଦାଦାଙ୍କ ପାଖକୁ ପଠାଇଦେଲେ । ତୃତୀୟ ଶ୍ରେଣୀରେ ସ୍କଲାରସିପ୍ ପାଇଥିଲି । ଗାଁ ସ୍କୁଲରେ ସବୁ ପିଲାଙ୍କଠାରୁ ମୁଁ ଭଲ ପାଠ ପଢୁଥିଲି ବୋଲି ଆମ ହେଡ୍‌ମାଷ୍ଟର ମୋ ହାତରେ ନଡ଼ିଆ ଧରାଇ ଗାଁ ବୁଲାଇଥିଲେ । ମୁଁ ଗାଁ ସ୍କୁଲରେ ନନା ବୋଉଙ୍କ ପାଖରେ ଥିଲେ ବରଂ ଭଲ ପାଠ ପଢ଼ିଥାନ୍ତି । ସେ ଯାହାହେଉ ଚତୁର୍ଥ ଶ୍ରେଣୀରୁ ମୋତେ ଦାଦାଖୁଡ଼ୀଙ୍କ ପାଖରେ ରହିବାକୁ ପଡିଲା ।

ମୋ ଜେଜେମା ବି ଆମ ସହିତ ରହୁଥିଲେ । ଦାଦା ତାଙ୍କ ଚାକିରି କରିବା ଜାଗାରେ ଏକୁଟିଆ ରହୁଥିଲେ ବୋଲି ସାଙ୍ଗରେ ଜେଜେମାଙ୍କୁ ବି ରଖିଥିଲେ । ଦାଦାଙ୍କର ବାହାଘର ହେବାପରେ ଖୁଡ଼ୀ ଆସିଲେ ଆଉ ମୁଁ ବି । ମୁଁ ସେତେବେଳେ ଛୋଟପିଲା । କାହା ମନରେ କ'ଣ ଭାବନା ତାହା ବୁଝିବାର ଶକ୍ତି ମୋର ହୋଇନଥିଲା। ଯେତେବେଳେ ଯିଏ ଯାହା କାମର ବରାଦ କରୁଥିଲେ ମୁଁ ହଁ ଭରି ଦେଇ ସରାଗରେ ତାଙ୍କ କାମ କରିଦେଉଥିଲି। ପାଖ ସଉଦା ଦୋକାନକୁ ଦିନକୁ ପାଞ୍ଚ ଥର ଯାଇ ସଉଦା ନେଇଆସୁଥିଲି । ଆମର ଆଠଟି ଗାଈ ଥିଲା । କଲୋନୀରେ ଅନେକ ଲୋକ ଆମ ଘରୁ କ୍ଷୀର ନେଉଥିଲେ । କିଛି ଲୋକ ଆସି ନିଜେ ମଧ୍ୟ କ୍ଷୀର ନେଇଯାଉଥିଲେ । ବଡ଼ ଅଫିସରମାନଙ୍କ ଘରେ କ୍ଷୀର ପହଞ୍ଚାଇବାକୁ ପଡୁଥିଲା । ସେମାନଙ୍କ ଘରେ କ୍ଷୀର ପହୁଞ୍ଚାଇବା ଦାୟିତ୍ୱ ଦାଦାମୋତେ ଦେଇଥିଲେ । ଧୀରେ ଧୀରେ ଗାଈମାନଙ୍କ ପ୍ରତି ମୋର ଆଦର ବଢ଼ିବାରେ ଲାଗିଲା । ମୁଁ ସେମାନଙ୍କର ଅଧିକରୁ ଅଧିକ ଯତ୍ନ ନେବାରେ ଲାଗିଲି । କ୍ରମଶଃ ପାଠପଢ଼ାକୁ ଅବହେଳା କଲି । ଗାଈ, ଘର କାମରେ ହାଲିଆ ହୋଇଯାଉଥିଲି । ସକାଳୁ ଏତେ ସବୁ କାମ ସାରି ସ୍କୁଲ ଦଶଟାରେ ଯାଏ, ଥକ୍କା ମାରି ସ୍କୁଲରେ ଶୋଇପଡ଼େ । ସାର୍ ଗାଳି କରନ୍ତି, କେତେଥର ମାଡ଼ ବି ଖାଇଛି । ପାଠ ଯାହା ଦିଆଯାଇଥାଏ କିଛି ନକରି ସ୍କୁଲକୁ ଯାଉଥିଲି ଏଣୁ ଅନେକ ଥର ସ୍କୁଲ ବାରଣ୍ଡାରେ ଗୋଟିଏ ଗୋଡ଼ରେ ଠିଆ ହୋଇ ଦଣ୍ଡ ପାଇଛି।' ଅଞ୍ଜନ ଏହା କହିବାବେଳେ ତା' କଣ୍ଠ ଗଳାରୁଦ୍ଧ ହେଇଯାଉଥାଏ । ଅତୀତର ସ୍ମୃତି ଆଜି ବି ମନ ତଳୁ ଶୁଖିନାହିଁ । ବାଷ୍ପାକୁଳ କଣ୍ଠରେ ଅଞ୍ଜନ ପୁଣି କହିଚାଲେ, 'ଆମ ସ୍କୁଲରୁ ପିକ୍‌ନିକ୍ ଯିବା ପାଇଁ ପିଲାଙ୍କଠାରୁ ଚାନ୍ଦା ସଂଗ୍ରହ ହୁଏ ମୋତେ ଦାଦା କେବେ ବି ସେସବୁ ଆନନ୍ଦରେ ସାମିଲ ହେବାକୁ ଦେଇନାହାନ୍ତି । ଘରେ ଗଣ୍ଡେ ଖାଇ ସ୍କୁଲକୁ ଯିବା ବ୍ୟତୀତ ହାତରେ କେବେ ବି କିଛି ପଇସା ଦିଅନ୍ତି ନାହିଁ । ପକେଟ ମନି ବୋଲି କେବେ ମୁଁ ତାଙ୍କୁ ଅଳି କରିନି କି ସେଥିପାଇଁ ମୋର ମନ ଦୁଃଖ ନଥିଲା କିନ୍ତୁ, ସ୍କୁଲ ତରଫରୁ ପିଲାମାନେ ଯାଉଥିବା ପିକ୍‌ନିକ୍‌କୁ ଯିବା ପାଇଁ ମୋର ଭାରି ଇଚ୍ଛା ହୁଏ । ମୁଁ ଦାଦାଙ୍କ ଘରେ ରହୁଥିବାରୁ ନନା ପ୍ରତିମାସରେ ଗାଆଁରୁ ଚାଉଳ ତଥା ଅନ୍ୟାନ୍ୟ ସାମଗ୍ରୀ ଦାଦାଙ୍କ ପାଖକୁ ପଠାଉଥିଲେ ।' ଏଥର ଏସବୁ କହି ଅଞ୍ଜନ ଖୁବ୍ ଭାବବିହ୍ୱଳ ହୋଇପଡ଼େ । ଆଖିରୁ ଲୁହ ଗଡ଼ିବାକୁ ଲାଗେ । ଅନୁ ଏସବୁ ଶୁଣି ସ୍ତବ୍ଧ ହୋଇଯାଉଥାଏ । ଛାତି ତଳେ ଦୀର୍ଘଦିନ ଧରି ଏତେ ଦୁଃଖକୁ ଚପାଇ ରଖିଥିବା ଅଞ୍ଜନ ଆଜି ଅନୁ ପାଖରେ ଖୁବ୍ ହାଲୁକା ମନେ କରୁଥାଏ । ଛାତି ଭିତରର ସଂଗୁପ୍ତ ଶବ୍ଦମାନଙ୍କୁ ମୁହଁରେ ପ୍ରକାଶ କରିଦେଇ ଥିବାରେ ସଫଳ ହୋଇଥିବାରୁ ଅଞ୍ଜନ ଆଶ୍ୱସ୍ତ ଅନୁଭବ କରୁଥିଲା । ଛାତି ଭିତରର କଥା ଓଠକୁ ନେଇ ଆସିଲେ ମଣିଷ ଟିକିଏ ଆଶ୍ୱସ୍ତ ହୋଇଯାଏ ଯାହାକି

ଅଞ୍ଜନ ସହିତ ସେହି ଦିନ ଘଟିଥିଲା । ଛାତି ଭିତରର ଯନ୍ତ୍ରଣା ମୁହଁର ଭେଣ୍ଟିଲେଟରରେ ଛାଣି ହୋଇ ବାହାରକୁ ବାହାରି ଆସୁଥିଲା। ଅଞ୍ଜନର ଏଭଳି ପ୍ରତିକ୍ରିୟାରେ ଅପ୍ରସ୍ତୁତ ହୋଇଯାଇଥିଲା ଅନୁ । ଅଞ୍ଜନ ଆଖିରୁ ଲୁହ ପୋଛୁ ପୋଛୁ ଅନୁ କହିଥିଲା, 'ଜୀବନରେ ତୁମ ପାଇଁ କ'ଣ କରିପାରିବି କି ନକରିପାରିବି ତାହା ମୁଁ ଜାଣି ନାହିଁ କିନ୍ତୁ ତୁମ ଲୁହ ଆଉ କୋହରେ ଭାଗ ବସିବା ପାଇଁ କେବେ ବି କୁଣ୍ଠିତ ହେବି ନାହିଁ।'

'ଜାଣ ଅନୁ, ସ୍କୁଲରେ ଆମର ଗଣେଶ ପୂଜା, ସରସ୍ୱତୀ ପୂଜା ବେଳେ ସବୁ ପିଲା ନୂଆ ଡ୍ରେସ ପିନ୍ଧନ୍ତି। ଦାଦାଙ୍କ ଘରେ ମୁଁ ରହୁଥିଲେ ମଧ୍ୟ ନନା ମୋ ପାଇଁ ଡ୍ରେସ ପଠାଉଥିଲେ । ବେଳେବେଳେ ପୂଜା ସମୟରେ ଆର୍ଥିକ ଚାପ ଥିଲେ ନନା ମୋ ପାଇଁ ନୂଆ ଡ୍ରେସ୍ ପଠାଇବାକୁ ସକ୍ଷମ ହୁଅନ୍ତି ନାହିଁ। ଦାଦା ଝିଅ ଭଉଣୀମାନଙ୍କର କିନ୍ତୁ ପ୍ରତି ପୂଜାରେ ନୂଆ ଡ୍ରେସ ହେଉଥିଲା। ଗୋଟିଏ ବର୍ଷ ନନା ମୋ ପାଇଁ ଡ୍ରେସ୍ ପଠାଇପାରିନଥିଲେ। ସେଇବର୍ଷ ପୂଜା ଦିନ ମୋ ଦାଦା ଝିଅ ଭଉଣୀ ଗଣେଷ ପୂଜାରୁ ଫେରି ନୂଆ ଡ୍ରେସ୍ ଖୋଲି ଶୋଇବାକୁ ଚାଲିଯାଇଥାଏ । ସାରା ଦିନ ମୋ ସାଙ୍ଗମାନଙ୍କର ନୂଆ ପୋଷାକ ଦେଖି ମୋ ମନ ଦୁଃଖ ଥିଲା, ସତ କିନ୍ତୁ ମୁଁ ଦାଦା କି ଖୁଡ଼ୀଙ୍କୁ ମୁହଁ ଖୋଲି କିଛି କହିପାରିନଥିଲି । ମୋ ମନର କଷ୍ଟକୁ ବୁଝିବା ପାଇଁ ଦାଦା ବି ସେଦିନ ଟିକେ ଚେଷ୍ଟା କଲେ ନାହିଁ । ଭଉଣୀର ନୂଆ ଫ୍ରକ ଥୁଆ ହୋଇଥିବାର ଦେଖି ନୂଆ ପିନ୍ଧିବାର ଇଚ୍ଛା ମୋତେ ପୁଣି ଆବୋରି ବସିଲା। ପୁଅପିଲା ହୋଇ ବି ମୋ ଭଉଣୀର ପୋଷାକ ପିନ୍ଧି ଦର୍ପଣ ସାମ୍ନାରେ ନିଜର ଭିନ୍ନ ଭିନ୍ନ ଭାବ ଭଙ୍ଗୀ ଦେଖି ଆନନ୍ଦିତ ହେଉଥିଲି। ଏହା ଭିତରେ ମୁଁ କେତେବେଳେ ଶୋଇପଡିଛି ମୋତେ ଜଣାନାହିଁ ଅନ୍ୟମାନଙ୍କର ଟାହିଟାପରାରେ ମୋ ନିଦ ଭାଙ୍ଗିଲା । ଦାଦା ବି ସେମାନଙ୍କ ସହିତ ଯୋଗ ଦେଇ ଆଉ ଦୁଇ ପାଦ ଆଗକୁ ବଢ଼ିଗଲେ। ମୋର ମନ କଥା ବୁଝିବାକୁ ଚେଷ୍ଟା ନକରି ଓଲଟି ଫ୍ରକ୍‌ଟିକୁ ଖୋଲି ଦେବାକୁ ତାଗିଦ୍ କଲେ ଏବଂ ମୋ ଉପରେ ବିରକ୍ତ ପ୍ରକାଶ କରିଥିଲେ । ସେହି ଦିନଠାରୁ ମୁଁ ମୁହଁ ଖୋଲି ଦାଦାଙ୍କୁ କିଛି ମାଗିନି କି ସେ ବି କେବେ ମୋତେ ମନଖୋଲି କିଛି ଦେବାପାଇଁ ଉଚିତ୍ ମନେ କରିନାହାନ୍ତି। ସେ ଘଟଣା ପରେ ବୁଝି ଯାଇଥିଲି ବାପା ମାଆଙ୍କର ସ୍ୱପ୍ନ ପୂରଣ କରିବା ପାଇଁ ମୋତେ ବାଲ୍ୟ ବୟସର ସମସ୍ତ ଚପଳତା ଇଚ୍ଛାକୁ ବଳି ଦେବାକୁ ପଡିବ, ଆଉ ମୁଁ ତାହା କରିଥିଲି ମଧ୍ୟ।

କେବଳ ସେତିକିରେ କଥା ସରି ନଥିଲା; ଖୁଡ଼ୀଙ୍କର ବାପ ଘରୁ ଯେତେବେଳେ ଯିଏ ଘରକୁ ଆସନ୍ତି ସେମାନେ ଭଉଣୀମାନଙ୍କ ପାଇଁ ନୂଆ ଡ୍ରେସ ଆଣନ୍ତି। କିନ୍ତୁ କେହି କେବେ ମୋ କଥା ଚିନ୍ତା କରିନାହାନ୍ତି । ସମସ୍ତ ପିଲାମାନଙ୍କ ମଧ୍ୟରେ ମୋତେ ଅବହେଳିତ ହେବା ପରି ମନେହୁଏ । ସେମାନଙ୍କର ଏପରି ସବୁ କାର୍ଯ୍ୟକଳାପ ଯେ

ମୋତେ କେତେ କଷ୍ଟ ଦେଉଥିବ ସେମାନେ କେବେ ବି ଚିନ୍ତା କରନ୍ତି ନାହିଁ । ମୋ ସାମ୍ନାରେ ମୋ ଭଉଣୀମାନେ ମାମୁଁ ଘରର ନୂଆ ଡ୍ରେସ୍ ପିନ୍ଧି ଆନନ୍ଦିତ ହୁଅନ୍ତି । ଏହା ଭିତରେ ମୁଁ ଅଷ୍ଟମ ଶ୍ରେଣୀ ପାଶ୍ କରିସାରିଥାଏ । ସଂପର୍କ ଆଉ ଦୁନିଆକୁ ଚିହ୍ନିବାର ସାମର୍ଥ୍ୟ ମୋ ଭିତରେ କିଛିଟା ଆସିସାରିଥିଲା । ମୁଁ ଯାହା ଶୁଣିଛି ଜେଜେବାପା ଆରପାରିକୁ ଚାଲିଗଲା ପରେ ନନା ହିଁ ସବୁ ଭାଇଭଉଣୀଙ୍କୁ ମଣିଷ କରାଇବାର ଦାୟିତ୍ୱ ସଠିକ୍ ରୂପେ ତୁଲାଇଥିଲେ । ପାଠପଢ଼ାଠାରୁ ଆରମ୍ଭ କରି ବିବାହ ବ୍ରତ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସୂଚାରୁରୂପେ ସଂପାଦନ କରିଥିଲେ । ଭାଇ ଭଉଣୀମାନଙ୍କର ଭବିଷ୍ୟତକୁ ଗୁରୁତ୍ୱ ଦେବା ପାଇଁ ଅଧିକ ଦରମା ପାଉଥିବା ଚାକିରୀକୁ ଛାଡି ଶିକ୍ଷକତାକୁ ଏଇଥିପାଇଁ ଆଦରି ନେଇଥିଲେ ଯେ ଘରେ ରହି ନିଜର ଭାଇ ଭଉଣୀଙ୍କର ଉପଯୁକ୍ତ ଦାୟିତ୍ୱ ନେଇପାରିବେ । ଶିକ୍ଷକତା ଚାକିରୀର ସୀମିତ ଦରମା ତା' ଉପରେ ପୁଣି ସବୁ ଭାଇଭଉଣୀଙ୍କର ଗୁରୁ ଦାୟିତ୍ୱ ତୁଲାଇବାକୁ ଯାଇ ସେ ଜଜମାନର କାମ ମଧ୍ୟ କରିବାକୁ ପଛାଉନଥିଲେ । ଭାଇ ଭଉଣୀମାନଙ୍କ ପ୍ରତି ପୂରା ଜୀବନକୁ ଉତ୍ସର୍ଗ କରିଦେଇଥିବା ମୋ ନନାଙ୍କ ଭଳି ଜଣେ ମଣିଷଙ୍କୁ ମୋ ଦାଦା ଖୁଡି ସବୁବେଳେ ଅପମାନ ଦେଲାଭଳି କଥା କୁହନ୍ତି । ଏହିପରି ଏକ ଅପମାନ ସୂଚକ ମନ୍ତବ୍ୟ ମୋତେ ଥରେ ଖୁବ୍ କଷ୍ଟ ଦେଇଥିଲା ଯେ ମୁଁ ଦାଦା ଖୁଡୀଙ୍କୁ ନଜଣାଇ ନନାବୋଉଙ୍କ ପାଖକୁ ଚାଲି ଯାଇଥିଲି । କିନ୍ତୁ ନନାବୋଉ ଓଲଟି ସବୁ କଥା ଭୁଲି ଯାଇ ପୁଣି ଦାଦାଖୁଡିଙ୍କ ପାଖକୁ ଯିବା ପାଇଁ କେତେ ରାଣ ନିୟମ ପକାଇଲେ । ସେମାନଙ୍କ କଥାକୁ ଆଉ କାଟି ନପାରି ମୁଁ ପୁଣି ଦାଦା ଖୁଡିଙ୍କ ଘରକୁ ଅନିଚ୍ଛା ସତ୍ତ୍ୱେ ଫେରିଆସିଥିଲି ।'

ଏହା କହୁ କହୁ ଅଞ୍ଜନର କୋହ ଛାତିର ପାଚେରୀ ଭାଙ୍ଗି ବାହାରକୁ ବାହାରି ଆସିବା ପାଇଁ ଉଦ୍ୟତ ହେଉଥିଲେ ଯେପରି । ଅନୁ ଆଉ ସମ୍ଭାଳି ପାରିଲାନାହିଁ, 'ଥାଉ ଅଞ୍ଜନ, ସେ କଥାମାନଙ୍କୁ ଆଉ ମନେପକାଇ ନିଜକୁ ନିଜେ କଷ୍ଟ ଦିଅନି । ଯେଉଁ କଥାଗୁଡିକ ମନକୁ ଆଘାତ ଦିଏ ତାକୁ ମନେ ପକାଇବା କ'ଣ ନିହାତି ଦରକାର ? ଓଲଟି ସେସବୁ ଭୁଲି ତୁମକୁ ପ୍ରେରଣା ଦେଉଥିବା କଥା ସବୁ ମନ ଭିତରକୁ ଆଣିବାକୁ ଚେଷ୍ଟା କର ଦେଖିବ ମନର ଆଘାତ ଆପଣା ଛାଏଁ ଉପଶମ ହୋଇଯିବ । ଏମିତି ତ ଜୀବନର ଏତେ ଅଭିଜ୍ଞତା ତମେ ସାଉଁଟି ସାରିଲଣି ତମକୁ ଏସବୁ ବୁଝାଇବା ଓଲଟି ମୋ ପାଇଁ ବୋକାମି । ତୁମେ କହୁଥିଲନା ତୁମେ ତୁମର ପାଠପଢ଼ା ଜାରି ରଖିବ ବୋଲି.. ? ସେଥିରେ ମନ ଦିଅ ଭବିଷ୍ୟତରେ ତାହା କାମରେ ଆସିପାରେ । କିନ୍ତୁ ଏସବୁ କଥାକୁ ବାରମ୍ବାର ମନେ ପକାଇ ବର୍ତ୍ତମାନ ସହିତ ଭବିଷ୍ୟତକୁ ଆଉ ନଷ୍ଟ କରନାହିଁ । ମୋର ସହଯୋଗ ସାରା ଜୀବନ ତମ ସହିତ ରହିବ ।' ଅଞ୍ଜନର ଛାତିରେ ମଥା ରଖି ଅନୁ ଏହା କହୁଥିବାବେଳେ ଅଜାଣତରେ କେତେ ଟୋପା ଲୁହ ତା' ଆଖିରୁ ଝରି ଗଲା ।

'ଏବେ ଆଉ କ'ଣ ସମ୍ଭବ ? ବାହାସାହା ହେଲେଣି, କାଲିକି ଆମ ପିଲା ଦୁନିଆ ଦେଖିବ, ତା' ଉପରେ ପୁଣି ପରିବାରର ଦାୟିତ୍ୱ..।' ଅଞ୍ଜନ ଏତେ ଦିନର ପାଠପଢ଼ାର ସ୍ୱପ୍ନକୁ ନିଜର ମନ ଭିତରେ ଚାପି ଦେବାକୁ ଚେଷ୍ଟା କରୁଥିଲା କାରଣ ଦାୟିତ୍ୱରେ ଅବହେଳାର ଆଶଙ୍କା ତାକୁ ଭୟଭୀତ କରୁଥିଲା ବାରମ୍ବାର।

ଆଖିରୁ ଲୁହ ପୋଛୁ ପୋଛୁ ଅନୁ ଉତ୍ତର ଦେଲା, 'ନା, ସେସବୁ କିଛି ଚିନ୍ତା କରନାହିଁ, ସେ ସବୁ ବୁଝିବାକୁ ମୁଁ ଅଛି । ଆବଶ୍ୟକ ହେଲେ ମୁଁ ଚାକିରି କରିବି, ପରିବାରର ଦାୟିତ୍ୱ ନେବି। ତୁମେ ପଢ଼ାପଢ଼ାରେ ମନ ଦିଅ।' ଅଞ୍ଜନ ତା' ପାଠପଢ଼ାର ସ୍ୱପ୍ନକୁ ପୂରଣ କରୁ ତାହା ବାସ୍ତବରେ ଚାହୁଁଥିଲା ଅନୁପମା। ସ୍ତ୍ରୀ ହୋଇ ସ୍ୱାମୀର ସ୍ୱପ୍ନ ପୂରଣ କରିବାରେ ଯଦି ସେ ସହଯୋଗ କରିନପାରିଲା ସେପରି ସ୍ତ୍ରୀ ହୋଇ ଲାଭ କ'ଣ ? ଯେଉଁ ସ୍ୱାମୀ ଜୀବନର ଦୁଃଖ ସବୁକୁ ବିଶ୍ୱାସରେ ତା' ଆଗରେ ବାଣ୍ଟିସାରିଛି ତାକୁ ତ ସ୍ତ୍ରୀର ସହଯୋଗ ନିହାତି ଆବଶ୍ୟକ।

ଅଞ୍ଜନ ଏସବୁ କଥା କହିନଥିଲେ ଅନୁ ହୁଏତ ଏହି ରହସ୍ୟକୁ ଆଦୌ ଜାଣିପାରିନଥାନ୍ତା । ଅନୁର ଉତ୍ତରରେ ଅଞ୍ଜନ ନିଜ ସୁପ୍ତ ଇଚ୍ଛାକୁ ପୁନର୍ଜୀବିତ କଲା । ତା' ଭିତରେ ପାଠ ପଢ଼ିବାର ଇଚ୍ଛା ପୁଣି ଥରେ ଜାଗିଲା । ଅଞ୍ଜନର ଚାକିରିରେ କମର୍ସ ଯୋଗ୍ୟତା ନିହାତି ଦରକାର କିନ୍ତୁ ଅଞ୍ଜନ ଥିଲା ଆର୍ଟସ ଗ୍ରାଜୁଏଟ୍। ଅଞ୍ଜନର ଆକାଉଣ୍ଟିଙ୍ଗ୍ ଲାଇନରେ କିନ୍ତୁ ଖୁବ୍ ଭଲ ଅଭିଜ୍ଞତା ଥିଲା। ତେଣୁ ସେହି ଲାଇନ୍‌କୁ ଭିତ୍ତି କରି ଉଚ୍ଚ ଶିକ୍ଷା ଲାଭ କଲେ ଅଞ୍ଜନ ଭବିଷ୍ୟତରେ ଅଧିକ ଉନ୍ନତି କରିପାରିବ ବୋଲି ଦୁହେଁ ବିଚାର ଆଲୋଚନା କଲେ । ଶେଷରେ ଅଞ୍ଜନ ଡିପ୍ଲୋମା ଇନ୍ ବିଜିନେସ୍ ମ୍ୟାନେଜମେଣ୍ଟରେ ନାମ ଲେଖାଇଲା।

ଏହା ଭିତରେ ଅନୁ ଚାକିରି କରିସାରିଥାଏ । ପରିବାରର ସାମାଜିକ ଏବଂ ଆର୍ଥିକ ସ୍ଥିତିକୁ ବିଚାର କରି ଅନୁ ଚାକିରି କରିବା ଅଞ୍ଜନ ଓ ଅନୁ ଭିତରେ ସ୍ଥିର ହେଲା । ଅନୁର ଚାକିରି କରିବାକୁ ଅଞ୍ଜନର ନନାବୋଉ ବି ସ୍ୱୀକୃତି ଦେଇଥିଲେ । ଅନୁର ଖୁଡ଼ୀଶାଶୁଙ୍କୁ କିନ୍ତୁ ଏହା ନାପସନ୍ଦ ଥିଲା, 'ଘରର ବୋହୂଟା ଚାକିରି କ'ଣ କରିବ ?' କହି ସେ ସମାଲୋଚନା କରିବା ଅନୁର ଶାଶୁଙ୍କୁ ଭଲ ଲାଗି ନଥିଲା। ଏହା ଶୁଣି ସେ କହିଉଠିଲେ, 'ସେମାନେ କ'ଣ ଜାଣିବେ କେତେ ଅଭାବ ଅସୁବିଧାରେ ଘର କରିବାକୁ ପଡେ। ସବୁବେଳେ ତ ନିଜର ସ୍ୱାର୍ଥ ଆଉ ସୁବିଧା ଖୋଜି ବୁଲିଲେ, ଅନ୍ୟର ଅସୁବିଧା ସେମାନଙ୍କ ଦୃଷ୍ଟିରେ କିଭଳି ବା ଦେଖାଯିବ । ସ୍ୱାର୍ଥ ପାଇଁ ଘର ମଝିରେ ପାଚେରୀ ପକାଇ ଯୁଗ ଯୁଗର ସଂପର୍କରୁ ଯିଏ ଦୂରେଇ ଯିବାର ଧମକ ଦେଖାନ୍ତି ସେଭଳି ମଣିଷମାନଙ୍କ ମତାମତରେ ବିବ୍ରତ ନହେବା ଉଚିତ୍। ଇଟା ସିମେଣ୍ଟ ତିଆରି ଘରେ ବିଧବା ମାଆଟାକୁ ଖାଲି ଯେ ରଖିଦେଲେ ଦାୟିତ୍ୱ ତୁଟିଗଲାବୋଲି

ଭାବିବା ଅନୁଚିତ୍। ଯେଉଁଘରେ ସ୍ନେହ, ଆଦର, ମଣିଷପଣିଆ ଏବଂ ପରସ୍ପର ପ୍ରତି ସମ୍ମାନ ବୋଧର କାଣିଚାଏ ଛିଟା ଦେଖିବାକୁ ମିଳେନାହିଁ ସେଠି ଅଶାନ୍ତି ଛଡା ଆଉ କିଛି ଆଶା କରିବା ନିରର୍ଥକ। ସଂପର୍କର ମୂଳଦୁଆ ଘରର ନିଅ ପରି ଆରମ୍ଭରୁ ଦୃଢ଼ଥିଲେ ଶେଷ ପର୍ଯ୍ୟନ୍ତ ସଂପର୍କରେ ସମ୍ମାନବୋଧ ଏବଂ ପରସ୍ପର ପ୍ରତି ଆନ୍ତରିକତା ବଞ୍ଚି ରହେ। ନହେଲେ ବୁଢ଼ୀ କାଳକୁ ରାନ୍ଧିବାଢ଼ି ଦେବା ପାଇଁ କେହି ବି ପାଖରେ ନଥିବେ । ଆଉ ତୋ ଖୁଡ଼ୀଶାଶୁ ସବୁ କଥାର ମୂଳରେ ଥାଇ ନିଜ ମୁହଁରେ ନକହି ଅନ୍ୟ ମୁହଁରେ ସବୁ କଥା ପରିଚାଳନା କରେ । ଏପରିକି ତୋ ଶ୍ୱଶୁର ଆଉ ମୋର ସବୁ ପୁଅମାନେ ବି ତା'ରି କଥାରେ ପଡ଼ି ମୋତେ ନିନ୍ଦା କରି ତା'କୁ ଭଲପାଆନ୍ତି । ତା' କଥା ରଖି ମୋତେ ବାରମ୍ବାର ଅପମାନ କରନ୍ତି । କ'ଣ ନକରିଛନ୍ତି ଏମାନେ ଆଜି କହିଲେ କ'ଣନା ବୋହୂ ଚାକିରି କଲେ ଏମାନଙ୍କ ଅପମାନ ହେଉଛି। ତୁ ଚାକିରି କର; ତୋତେ ଯାହା ସୁବିଧା ହେଉଛି ତୁ ସେପରି କର ।' ଶାଶୁଙ୍କ ସାହସ ପାଇ ଅନୁ ଖୁସି ହୋଇଗଲା । ପାଖରେ ବସିଥିବା ଅନୁର ନଣନ୍ଦ ମଧ୍ୟ କଥାକୁ ଯୋର ଦେଇ କୁହେ 'ହଁ ଭାଉଜ ଦାଦାଘରେ କଲେଜରେ ପଢ଼ିଲାବେଳେ ବର୍ଷଟିଏ ରହିଥିଲି । ମୋ ପାଠପଢ଼ାବେଳେ ଦାଦାଙ୍କ ସାନଝିଅ ଚୁକି ଆସି ଲାଇଟ ବନ୍ଦ କରିଦିଏ, କହେ ଆମ ଇଲେକଟ୍ରି ବିଲ୍ ବଢ଼ିଯିବ । ମୁଣ୍ଡ ଉପରେ ପରୀକ୍ଷା ସତ୍ତ୍ୱେ ମୋର ପାଠପଢ଼ାରେ ବ୍ୟାଘାତ ହୁଏ । ମୋର ଆଦୌ ଇଚ୍ଛା ହୁଏନି ସେଠି ରହି ପାଠ ପଢ଼ିବାକୁ । କିନ୍ତୁ ନନାବୋଉ ବାଧ୍ୟ କରି ମୋତେ ସେଠାରେ ଛାଡ଼ିଦେଲେ। ଯେମିତି ସେମିତି ଗ୍ରାଜୁଏଟ ହୋଇଗଲି । ତା'ପରେ ଏମ୍ଏ ପଢ଼ିବାକୁ ମୋର ଭାରି ଇଚ୍ଛା ଥିଲା । କିନ୍ତୁ ଘରେ ଭଲ ପ୍ରସ୍ତାବ ଦେଖି ବାହା କରାଇଦେଲେ। ବାହାଘର ଠିକ୍ ହେବା ଜାଣି ଚୁକି ମୋତେ ପରିହାସ କରି କହିଥିଲା, "ସେ କ'ଣ ପାଠ ପଢ଼ିବାକୁ କଲେଜ ଯାଉଥିଲା । ବସ୍‌ରେ ଯିବା ଆସିବାବେଳେ ଟୋକା ପଟେଇ ରଖିଥିଲା ପାଠପଢ଼ା ସରୁ ସରୁ ବାହା ହେବାକୁ ତକ୍ ତକ୍ ହେଲା । ମୋତେ ସେମାନଙ୍କ କଥାଗୁଡ଼ିକ ବହୁତ କଷ୍ଟ ଦିଏ, ସବୁ ଶୁଣି ସହିବାକୁ ବାଧ୍ୟ ହେବାକୁ ପଡୁଥିଲା ।" ଅନୁ ପାଖରେ ତା' ଶାଶୁ ଏବଂ ନଣନ୍ଦ ପରିବାର ଭିତରେ ହୋଇଥିବା ଏଭଳି ଅନେକ ବିଶୃଙ୍ଖଳାର କଥା କୁହନ୍ତି।

ଅନୁକୁ ପରିବାର ଭିତରେ ସମସ୍ତଙ୍କ ଆନ୍ତରିକତା ଶ୍ରଦ୍ଧା ଧୀରେ ଧୀରେ ବାନ୍ଧି ରଖିଥିଲା । ଅନୁର ଶାଶୁ ଅନୁକୁ ଆକଟ କରି କହନ୍ତି, 'ବଡ଼ ଘରକୁ ଟିକେ ଜଗି ରହୁଥିବୁ । ସେମାନଙ୍କ ସହ ଆମର ବହୁତ ଦିନର ତିକ୍ତତା ଅଛି । ଥରେ ତୋ ବଡ଼ବାପା ଶ୍ୱଶୁର ମୋତେ କଟୁରୀରେ ହାଣିବାକୁ ବାହାରିଥିଲେ ଆଉ କୂଅରେ ପକାଇଦେବାକୁ ହାତଧରି ଟାଣି ନେଇଥିଲେ । ଉଦ୍ଦେଶ୍ୟ ଥିଲା ସଂପତ୍ତି ଭାଗବଣ୍ଟାକୁ ନେଇ କଳହ ଓ ବଂଶ ନାଶ କରିବା । ମୋ ଶ୍ୱଶୁର ମରିବା ପରେ ପରେ ସେ ନିଜ ଭାଗ ନେଇ ଅଲଗା

ହୋଇଗଲେ । ପରିବାର ଦାୟିତ୍ୱ କେବେ ଦିନେ ମୁଣ୍ଡେଇ ନାହାନ୍ତି। ନିଜଭାଗ ସଂପତ୍ତିକୁ ଜୁଆଖେଳି ବୁଡ଼େଇଦେଲେ, ଆଉ ଆମ ଭାଗ ଉପରେ ପୁଣି ଆଖି ପକାଇଲେ । ଏତେବେଳକୁ ମୋ ବାହା ଘର ହୋଇ ଦୁଇ ପିଲା ଜନ୍ମ ହୋଇ ସାରିଥିଲେ । ଅଞ୍ଜନ ସେତେବେଳକୁ ଆଠ ବର୍ଷର ପିଲା । ତା'ଉପରେ ଏସବୁ କଥାର ଖରାପ ପ୍ରଭାବ ପଡ଼ିବ ଭାବି ତାକୁ ତା' ଦାଦା ପାଖକୁ ପାଠ ପଢ଼ିବାକୁ ପଠାଇଦେଲୁ। ତା' ପଛକୁ ଅରୂପକୁ ବି ଅଜାଘରକୁ ପଠାଇଦେଲୁ । ମୋ ଶାଶୁଙ୍କର କମ୍ ନୀତିନିୟମ ନଥିଲା। ଦିଅଁଦେବତା ଆଉ ରୋଷେଇ ଘରେ ମୋ ଦିନ ସରିଯାଏ। ପାଣି ଅଭାବର ଗାଁ ତା' ଉପରେ ଘରେ ଚାକରାଣୀ ପଶିପାରିବେନି । କଲିକତା, ଭୁବନେଶ୍ୱର ପରି ବଡ଼ ସହରମାନଙ୍କରେ ବଢ଼ି ମୁଁ ଏବେ ନିପଟ ମଫସଲରେ ପଡ଼ିଛି । କେଉଁ ଜନ୍ମର ଅଭିଶାପ ଥିଲେ ଏ ଗାଁକୁ ବୋହୂ ହୋଇ ଆସିବ ।'

ସମସ୍ତଙ୍କ କଥାକୁ ଶୁଣିଛି ଅନୁ କିନ୍ତୁ ସେସବୁ ତା'ର ପ୍ରତ୍ୟକ୍ଷ ନୁହେଁ ଏବଂ ଅତୀତ ଜାଣି ସେହି ଘଟଣାମାନଙ୍କୁ ଆଧାର କରିନି କି ମନରେ ପ୍ରତିଶୋଧର ଶିଖା ଜଳାଇ ନାହିଁ। ଅତି ସାଧାରଣ ଭାବରେ ସେ ତା'ର ଦାମ୍ପତ୍ୟ ଜୀବନକୁ ଆଗେଇ ନିଏ । ଅବଶ୍ୟ ସ୍ୱାମୀ, ଶାଶୁ, ନଣନ୍ଦର ଅନୁ ପ୍ରତି ବିଶ୍ୱାସ ଅନୁକୁ ପରିବାରରେ ଅଧିକରୁ ଅଧିକ ନିବିଡ଼ କରୁଥିଲା । ନିଜ ଜନ୍ମମାଟି, ବାପା, ମାଆ, ଭାଇ, ଭଉଣୀ, ସାଙ୍ଗସାଥୀ ସଭିଙ୍କୁ ଛାଡି ଗୋଟିଏ ନୂଆ ପରିବେଶରେ, ନୂଆ ଲୋକମାନଙ୍କ ମନକୁ ନେଇ ଚଳିବା ଚେଷ୍ଟାରେ ଅନୁ ନିଜ ବାପ ଘର ଯିବା ଇଚ୍ଛାକୁ ଦବାଇ ରଖୁଥାଏ । ଅନେକ ଥର ସେ ଚାହିଁଛି ତାର ରକ୍ତସମ୍ପର୍କମାନଙ୍କୁ ଭେଟି ଆସିବ କିନ୍ତୁ ଅତ୍ୟଧିକ ନୀତିନିୟମରେ ବନ୍ଧା ପରିବାରରେ ଭଲ ଦିନ ଖରାପ ଦିନର ହିସାବ କରି ବୋହୂର ଯାତ୍ରା ସ୍ଥିର ହେବା ଏବଂ ବିବାହ ପରେ ଅନୁ ଗର୍ଭବତୀ ହେବା ଏବଂ ଡାକ୍ତରଙ୍କର ନିର୍ଦ୍ଦେଶରେ ଯାତ୍ରା କରିବା ମନା ଆଦି ପ୍ରତିବନ୍ଧକ ମଧ୍ୟରେ ଅନୁ ଶ୍ୱଶୁର ଘର ଲୋକଙ୍କ ସହ ଅଧିକ ରହିବାକୁ ବାଧ୍ୟ ହୁଏ ।

ଅନୁ ଏତେବେଳକୁ ବିସ୍ମୟ ହୋଇଯାଉଥିଲା ସାମାଜିକ ଏବଂ ପାରିବାରିକ ରୀତିନୀତିରେ କିଭଳି ଗୋଟିଏ ଝିଅର ଜୀବନଶୈଳୀ ବଦଳୁଥିବା ଦେଖି । ମୁକ୍ତ ଚିନ୍ତା ଏବଂ ସ୍ୱାଧୀନ ଭାବରେ ବଢି ଚାଲିଥିବା ଝିଅଟିଏ ମୁଣ୍ଡରେ ଓଢଣା ଟାଣିଲା ପରେ ଦାୟିତ୍ୱର ବନ୍ଧନରେ ଆପେ କିପରି ବାନ୍ଧି ହୋଇଯାଏ । ଏ ଶୃଙ୍ଖଳା ତା'ପାଇଁ ସତେ ଅବା ପ୍ରକୃତିଦତ୍ତ । ଏହାକୁ ମାନିଲେ ଗଢିବା ନ ମାନିଲେ ଭାଙ୍ଗିଯିବାର ଦୋଛକିରେ ଅନୁ ନିଜକୁ ଦେଖୁଥିଲା, ବିରାଟ ଶୂନ୍ୟତା ଭିତରେ ହଜିଯିବାର ଅନୁଭବ କରୁଥିଲା ସେ ।



*(ସାବିତ୍ରୀ)*

# ଶଙ୍କା

ଦିନ ବାରଟାରୁ ସେଦିନ ଅସ୍ତବ୍ୟସ୍ତ ହେଲା କଳ୍ପନା। ଅଫିସ୍ ଟେବୁଲ୍ ଉପରେ ମାଳମାଳ ଫାଇଲ୍। ତଥାପି କାମରେ ମନ ଆସୁନଥିଲା ତା'ର। ଚୌକି ଉପରୁ ଉଠିଯାଇ ପାଖରେ କାମକରୁଥିବା ଆଉ ଜଣେ ମହିଳା କର୍ମୀଙ୍କୁ କହିଦେଇ ସେ ବାହାରି ପଡିଲା ଘରକୁ। କଳ୍ପନାର ଏପରି ଅଚାନକ ଅଫିସ୍‌ରୁ ବାହାରିଯିବା ଦେଖି ସହକର୍ମୀ ପ୍ରତାପବାବୁ ପ୍ରଶ୍ନକଲେ, 'କ'ଣ ମ୍ୟାଡମ୍ କିଛି ପ୍ରୋବ୍‌ଲେମ୍ ଅଛି କି... ?'

'ନାଇ ସେମିତି କିଛି ନାହିଁ ମନଟା କାହିଁକି ଭାରି ବ୍ୟସ୍ତ ଲାଗୁଛି। ଯାଉଛି ଟିକେ ଘର ଆଡୁ ବୁଲି ଆସିବି। ଝିଅକୁ ବି ଟିକେ ଦେଖି ଆସିବି।' ଅଫିସ୍ ଘରଠାରୁ ଅତି କମ୍‌ରେ ଅଧଘଣ୍ଟାର ବାଟ। ପ୍ରତାପବାବୁ କଳ୍ପନାର ବ୍ୟସ୍ତତା ଦେଖି କହିଲେ, 'ଆପଣ ଯଦି କିଛି ମନେ ନକରନ୍ତି ଚାଲନ୍ତୁ ଆପଣଙ୍କୁ ଘରେ ଛାଡିଦେବି।' କଳ୍ପନା ପ୍ରତାପର ଏପରି ଅନୁରୋଧକୁ ବିରୋଧ ନକରି ତାଙ୍କ ସହିତ ବାହାରି ପଡିଲା।

ବାଟରେ ମୁଣ୍ଡଫଟା ଖରା। କଳ୍ପନା ଘରେ ପହଞ୍ଚିଲା ବେଳକୁ ଏକଦମ୍ ଝାଳରେ ବୁଡି ଗଲାଣି। ପ୍ରତାପବାବୁଙ୍କ ସହଯୋଗ ପାଇଁ ତାଙ୍କୁ ଧନ୍ୟବାଦ ଜଣାଇ ଅଫିସ୍ ଫେରିଯିବାକୁ ଅନୁରୋଧ କଲା, 'ଆପଣ ଯାଆନ୍ତୁ ମୁଁ କିଛି ସମୟ ପରେ ବ୍ୟବସ୍ଥା କରି ଅଫିସ୍‌ରେ ପହଞ୍ଚି ଯାଉଛି।'

କଲିଂବେଲ୍ ସୁଇଚ୍ ଟିପି ସିଡ଼ି ଉପରକୁ ଚଢ଼ିଗଲା। ଆୟା ମାନସୀ ଆଖିମଳି ମଳି କବାଟ ଖୋଲିଲା। ବୋଧହୁଏ କାମସାରି ଶୋଇ ପଡିଥିଲା। ଚୁମ୍‌କି ପାଞ୍ଚ ଥର ଝାଡା କରିସାରିଲାଣି। କାନ୍ଦି କାନ୍ଦି ଏବେ ଶୋଇଛି। କଳ୍ପନା ଘର ଭିତରେ ପଶୁ ପଶୁ ମାନସୀଠାରୁ ଏହା ଶୁଣି ହତବାକ୍ ହୋଇଗଲା। ଚୁମ୍‌କି ତା'ର ପାଞ୍ଚ ମାସର ଝିଅ। କିଛି

ନଭାବି ବେଡ୍‌ରୁମ୍‌କୁ ଦୌଡିଗଲା ସେ। ଚୁମ୍‌କିକୁ କୋଳାଗ୍ରତକରି ଛାତିରେ ତା' ମୁହଁକୁ ଆଣି ଯାକିଦେଲା। ମାଆଠାରୁ ଯେପରି ଖାଇବାକୁ ଅନାଇ ବସିଥିଲା ଚୁମ୍‌କି। କଳ୍ପନା ଠିକ୍‌କଲା ଝିଅର ଅସୁସ୍ଥତା ହିଁ ତାର ଅଫିସ୍‌ରେ ବ୍ୟସ୍ତତାର କାରଣ ଥିଲା। ସତରେ ନିୟତିର କି ଅପୂର୍ବ ନୀତି। ଛୁଆର ବ୍ୟସ୍ତତା ମା' ପାଖରେ ପହଞ୍ଚାଇବାରେ ଭଗବାନ ସତରେ କିପରି ସଂଯୋଗ କରିଛନ୍ତି। ମା' ଛାତି ସହିତ ଛୁଆର ଭାବ ଦିଆନିଆ ପରେ ଛୁଆଟା ଯେମିତି ଶାନ୍ତ ହୋଇଗଲା। ଖଟରେ ତାକୁ ଶୁଆଇ ଦେଇ କଳ୍ପନା ପ୍ରସ୍ତୁତ ହେଲା ପୁଣି ଅଫିସ୍ ଯିବା ପାଇଁ। ଏହି ସମୟରେ କଲିଂବେଲ୍ ପୁଣି ବାଜିଲା। କାଳେ ବେଲ୍ ଶବ୍ଦରେ ଛୁଆଟା ଉଠି ପଡିବ ତାକୁ ସାମାନ୍ୟ ଥାପୁଡେଇ ଦେଇ ଦରଜା ପାଖକୁ ଚାହିଁଲା କଳ୍ପନା। ସେତେବେଳକୁ ମାନସୀ କବାଟ ଖୋଲିସାରିଥିଲା ଆଉ କବାଟ ବାହାରେ କଳ୍ପନାର ସ୍ୱାମୀ ପଙ୍କଜ। ଏପରି ଅସମୟରେ ପଙ୍କଜର ଆଗମନରେ ବ୍ୟତିବ୍ୟସ୍ତ ନହୋଇ ସେ ପ୍ରଶ୍ନ କରେ, 'ଏତେ ଶୀଘ୍ର ଚାଲି ଆସିଲ ଯେ ?'

'ଭୋକ ହେଲା ସେଥିପାଇଁ ଚାଲି ଆସିଲି।' ପଙ୍କଜ ଉତ୍ତର ଦେଲା।

କଳ୍ପନା ଅଫିସ୍ ଯିବା ପୂର୍ବରୁ ରୋଷେଇ ସାରିଦିଏ ଆଉ ସ୍ୱାମୀସ୍ତ୍ରୀ ଦୁହେଁ ଏକା ସାଙ୍ଗେ ଖାଇକରି ଅଫିସ୍ ବାହାରିଯାନ୍ତି। କଳ୍ପନା ଦୁଇ ଜଣଙ୍କ ଆବଶ୍ୟକତା ଅନୁଯାୟୀ ରୋଷେଇ କରେ। ସେ କଥା ପଙ୍କଜ ଭଲ ଭାବରେ ଜାଣନ୍ତି। ସେ ତ କେବେ ଆବଶ୍ୟକତାଠାରୁ ଅଧିକ ରୋଷେଇ କରେନି ଯେ ପଙ୍କଜ ଘରେ ରନ୍ଧା ଖାଦ୍ୟ ଥିବା କଥା ଭାବି ଚାଲିଆସିଥିବ। ସେ ଯା ହେଉ ଖାଇବା ପାଇଁ ଆସିଥିବା କହୁଥିବା ପଙ୍କଜ ଆଉ ଖାଇବାରେ ଆଗ୍ରହ ନଦେଖାଇ ଅଫିସ୍ ଯିବାକୁ ଉଦ୍ୟତ ହେଲା।

ପଙ୍କଜର ଯିବା ଦେଖି କଳ୍ପନା କହିଲା, 'ମତେ ଟିକେ ମୋ ଅଫିସ୍‌ରେ ଡ୍ରପ୍ କରିଦେଲେ ହୁଅନ୍ତାନି।'

'ମୁଁ କ'ଣ ମନା କଲି କି ?'

ପଙ୍କଜର ଏପରି ଉତ୍ତରରେ କିଛି ନକହି କଳ୍ପନା ପଙ୍କଜର ଗାଡି ପଛରେ ବସିଲା।

'ତମେ ଜାଣିଥିଲ ମୁଁ ଘରକୁ ଆସିଛି ବୋଲି ?' ପ୍ରଶ୍ନ କଲା କଳ୍ପନା।

'ହଁ ତୁମ ଅଫିସ୍‌କୁ ଫୋନ୍ କରିଥିଲି ଶୁଣିଲି ତୁମେ ଅଫିସ୍‌ରୁ ବାହାରିଯାଇଛ। ଭାବିଲି ଘରକୁ ଆସିଥିବ। ଏଣୁ ଚାଲି ଆସିଲି।' କଥାଟା ଶୁଣି କଳ୍ପନା ମନରେ ଶଂକା ପଶିଲା। ହୁଏତ ପ୍ରତାପବାବୁଙ୍କ ସହିତ ଆସୁଥିବା କଥା ପଙ୍କଜ ସହଜରେ ହଜମ କରିପାରିନାହାନ୍ତି।

'ମୁଁ ଅଫିସରୁ ବାହାରି ଘରକୁ ହିଁ ଆସିବି ଏକଥା ତମେ କେମିତି ଭାବିଲ, ଆଉ କେଉଁଠିକୁ ମଧ୍ୟ ଯାଇଥିବି ?' ଚୁପ୍ ରହିଗଲା ପଙ୍କଜ ଏଥର କଳ୍ପନା ଅଫିସକୁ ଡେରିହେବା ଦେଖି ସାଙ୍ଗେ ସାଙ୍ଗେ ବାହାରି ପଡିଲା। ସାଥେ ସାଥେ ପଙ୍କଜ ମଧ୍ୟ। ସେ ଯାହାହେଉ

କଳ୍ପନାକୁ ତା' ଅଫିସ୍‌ରେ ଛାଡି ଦେଇ ପଙ୍କଜ ବାହାରିଗଲା। କଳ୍ପନା ଅଫିସ୍‌ରୁ ବୁଝି ନେଲା ଯେ ତା' ଉଦ୍ଦେଶ୍ୟରେ କେହି ବି ଅଫିସ୍‌କୁ ଫୋନ୍ କରିଥିଲେ କି। ପଙ୍କଜର ଫୋନ୍ କରିବାର ପ୍ରଶ୍ନ ହିଁ ନଥିଲା। ତେବେ ପଙ୍କଜ ଏପରି ମିଛ କହିଲେ କାହିଁକି। ଶଙ୍କା ଭିତରେ ଛନ୍ଦି ହେଲା କଳ୍ପନା ?

ପଙ୍କଜ ତାକୁ ମିଛ କହିଛନ୍ତି, ଅସମୟରେ ଘରକୁ କାହିଁକି ଆସିଥିଲେ ? ଏପରି ପ୍ରଶ୍ନ ମଧ୍ୟରେ କିଛି ସମୟ ଅଟକିଗଲା କଳ୍ପନା। ପଙ୍କଜର ଏପରି ଅସମୟରେ ଆସିବାର କାରଣ ଆୟାର ଆକର୍ଷଣ ନୁହେଁ ତ ?

ନା, ଏମିତି ନୁହନ୍ତି ପଙ୍କଜ । ଏପରି ଏକ ପାପ କଥା ତା' ମୁଣ୍ଡକୁ ଆସୁଛି କେମିତି ପଙ୍କଜ ଆଜି ଖାଇନାହାନ୍ତି କହୁଥିଲେ । ଏଯାଏଁ ସେ ଖାଇଲେ କି ନାହିଁ କେଜାଣି ପ୍ରତିଦିନ ତ ଅଫିସରୁ ଖାଇ ନିଅନ୍ତି । ଆଜି ତାଙ୍କ ଅଫିସ ରୋଷେୟା ଆସି ନାହିଁ କହୁଥିଲେ । ହୋଟେଲରେ ଖାଇନେବେ କହିଥିଲେ, ଖାଇଲେ ନା ନାଇଁ । ଏମିତି ଶଙ୍କା ଭିତରେ କଳ୍ପନା ଭାବି ଚାଲିଥାଏ ।

ଅଫିସ୍‌ରେ କାମ କରିବାରେ ଆଦୌ ମନ ଲାଗୁନି ତା'ର। କାମରେ କୌଣସି ପ୍ରକାରେ ଆଗ୍ରହ ଆସୁନଥିଲା । ଅଫିସ୍ ଛୁଟି ସମୟରେ ପଙ୍କଜ ସେଦିନ କଳ୍ପନାକୁ ନେବାକୁ ଆସିଲା। ଆଜି କିନ୍ତୁ କଳ୍ପନା ମନରେ ଘରକୁ ପଙ୍କଜ ସହ ଫେରିବାର ଉତ୍ସୁକତା ନଥିଲା । ଅଫିସ୍ ଛୁଟି ସମୟ ହୋଇ ଆସିବାବେଳେ ସେ କେଡେ ଆଗ୍ରହରେ ପଙ୍କଜକୁ ଅପେକ୍ଷା କରିଥାଏ ଆଉ ସେମାନେ ଦୁହେଁ ଗାଡିରେ ଫେରିଲାବେଳେ ମନଖୋଲି କଥାବାର୍ତ୍ତା ହୁଅନ୍ତି। ସେଦିନ କିନ୍ତୁ କଥାମାନଙ୍କର ଭିଡ ନଥିଲା।

ଘରକୁ ପହଞ୍ଚି କଳ୍ପନା ପଙ୍କଜର ଅଫିସକୁ ଫୋନ କରିଛି । ସେଠାରୁ ଜାଣିବାକୁ ପାଇଛି ପଙ୍କଜ ନିର୍ଦ୍ଦିଷ୍ଟ ସମୟରେ ଲଞ୍ଚ ନେଇଛନ୍ତି । ଅଫିସରେ ନଖାଇବା ଭଳି କୌଣସି ଅବ୍ୟବସ୍ଥା ହୋଇନାହିଁ ଆଜି । ତେବେ ପଙ୍କଜ ଭୋକିଲା ଥିବା କଥା ମିଛ କହିଲେ କାହିଁକି ? ଶଂକା ବଢ଼ିଚାଲିଲା କଳ୍ପନାର। କେଉଁ ଭୋକ କଥା କହୁଥିଲେ ତା'ହେଲେ ପଙ୍କଜ ? ସେ ସମୟରେ କଳ୍ପନାର ଘରେ ରହିବାର ନଥାଏ। ତେବେ ଆୟା ପ୍ରତି ଆଶଙ୍କା ଆହୁରି ବଢ଼ିଗଲା କଳ୍ପନାର। ମାନସୀ ଏଇ କିଛି ଦିନ ହେଲା କାମ କରୁଛି କଳ୍ପନା ଘରେ। ଚୁମ୍‌କିର ଜନ୍ମ ପରେ ତା' ଦେଖାଚାହା କରିବାକୁ ଆବଶ୍ୟକ ବେଳେ ମାନସୀ ଆସିଥିଲା ସେମାନଙ୍କ ଘରକୁ। ସ୍ୱାମୀ ସ୍ତ୍ରୀ ଚାକିରୀକୁ ଯିବା ପରେ ଛୁଆର ଦାୟିତ୍ୱ ପ୍ରାୟ ତା'ଉପରେ। ବୟସ ଅଠରରୁ କୋଡିଏ ଭିତରେ ହେବ। ଏସବୁ ଭାବନା ଯେ କ'ଣ ପାଇଁ କଳ୍ପନା ମନକୁ ଆସୁଥାଏ ସେ ବୁଝିପାରିଲାନି। ସେ ପଙ୍କଜ ପ୍ରତି କେବେ ଅବହେଳା କରିନି କି ପ୍ରେମ କରିବାରେ କଂଜୁସୀ କରିନି। କଳ୍ପନା ବି କେବେ ଅନୁଭବ କରିନଥିଲା ଯେ ପଙ୍କଜର ଭଲ ପାଇବାରେ କିଛି ଆବିଳତା ଅଛି ବୋଲି।

ତେବେ ଚୁମକିର ଜନ୍ମ ପରଠାରୁ କ'ଣ ପାଇଁ କେଜାଣି ସେପରି ଆକର୍ଷଣ ନଥିବା ତାକୁ ଅନୁଭବ ହୋଇଛି କେତେବେଳେ କେମିତି ସେସବୁକୁ ସେ ନିରେଖି ହିଁ ନଥିଲା। ପଙ୍କଜକୁ ନେଇ କଳ୍ପନା ମନରେ ଏପରି ଶଂକା ଦିନେ ଆସିବ ହୁଏତ କଳ୍ପନା ବିଶ୍ୱାସ କରିପାରୁନଥିଲା । ତେବେ ଶଂକା ଉତ୍ପନ୍ନ ହେଉଥିଲା।

ତେବେ ଅନ୍ୟ ପୁରୁଷ ପରି ପଙ୍କଜ କ'ଣ.. ? ନା, କଳ୍ପନାକୁ ବିଶ୍ୱାସ ହେଉନାହିଁ। ତା' ବିବାହର ବାର୍ଷିକ ଏଇ କେତେ ମାସ ହେବ ଯାଇଛି। କଳ୍ପନା ପୂର୍ବରୁ ଶୁଣିଛି ସ୍ତ୍ରୀ କୁଆଡେ ମା' ହେବାପରେ ସ୍ୱାମୀର ଦୃଷ୍ଟି ବଦଳିଯାଏ। ତା' ହେଲେ ଏ କ'ଣ ପଙ୍କଜ ପାଇଁ ମଧ୍ୟ ଲାଗୁ ହୋଇଛି। ଏପରି ଶଙ୍କା ଭିତରେ କଳ୍ପନାର ରାତି ବିତିଗଲା, ଆଖିରେ ନିଦ ନାହିଁ।

ସକାଳୁ ମାନସୀର କଲିଂ ବେଲ୍‌ରେ ଦୁହେଁ ବିଛଣା ଛାଡିଲେ। ନିତ୍ୟକର୍ମ ସାରି ଖାଇପିଇ ଦୁହେଁ ଅଫିସ୍ ଯିବାକୁ ପ୍ରସ୍ତୁତ ହେଉଥିଲେ। ବେଡ୍ ରୁମରେ ଶାଢୀ ବଦଳାଉ ଥିବାବେଳେ କଳ୍ପନା ଦେଖିଲା ଆରଘର ପରଦାକୁ ଆଡ କରି, ମାନସୀ ଠିଆ ହୋଇଛି ଆଉ ଛାତି ପାଖର ଶାଢ଼ୀ ତାର ଖସି ଆସିଛି ଆବଶ୍ୟକତାଠାରୁ ଟିକେ ତଳକୁ। ଶାଢ଼ୀର କୁଂଚ କରୁକରୁ ବେଡରୁମରୁ ବାହାରି ଆସିଲା କଳ୍ପନା ଲିଂଭିରୁମକୁ। ପଙ୍କଜ ଜୋତାର ଲେସ୍ ବାଂଧୁଥିଲା। ଅଜାଣତରେ କଳ୍ପନା ଆଖି ଚାଲିଗଲା ମାନସୀର ଛାତିକୁ ଆଉ ସେ ଘୋଡାଇ ନେବା ଛଳରେ ଶାଢ଼ୀକୁ ସେ ଆଉଟିକେ ଭିଡିନେଲା କାନ୍ଧ ଆଡ଼କୁ।

ପଙ୍କଜର ଅସମୟରେ ଘରକୁ ଆସିବା ପୁଣି ତାଗିଆଦ କରିଦେଲା କଳ୍ପନାକୁ ଆୟା ଦେଖିବାକୁ ବେଶ୍ ଆକର୍ଷଣିଆ ଯୁବତୀ । ତେବେ ଅନ୍ୟ ପୁରୁଷଙ୍କ ପରି ପଙ୍କଜ କ'ଣ... ? ନା, କଳ୍ପନାକୁ ବିଶ୍ୱାସ ହେଉନାହିଁ । ତା' ବିବାହକୁ ଏଇ ମାତ୍ର ଦେଢ଼ ବର୍ଷ ହୋଇଛି । କଳ୍ପନା ଅଫିସ୍ ଯିବାକୁ ପ୍ରସ୍ତୁତ ହେଉଥାଏ ସିନା ମନ ଭିତରେ ତାର ଅନେକ ଭାବନାମାନଙ୍କର ଭୀଡ । ପଙ୍କଜ ଗାଡି ଷ୍ଟାର୍ଟ କଲା। କଳ୍ପନା ପଛରେ ବସିଗଲା କିଛି ନକହି। ମନେ ମନେ ଭାବୁଥିଲା ଯଦି ସ୍ତ୍ରୀ ମାଆ ହେବାପରେ ସ୍ୱାମୀର ଦୃଷ୍ଟି ବଦଳୁଛି ତେବେ ସ୍ୱାମୀ ବାପା ହେବା ପରେ କ'ଣ ସ୍ତ୍ରୀର ଦୃଷ୍ଟି ମଧ୍ୟ ବଦଳିଯାଏ ?



*(ମନୋରମା, ବିନ୍ଦୁବର୍ଣ୍ଣାଳୀ)*

# ଅର୍ଦ୍ଧନାରୀଶ୍ୱର

ଆଜି ସକାଳୁ ବିଛଣା ଛାଡ଼ିବା ବେଳରୁ ରିନିତା ଖୁବ୍ ଭାରି ଭାରି ଅନୁଭବ କରୁଥାଏ, ମନରେ କମ୍ ଶରୀରରେ ବେଶୀ । କାହିଁକି ଏପରି ଲାଗୁଛି ? ପୂର୍ବଦିନ ସେମିତି ବି ବେଶୀ କିଛି କାମ କରିବାକୁ ପଡ଼ିନଥିଲା ଯେ ଦେହରେ ସେପରି ଅଶ୍ୱସ୍ତି ଅନୁଭବ କରିବ । ସବୁଦିନ ଭଳି ଖାଇବାରେ ମଧ୍ୟ ସାଧାରଣ ଖାଦ୍ୟ ଗ୍ରହଣ କରିଥିଲା । ତେବେ ଖାଦ୍ୟ ଓ କାମର ବୋଝ ନଥିବା ସତ୍ତ୍ୱେ ଆଜି ସକାଳୁ ଶରୀର ଏପରି ଭାରି ଲାଗିବାର କାରଣ ରିନିତା ଆଦୌ ଜାଣିପାରୁ ନଥିଲା । ତେବେ ବି ବିଦିଷାକୁ ସ୍କୁଲ ପାଇଁ ସକାଳୁ ପ୍ରସ୍ତୁତ କରିବା, ତା' ହୋମ୍‌ୱାର୍କ ଦେଖିବା, ରୋଷେଇ ଏବଂ ଅନ୍ୟାନ୍ୟ ଯାବତୀୟ  କାର୍ଯ୍ୟ ତୁଲାଇସାରିଛି । ରିନିତାର ସ୍ୱାମୀ ଉଦୟ ମଧ ମାନସିକ ସ୍ତରରେ ଭାରି ଅନୁଭବ କରୁଥାଏ । ଏଣୁ ସକାଳୁ ଉଠିବାରେ ବିଳମ୍ବ ହୁଏ ଉଦୟର। ରିନିତା ଲାଗିପଡ଼େ ବିଦିଷାକୁ ସ୍କୁଲ ପାଇଁ ପ୍ରସ୍ତୁତ କରିବାରେ ଏବଂ ମଝି ମଝିରେ ଉଦୟ ଶୋଇଥିବା ବେଡ୍ ପାଖକୁ ଯାଇ ଉଦୟ ସହ କଥାହେବା, ତା' ଦେହରେ ଟିକେ ଘସି ହେଇଯିବା ପରି ସାଧାରଣ ଦାମ୍ପତ୍ୟ ପ୍ରତିକ୍ରୀୟା ଦେଖାଏ । ପେଟର ଭୋକକୁ ସିନା କହି ଦେଇହୁଏ ଶରୀରର ଭୋକକୁ କ'ଣ କହିହୁଏ ନା ମାନସିକ ଅଶାନ୍ତିକୁ ଶାନ୍ତ କରିହୁଏ; ଅବସାଦକୁ ଦୂର କରିବାକୁ ମାନସିକ ସହମତି ନଥିଲେ ଶାରୀରିକ ସଂପର୍କରେ ଆବଦ୍ଧ ହେବା ଖୁବ୍ କଷ୍ଟକର ।

ଉଦୟ ମଧ ଗତ ରାତିରେ ବିଳମ୍ବରେ ଶୋଇଥିଲା ଏବଂ ରିନିତାର ସହମତି ବିନା ସେ ମଧ ଆଘାତ ପାଇଥିଲା। ଯଦିଓ ଏସବୁ ଘଟଣାର କାରଣ ଉଦୟ ହିଁ ସ୍ୱୟଂ ଥିଲା । ସ୍ୱାମୀ ସ୍ତ୍ରୀ ସଂପର୍କକୁ ଦୀର୍ଘଜୀବି କରିବା ଏବଂ ସେହି ସଂପର୍କ ଭିତରେ ପ୍ରେମ

ଆଉ ବିଶ୍ୱାସକୁ ଧରି ରଖିବା ଯଦି ଏତେ ସହଜ ହୋଇଯାଉଥାଆନ୍ତା ତେବେ ହୁଏତ ଆଜି ସମାଜରେ ଏତେ ଛାଡପତ୍ର କି ବଧୂହତ୍ୟା କିମ୍ବା ଦାମ୍ପତ୍ୟ କଳହ ହେଉନଥାଆନ୍ତା । ସ୍ୱାମୀ-ସ୍ତ୍ରୀ ମଧ୍ୟରେ ପ୍ରେମ ସଂପର୍କ ଅତୁଟ ରହିବାରେ ଶରୀରିକ ସଂପର୍କ ଅପେକ୍ଷା ମାନସିକ ପ୍ରସ୍ତୁତି ଏବଂ ଜଣେ ଅନ୍ୟ ଜଣକୁ ନିଃସର୍ତ ଭାବରେ ଗ୍ରହଣ କରିବାର ମାନସିକତା ମୁଖ୍ୟ ଭୂମିକା ନେଇଥାଏ । ସଂପର୍କର ସନ୍ତୁଳନ ରକ୍ଷା କରିବାକୁ ଦୁଇ ଶରୀରର ମିଳନ ତ ନିଶ୍ଚିତ ଭାବରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ତଥାପି ମାନସିକ ସ୍ତରରେ ପରସ୍ପରକୁ ଗ୍ରହଣ କରିପାରୁ ନଥିବା ବା ପରସ୍ପର ପ୍ରତି ସମ୍ମାନ ନଥିବା ଦମ୍ପତିଙ୍କ ମଧ୍ୟରେ ଶାରୀରିକ ମିଳନ ଯେ ମୂଲ୍ୟହୀନ ତାହା ବାରମ୍ବାର ପ୍ରମାଣିତ ହୋଇସାରିଛି ।

'କ'ଣ କାଲି ରାତିରେ ମନା କରିଦେଲି ଏଣୁ ଅଲଗା ଏଇ ଡ୍ରଇଂ ରୁମ୍‌ରେ ଆସି ଶୋଇଗଲ ? ଦେଖ ମୋ କଥା ଟିକେ ଚିନ୍ତା କର ମୋର ଯେ ଆଦୌ ଇଚ୍ଛା ନଥିଲା... କେମିତିବା ତୁମକୁ ସହଯୋଗ କରିପାରିଥାନ୍ତି...। ଯେପର୍ଯ୍ୟନ୍ତ ଆମ ମାନସିକତାରେ ଭିନ୍ନତା ରହିଥିବ ହୁଏତ ଆମ ମିଳନର କୌଣସି ମୂଲ୍ୟନାହିଁ ବା ତୃପ୍ତି ନାହିଁ ।' ଉଦୟ ପ୍ରତିକ୍ରୀୟା ବିହୀନ ହୋଇ ସେମିତି ଶୋଇ ରହିଥାଏ । ଦୁହିଁଙ୍କର ପରସ୍ପର ପ୍ରତି ଅନାଗ୍ରହ ପରେ ବି ରିନିତା ଦାମ୍ପତ୍ୟ କର୍ତ୍ତବ୍ୟକୁ ସମ୍ମାନ ଦେବାକୁ ଯାଇ ଉଦୟ ସହ ସ୍ୱାଭାବିକ କଥାବାର୍ତ୍ତା କରୁଥିଲା । କିନ୍ତୁ ଜୀବନର ଗୋଟିଏ ଅଭାବକୁ ରିନିତା ସ୍ପଷ୍ଟ ଭାବରେ ଅନୁଭବ କରିପାରୁଥିଲା ।

'ମୁଁ କ'ଣ କରିବି ମୋର ଆଦୌ ତୁମ ସହ ସେକ୍ସ କରିବାକୁ ଇଚ୍ଛା ହିଁ ହେଉନି ।'

ଏହା ପରେ ବି ଉଦୟ ଚୁପ୍ ଥିଲା । ରିନିତା ମାନସିକ ସ୍ତରରେ ଏକୁଟିଆ ଅନୁଭବ କରୁଥିଲା । ଉଦୟ ସହିତ ସେ ଯେତେ ଆନ୍ତରିକ ହେବାକୁ ଇଚ୍ଛା କରୁଥିଲେ ମଧ୍ୟ ସେମାନଙ୍କ ଭିତରେ ଥିବା ବିପରୀତ ମାନସିକତା ହେତୁ ଦୁହେଁ ଗୋଟିଏ ଛାତ ତଳେ ଥାଇ ମଧ୍ୟ ଏକା ଏକା ଅନୁଭବ କରୁଥିଲେ । କିନ୍ତୁ ପରିବାର ସମାଜ ଦାୟିତ୍ୱକୁ ନେଇ ଦୈନନ୍ଦିନ ଗୋଟିଏ ରୁଟିନ୍ ବନ୍ଧା ଜୀବନ ଭିତରେ ପଡିସାରିଥାଏ ରିନିତା । ବେଳେବେଳେ ରୁଟିନବନ୍ଧା ଜୀବନରୁ ମୁକୁଳିଆସି ନିଜ ଚିତ୍ରିତ ଦୁନିଆରେ ହଜିବାକୁ ଚେଷ୍ଟା କରେ ତେବେ ବି ଆଜି କାହିଁକି ରିନିତା ଖୁବ୍ ନିଃସଙ୍ଗ ଅନୁଭବ କରୁଥିଲା । ରିନିତା କାନ୍ଥ ଘଣ୍ଟା ଉପରେ ଦୃଷ୍ଟି ପକାଇଲା । ସକାଳ ଆଠଟା, ଆଉ ମାତ୍ର ଅଧଘଣ୍ଟା ପରେ ବିଦିଷାକୁ ସ୍କୁଲରେ ପହଞ୍ଚିବାକୁ ହେବ । ରିନିତା; ବିଦିଷାକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପ୍ରସ୍ତୁତ କରିଦିଏ । ଉଦୟ ବିଛଣା ଛାଡ଼ି ଝିଅକୁ ସ୍କୁଲରେ ଛାଡ଼ିବାକୁ ପ୍ରସ୍ତୁତ ହେଲା ।

ଏଥର ଘର ଭିତରେ ଏକୁଟିଆ ରିନିତା । ଦେହକୁ ଟିକିଏ ତାଜା କରିବା ଚେଷ୍ଟାରେ ସେ ଗରମ ଚା'ର ସାହାର୍ଯ୍ୟ ନେଲା । ତା'ପରେ ବି ଅସୁସ୍ଥ ଶରୀରରେ ରିନିତା ଏକାତ୍ମ ହୋଇଯାଉଥାଏ । ହଠାତ୍ କାହାର ଅନୁଭବରେ ସାମାନ୍ୟ ଅନ୍ୟମନସ୍କ ଥିବା ରିନିତା

ଇତସ୍ତତ ହୋଇପଡିଲା । ଉଦୟ ତ ଘରେ ନାହାନ୍ତି ତେବେ ଏ କାହାର ଛୁଆଁ... କିଏ ତାକୁ ବାହୁବନ୍ଧନରେ ଆବଦ୍ଧ କରିନେଉଛି...? ଓଠ ଉପରେ ହାଲୁକା ଅଙ୍ଗୁଳି ଚାଳନା କରୁଛି..., ଦେହରେ ଉଷ୍ମତା ଭରି ଦେଉଛି । ରିନିତା ପ୍ରକୃତିସ୍ଥ ହୁଏ, ସେ ଏ କ'ଣ ଭାବୁଛି ? ତା' ଭାବନାରେ ଏଭଳି ଦ୍ୱିତୀୟ ପୁରୁଷର ପ୍ରବେଶ କିପରି ସମ୍ଭବ ହେଉଛି ? ଗୋଟିଏ ଛାଇ ସତେ ଯେମିତି ତା'ଆଡକୁ ମାଡି ଆସୁଛି, ତାହା କେଉଁ ପ୍ରଜାତି ବା ବର୍ଗର ତାକୁ ସ୍ପଷ୍ଟ ଜଣା ନାହିଁ; ତେବେ ବି ସେହି ମଣିଷର ଛାଇ ତାକୁ ଏତେ ବିକଳ କରିପକାଉଛି କାହିଁକି ? ଏହା କୌଣସି ପୁରୁଷର ଛାଇ ନୁହେଁ ତ; ଭ୍ରମରେ ପାପ ମନେ କରି ସେ ସଙ୍ଗେ ସଙ୍ଗେ ପାଖରେ ଥିବା ଶିବଙ୍କ ମନ୍ଦିରକୁ ଯାଇ ଈଶ୍ୱରଙ୍କୁ ପ୍ରାର୍ଥନା କରିବାରେ ଲାଗିଲା । ଭଗବାନଙ୍କୁ ପ୍ରାର୍ଥନା କରେ ଏଭଳି ପାପ ତା' ମନକୁ ସ୍ପର୍ଶ ନ କରୁ । ଈଶ୍ୱରଙ୍କୁ ଅନୁନୟ ବିନୟ ହୋଇଛି, ଏଭଳି ଧାରଣା ନ ଆସୁ ତା' ମନକୁ । ଈଶ୍ୱରଙ୍କୁ ଏକନିଷ୍ଠ ଭାବରେ ଚାହିଁ ରହିଛି ସେ, ଧ୍ୟାନ କରିଛି, ମନରେ ଆଉ କୌଣସି ଶୋଚନା ନାହିଁ ତାକୁ ବିବ୍ରତ କରିବାକୁ । ରିନିତା ଈଶ୍ୱରଙ୍କର ଉଜ୍ଜ୍ୱଳ ବଳୟ ଭିତରକୁ ପଶି ପଶି ଯାଉଛି । ଏ ବଳୟ ଭିତରେ ନିଜକୁ ଖୁବ୍ ସୁରକ୍ଷିତ ମନେ କରୁଛି ସେ, ହାଲୁକା ହେଇ ଯାଉଛି; କିଛି ସମୟ ଆଗରୁ ଭାରି ଭାରି ଲାଗୁଥିବା ତା'ର ପାର୍ଥୀବ ଶରୀର । ଅପୂର୍ଣ୍ଣତାରୁ ସଂପୂର୍ଣ୍ଣତା ଆଡକୁ ପରିବର୍ତ୍ତନ ହେବାର ଅନୁଭବ ତା'ମଧ୍ୟରେ ଜାଗ୍ରତ ହେଉଛି । କେଉଁଠୁ ଏ ଶକ୍ତି ତା' ଭିତରେ ପ୍ରବେଶ କରି ତାକୁ ଏତେ ହାଲୁକା କରିପକାଉଛି ? ରିନିତା ଆଖି ଖୋଲିଲା; ମାତ୍ର ଗୋଟିଏ ମୁହୂର୍ତ୍ତ ତାକୁ କେତେ ଯୁଗର ସଂପୂର୍ଣ୍ଣତା ଦେଇଛି । ଘରକୁ ଫେରିଛି, ପୁନଶ୍ଚ ସେହି ଭାରାକ୍ରାନ୍ତ ମନ ତାକୁ ବିଚଳିତ କରିବାକୁ ଆରମ୍ଭ କରି ଦେଇଛନ୍ତି ।

ହଁ, ପୂର୍ବଦିନ ରିନିତା ଖବରକାଗଜରୁ ପଢ଼ିବାକୁ ପାଇଥିଲା ନାରୀ ଏକାଧିକ ପୁରୁଷଙ୍କ ସହ ସହବାସର ଇଚ୍ଛା ରଖେ । ଏହି ଆଲେଖ୍ୟକୁ ଉଦୟ ହିଁ ରିନିତାକୁ ପଢ଼ି ଶୁଣାଇଥିଲା । ପ୍ରକୃତରେ ଯଦି ଜୀବଜଗତର ପ୍ରତ୍ୟେକ ସ୍ତ୍ରୀ ଲିଙ୍ଗ ଏକାଧିକ ସଂପର୍କର କାମନା ରଖନ୍ତି ତେବେ ରିନିତାକୁ ଏହାର ସାମାନ୍ୟ ବି ଆଭାସ ବୟସର ଉତ୍ତରାର୍ଦ୍ଧ ପ୍ରବେଶ ସତ୍ୱେ ହୋଇନାହିଁ କାହିଁକି ?

ଏପରି ସବୁ ଚିନ୍ତାଧାରା ରିନିତାକୁ ଭାରାକ୍ରାନ୍ତ କରିଚାଲିଥାଏ । ଆଉ ଅଧିକ ଭାବନା ଭିତରେ ସେ ବୁଡି ନ ରହି ନିକଟସ୍ଥ ପାର୍କ ଆଡୁ ଟିକେ ବୁଲି ଆସିବାକୁ ସ୍ଥିର କଲା। ପାର୍କରେ ପହଞ୍ଚିବା ପୂର୍ବରୁ ସେ ଗୋଟିଏ ଦୃଶ୍ୟ ଦେଖିଲା; ତା' ସାମ୍ନାରେ ଜଣେ ପୁରୁଷ ଏବଂ ଜଣେସ୍ତ୍ରୀ ଖୁବ୍ ଖୁସୀ ଗପ କରି ହାତରେ ହାତ ଛନ୍ଦି ଯାଉଛନ୍ତି ସେମାନଙ୍କୁ ଦେଖିଲେ ମନେହୁଏ ସେମାନେ ଯେପରି ଗୋଟିଏ ଖୁସୀବାସିଆ ଦମ୍ପତି । ପାର୍କ ମଧ୍ୟକୁ ସ୍ୱାମୀ ଚାଲିଯିବାବେଳେ ସ୍ତ୍ରୀ ପାର୍କର ଗେଟ୍‌ଠାରୁ କିଛି ଆଗରେ ଅନ୍ୟ

ଜଣେ ପୁରୁଷ ବନ୍ଧୁ ସହ କିଛି କଥାବାର୍ତ୍ତା କରି ପୁନଷ୍ଚ ଫେରିଆସିଲେ ନିଜ ସ୍ୱାମୀ ପାଖକୁ ଯିଏ କି ପାର୍କର ଗୋଟିଏ ପାଖକୁ ବସି ସ୍ତ୍ରୀଙ୍କ ଫେରିବାକୁ ଅପେକ୍ଷା କରିଥିଲେ । ସ୍ତ୍ରୀ ଫେରିବା ପରେ ସ୍ୱାମୀ ନିଜ ବସିବା ସ୍ଥାନରୁ ଉଠିପଡିଲେ ଏବଂ ସେମାନେ ପାର୍କ ମଧ୍ୟରେ ବିଚରଣ କରିବାକୁ ଲାଗିଲେ, ସାଧାରଣ ଭାବରେ ସେମାନଙ୍କ ମଧ୍ଯରେ କଥୋପକଥନ ଚାଲିଥିଲା । ରିନିତା ପ୍ରକୃତିସ୍ଥ ହେଲା । ଦମ୍ପତିଙ୍କ ଉପରେ କ'ଣ  ସେ ଜାସୁସୀ  କରୁଛି । ଛି... , ମୋତେ ସେଥିରୁ କ'ଣ ମିଳିବ ଭାବି ପାର୍କର ଗୋଟିଏ କୋଣରେ ଯାଇ ବସିଗଲା । ଶୀତଳ ପବନ, ସବୁଜ ଘାସ, ମନୋରମ ପରିବେଶ ତାକୁ ବେଶ୍ ଶାନ୍ତି ପ୍ରଦାନ କରୁଥାନ୍ତି । ଭାରାକ୍ରାନ୍ତ ମନକୁ ଆଶ୍ୱସ୍ତ କରିବାକୁ ହୁଏତ ପାର୍କ ହିଁ ଗୋଟିଏ ଉଚିତ୍ ସ୍ଥାନ ଭାବି ରିନିତା ଚାରିଆଡକୁ ଥରେ ନଜର ବୁଲାଇଆଣିଲା ।

ରିନିତା ଦେଖିଲା ତା'ବସିଥିବା ସ୍ଥାନରୁ କିଛି ଦୂରରେ ଦୁଇଟି ଚଢ଼େଇ ପରସ୍ପର ସହିତ ଆଳାପରେ ବ୍ୟସ୍ତ ଅଛନ୍ତି। ସେମାନେ ଏକାଠି ଖାଉଥିଲେ ଏବଂ ଏକ ବୁଦା ଆଡ଼କୁ ଡେଇଁ ଡେଇଁ ଯାଉଥିଲେ । ପୁରୁଷ ପକ୍ଷୀଟି ବୁଦାର ଗୋଟିଏ ଆଡ଼କୁ ଗଲାବେଳେ ମାଈ ପକ୍ଷୀଟି ବୁଦାର ଅନ୍ୟ ପାଖକୁ ଚାଲି ଯାଉଥିଲା । ପୁରୁଷ ପକ୍ଷୀର ଦୃଷ୍ଟି ଆଢୁଆଳରେ ମାଈ ପକ୍ଷୀଟି ହଠାତ୍ ନିକଟସ୍ଥ ବଡ଼ଗଛ ତଳେ ବଢ଼ିଥିବା ବୁଦା ଓ ଛୋଟ ଗଛଲତା ଭିତରକୁ ଉଡ଼ିଗଲା ଏବଂ ସେଠାରେ ଲୁଚି ରହିଥିବା ଅନ୍ୟ ପୁରୁଷ ପକ୍ଷୀ ସହିତ ଠିକ୍ ସେହିପରି ହାବଭାବ ଦେଖାଇଲା ଯେମିତି ଟିକିଏ ଆଗରୁ ପ୍ରଥମ ପୁରୁଷ ପକ୍ଷୀ ସହିତ ଭାବଭଙ୍ଗୀ ଦେଖାଉଥିଲା । ଏହାପରେ ସେ ପୁଣି ନିଜର ପୂର୍ବ ସାଥୀ ପାଖକୁ ଆସି ଏପରି ଅଭିନୟ କଲା ଯେମିତି କିଛି ଘଟିନାହିଁ । ଏପରି ଦୁଇ ଦୁଇଟି ଘଟଣାରେ ରିନିତାର ଚେତନା ଉଦୟ ହେଲା । ରିନିତା ଏତେବେଳକୁ ନିଜ ବିବେକର ମାପକାଠିରେ ମାପି ନେଇସାରିଥିଲା ପାର୍କକୁ ଆସିବା ପୂର୍ବର ଦମ୍ପତି ଏବଂ ପାର୍କ ମଧ୍ୟରେ ଚଢ଼େଇ ଦମ୍ପତିଙ୍କର ଘଟଣା ଦ୍ୱୟ। କେବଳ ମଣିଷ ଯେ ତା'ର ଜୀବନସାଥୀକୁ ପ୍ରତାରିତ କରି ଅନ୍ୟ ସାଥୀ ବାଛେ ତାହାନୁହେଁ । ଏଇ ତ କିଛିଦିନ ପୂର୍ବରୁ ରିନିତା ଜୋଗ୍ରାଫିକ୍ ଚ୍ୟାନେଲ୍‌ରେ ବିଲୁଆମାନଙ୍କର ଏମିତି ଏକ ଘଟଣା ଦେଖିଥିଲା; ଦଳେ ପୁରୁଷ ବିଲୁଆଙ୍କ ସହ ଗୋଟିଏ ମାଈ ବିଲୁଆ ରହେ। ପୁରୁଷ ବିଲୁଆମାନେ ମାଈ ବିଲୁଆର ରକ୍ଷଣାବେକ୍ଷଣ ଦାୟିତ୍ୱ ନେଇଥାନ୍ତି। ସେହି ସମସ୍ତ ପୁରୁଷ ବିଲୁଆଙ୍କ ସହ ମାଈ ବିଲୁଆର ଯୌନ ସମ୍ବନ୍ଧ ରହିଥାଏ। ଗୋଟିଏ ରାତିରେ ଦଳ ମଧ୍ୟର କୌଣସି ପୁରୁଷ ବିଲୁଆ ସହ ନ ରହି ଅନ୍ୟ ଦଳରେ ମାଈ ବିଲୁଆଟି ରହିଗଲେ ତା'ପର ଦିନ ସକାଳୁ ମାଈ ବିଲୁଆ ପୂର୍ବ ପୁରୁଷ ଦଳଙ୍କ ପାଖକୁ ଫେରିଆସିବା ଏବଂ ସେମାନେ ତାକୁ ଜୀବନରେ ମାରିଦେବା ଘଟଣା। ଏହିସବୁ ଦୃଶ୍ୟ ଏବଂ ଘଟଣା ରିନିତାକୁ ଆଜି ସକାଳୁ ହିଁ ବ୍ୟସ୍ତବିବ୍ରତ କରୁଥିଲା।

ସମଗ୍ର ଜୀବ ଜଗତରେ କୌଣସି ପ୍ରାଣୀ  ମଧ୍ୟ ନିଜର ଜୀବନସାଥୀ ପ୍ରତି  ସର୍ବଦା ବିଶ୍ୱସ୍ତ ରହିନଥାନ୍ତି, ସୁଯୋଗ ପାଇଲେ ବା ଭିନ୍ନ ପରିବେଶରେ ସେମାନେ ଅନ୍ୟ ସାଥୀ ସହ ସାମୟିକ ସମ୍ପର୍କ ସ୍ଥାପନ କରିବାରେ କୌଣସି ଦ୍ୱିଧା ରଖନ୍ତିନାହିଁ । ତେବେ ଏପରି କାହିଁକି ଘଟେ ? ଏହି ପ୍ରଶ୍ନ ରିନିତା ମନରେ ବାରମ୍ବାର ପ୍ରତିଧ୍ୱନୀତ ହେଉଥିଲା । ସେ ଆଜିଯାଏଁ ଶୁଣିଥିଲା ଆଉ ଯାହା ଜାଣିଥିଲା ପୁରୁଷମାନେ ହିଁ ଏକାଧିକ ସ୍ତ୍ରୀ ସହ ସଂପର୍କ ରଖିବାର ଲାଳସାରେ ପରିବାର ପ୍ରତି ଅବହେଳା କରିଥାନ୍ତି । କିନ୍ତୁ ସେ ତ ଉଦୟକୁ ସେଥିପାଇଁ ଆଗରୁ ନିଃସର୍ତ୍ତ ଅନୁମତି ଦେଇସାରିଛି । ଉଦୟ ନିଜର ଶାରୀରିକ ଭୋକ ମେଣ୍ଟାଇବା ପାଇଁ ଯଦି ଇଚ୍ଛା କରେ ଯେକୌଣସି ସ୍ତ୍ରୀ ସହ ସଂପର୍କ ରଖିପାରିବ ଏଥିରେ କାହାର କ'ଣ ଦ୍ୱିଧା ଥାଇପାରେ କିନ୍ତୁ ରିନିତାର ପ୍ରତିବନ୍ଧକ ନାହିଁ ।

ରିନିତାର ଏଭଳି ସ୍ୱୀକୃତିରେ ଉଦୟ ଚକିତ ହୋଇ ଉତ୍ତର ଦେଲା, 'ପୃଥିବୀରେ ବୋଧେ ତୁମ ଭଳି ମାନସିକତାର ଦ୍ୱିତୀୟ ସ୍ତ୍ରୀଲୋକ କେହି ନଥିବେ । ପୃଥିବୀର ଯେକୌଣସି ସ୍ତ୍ରୀ ଦୁନିଆର ସବୁକିଛିକୁ ଅନ୍ୟ ସହ ଭାଗ ବାଣ୍ଟିପାରେ କିନ୍ତୁ ସ୍ୱାମୀକୁ ଭାଗ ବାଣ୍ଟିବାରେ ଦ୍ୱିଧା ନରଖିବାର ତୁମେ ବୋଧେ ପ୍ରଥମ ସ୍ତ୍ରୀ ।'

'ନା ତୁମେ ବୋଧେ ମୋତେ ଠିକ୍ ବୁଝି ପାରିଲନାହିଁ। ସେଇଥିପାଇ ତ ମୁଁ ବାରମ୍ବାର କହୁଛି ଆମ ଭିତରେ ଭାବିବା, ଅନୁଭବ କରିବାର ଶୈଳୀ ଭିନ୍ନ। ଆମେ ଦୁଇଜଣ ଏକଦମ୍ ଦୁଇଟା ଭିନ୍ନ ମାନସିକତାର ମଣିଷ । ହେଇପାରେ ଆମ ଦୁଇ ଜଣଙ୍କୁ ଯେ କେହି ଏକାଠି ଦେଖିବ ତା'ର ହୃଦବୋଧ ହେବ ଆମ ଦୁହିଁଙ୍କର ସାଂସାରିକ ଜୀବନ ଖୁବ୍ ସୁଖଶାନ୍ତିରେ କଟୁଥିବ; ଠିକ୍ ଗୋଟିଏ ରେଳଧାରଣା ପରି । ରେଳ ଧାରଣା ଦୁଇଟି ପରସ୍ପର ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ବ୍ୟବଧାନ ରଖିବାକୁ ବାଧ୍ୟ ହୁଅନ୍ତି ଏଇଥିପାଇଁ ଯେ ତା' ଉପରେ ରେଳଗାଡିଟି ଗଡିବାର ଅଛି । କିନ୍ତୁ ମୋ ପାଖରେ ଏପରି ପ୍ରଶ୍ନର କୌଣସି ଉତ୍ତର ନାହିଁ କେଉଁ ବାଧ୍ୟବାଧକତାରେ ଆମେ ମାନସିକ ସ୍ତରରେ ଏକ ନିର୍ଦ୍ଦିଷ୍ଟ ଦୂରତା ମଧ୍ୟରେ ରହିବାକୁ ଉଚିତ୍ ମନେ କରୁଛୁ।'

'ତା'ମାନେ ତୁମେ କହିବାକୁ ଚାହୁଁଛ ଯେ ତୁମ ମୋ ଭିତରେ ଭଲ ପାଇବା ନାହିଁ।'

'ଭଲ ପାଇବା ଅଛି ବୋଲି ତ ମୁଁ ଏକଥା କହୁଛି । ଏହା ଏପରି କହିବାର କାରଣ ମୁଁ ତୁମକୁ ଖୁବ୍ ଭଲ ପାଏ ଏବଂ ଏହା ତାହାର ଗୋଟିଏ ସ୍ପଷ୍ଟ ନିଦର୍ଶନ। ଜାଣ ଏଇଠି ହିଁ ତୁମର ଆଉ ମୋର ମାନସିକତାରେ ଭିନ୍ନତା ପ୍ରଦର୍ଶିତ ହେଉଛି । ବ୍ୟକ୍ତିକୁ ଶାରୀରିକ ସୁଖର ଆବଶ୍ୟକତା ଯେତିକି ରହିଛି ମାନସିକ ଶାନ୍ତିର ଆବଶ୍ୟକତା ତା'ଠାରୁ ଢ଼େର ଅଧିକ ରହିଛି। ମୁଁ ମାନସିକ ଶାନ୍ତିକୁ ଅଧିକ ଗୁରୁତ୍ୱ ଦିଏ ଆଉ ତୁମେ ଶାରୀରିକ ସୁଖକୁ ଅଧିକ। ତୁମ ଆଉ ମୋ ମଧ୍ୟରେ ଥିବା ଚିନ୍ତା ଧାରାର ଭିନ୍ନତା ମୋତେ ବାରମ୍ବାର

ତୁମ  ସହ ଶାରୀରିକ ସଂପର୍କ ରଖିବାକୁ ମାନସିକ ସ୍ତରରେ ଅନୁମତି ଦେଉନାହିଁ । ତୁମ ଶରୀରର ଗୋଟିଏ ଭୋକ ଅଛି ଆଉ ସେହି ଭୋକ ମେଣ୍ଟାଇବାର ସଂପୂର୍ଣ୍ଣ ଅଧିକାର ମଧ୍ୟ ତୁମର ଅଛି । ଯେତେବେଳେ ସେହି ଭୋକକୁ ଯଦି ମୁଁ ମେଣ୍ଟାଇ ପାରୁନାହିଁ ତାହାକୁ ପ୍ରତିରୋଧ କରିବାର ଅଧିକାର ମୋ ପାଖରେ ଆସିଲାବା କେଉଁଠୁ ? ମୁଁ କେବେ ଚାହିଁବିନି ତୁମେ ମୋ ପାଇଁ ନିଜ ଶରୀର କି ମନକୁ କଷ୍ଟ ଦିଅ । କାରଣ ମୁଁ ତୁମକୁ ଭଲ ପାଏ। ଏବେ ତୁମ ଉପରେ ନିର୍ଭର କରୁଛି ତୁମେ ତୁମ ମାନସିକତା ସହିତ ବୁଝାମଣା କରିବ ନା' ତୁମ ମାନସିକତା ସହିତ ଖାପଖାଉଥିବା ଆଉ ଗୋଟିଏ ଝିଅକୁ ଖୋଜିବୁଲିବ ।'

ଉଦୟର ମାନସିକତା ଏବଂ ପରିସ୍ଥିତିକୁ ବୁଝିପାରିବାର  ଅଭାବକୁ କେନ୍ଦ୍ର କରି ରିନିତା ଆଉ ଉଦୟକୁ ଶାରୀରିକ ସୁଖ ଦେଇନପାରିବା ସ୍ପଷ୍ଟ କହିଦେଇଛି । ରିନିତା ମାନସିକ ସ୍ତରରେ ସଂପର୍କକୁ ଦୃଢ଼ିଭୂତ କରିବାକୁ ଚାହୁଁଥିବାବେଳେ ଉଦୟ କିନ୍ତୁ ଶରୀରରେ କେବଳ ରିନିତା ସହିତ ଆବଦ୍ଧ ହେବାକୁ ଚାହୁଁଥିଲା । ଯାହା ଦୁହିଁଙ୍କ ମିଳନରେ ବ୍ୟାଘାତ ଆଣୁଥିଲା ।

ମିଳନ ସର୍ବଦା ଶାସ୍ୱତ । ସେଥିପାଇଁ ତ ଭଗବାନ ପ୍ରତିଟି ପୁରୁଷ ମଧ୍ୟରେ ଅଦୃଶ୍ୟ ଭାବରେ ଗୋଟିଏ ନାରୀ ଚରିତ୍ର ଏବଂ ପ୍ରତିଟି ନାରୀ ମଧ୍ୟରେ ଅଦୃଶ୍ୟ ଭାବରେ ଗୋଟିଏ ପୁରୁଷ ଚରିତ୍ରକୁ ଏଭଳି ଭାବରେ ସଂଯୋଗ କରି ରଖିଥାନ୍ତି ଯେପରି ପ୍ରତିଟି ମଣିଷ ନିଜକୁ ସ୍ୱୟଂ ସଂପୂର୍ଣ୍ଣ ମନେ କରିପାରିବ । ସେହି ଅଦୃଶ୍ୟ ପୁରୁଷ ଏବଂ ନାରୀ ମାନେ ସମୟ ସମୟରେ ମଣିଷକୁ ଚେତାଇ ଦେଇଥାନ୍ତି ସେମାନଙ୍କ ଭିତରେ ଥିବା ମଣିଷ ପଣିଆକୁ ଯାହାକି ସଂପର୍କରେ ବିଶ୍ୱାସ ଏବଂ ସମ୍ମାନକୁ ଦୃଢ଼ କରିବାରେ ସାହାର୍ଯ୍ୟ କରିଥାଏ ।

ନିଜକୁ ବିଶ୍ଳେଷଣ କରି ସେ ଯେତେବେଳେ ପୃଥିବୀର ଅନ୍ୟ ଜୀବମାନଙ୍କ ସଂପର୍କରେ ବିଶ୍ୱାସଘାତକତା କରିବାର ଦେଖେ ସେତେବେଳେ ସେ ଭାବେ ପ୍ରକୃତରେ ବିଶ୍ୱାସଘାତକତା କରୁଥିବା ସେହି ଜୀବଟି ତା'ନିଜ ସାଙ୍ଗରେ ହିଁ ବିଶ୍ୱାସଘାତକତା କରୁଥାଏ । ସେହି ଜୀବଟି ଯେତେବେଳେ ଅନ୍ୟ ପୁରୁଷ ବା ନାରୀ ସହିତ ଗୋପନରେ ସଂପର୍କ ସ୍ଥାପନ କରୁଛି ତା' ମଧ୍ୟରେ ଥିବା ଅଦୃଶ୍ୟ ପୁରୁଷ ବା ନାରୀ ପ୍ରତି ଅସମ୍ମାନ କରୁଛି ଏଥିରେ ଦ୍ୱିଧା ନାହିଁ। ସ୍ତୀର ଗୋପନରେ ଅନ୍ୟତ୍ର ସଂପର୍କ ରଖି ଉଦୟ ନିଜକୁ ନିଜେ ବିଶ୍ୱାସଘାତକତା କରୁବୋଲି ରିନିତା ଚାହୁଁନଥିଲା । କାହିଁକିନା ରିନିତା ଭିତରେ ଥିବା ସେହି ଅଦୃଶ୍ୟ ପୁରୁଷକୁ ନା ସେ ଅସମ୍ମାନ କରିପାରୁଥିଲା ନା ବିଶ୍ୱାସଘାତକ କରିବାର ସାହସ ତା'ପାଖରେ ଥିଲା ।

ଏଥର ରିନିତା ଘର ମୁହାଁ ହେଲା । ଝିଅକୁ ଖେଳକୁଦ ସାରି ହୋମଓ୍ୱାର୍କ କରିବାକୁ ତାଗିଦ୍ କଲା । କିଛି ସମୟ ପରେ ଉଦୟ ଅଫିସରୁ ଫେରିଆସିଲା ।

'ସକାଳୁ ଖୁବ୍ ଅସୁସ୍ଥ ମନେ ହେଉଥିଲ ଏବେ କେମିତି ଲାଗୁଛି ?'

ରିନିତା ଉଦୟର ପ୍ରଶ୍ନ ନଶୁଣି ରୋଷେଇ ଘରମୁହାଁ ହେଲା। ଦୁଇ କପ୍ ଚା' ସହିତ ରିନିତା ଏବଂ ଉଦୟ ଏକାଠି ବସିଲେ । ଉଦୟ ପୁଣି ପ୍ରଶ୍ନ କଲା, 'କ'ଣ କହିଲନି ଯେ, କିଛି ଖରାପ ଲାଗୁଛି ?'

'ନା, ଆଜି ମୋ ମନରେ ଅନେକ ପ୍ରଶ୍ନ ମୋତେ ବିଚଳିତ କରୁଛି । ମୁଁ ବୁଝିପାରୁନାହିଁ ଏସବୁ କ'ଣ ସମ୍ଭବ ?'

'କେଉଁ କଥା ?' ରିନିତା ଦିନ ତମାମ ଘାଣ୍ଟି ହେଉଥିବା ସେହି ସମସ୍ତ ପ୍ରଶ୍ନକୁ ଉଦୟ ସାମ୍ନାରେ ଗୋଟିଗୋଟି କରି ରଖିଛି । ଉଦୟ ସାମାନ୍ୟ ହସିଦେଇ କହେ- ଏଇ ସାଧାରଣ କଥାଟିଏ ଜାଣିପାରୁନ ?'

'ସାଧାରଣ !'

'ହଁ ରିନିତା, ସାଧାରଣ । ନିଜ ଜୀବନସାଥୀଠାରୁ ପୂର୍ଣ୍ଣତୃପ୍ତି ନପାଇବା ଏବଂ କୌଣସି କାମଧାମରେ ମନ ନଦେଇ ଖାଲି ହୋଇ ବସିରହିଲେ ନାରୀ ଭିତରର ଯୌନ ଜନିତ ଭୋକଟି ଉଗ୍ରରୂପ ଧାରଣ କରେ । ଏଇଟା ତ ଅତି ସାଧାରଣ କଥା । ଆଉ ତୁମେ ଯେଉଁ ଭିନ୍ନ ମାନସିକତାର କଥା କହୁଛ ତୁମ ପାଇଁ ତ ଅତି ସାଧାରଣ।

ଗୋଟିଏ ପୁରୁଷ ଏବଂ ଗୋଟିଏ ସ୍ତ୍ରୀ ମିଳନରେ ଜୀବନ ହୁଏ ସଂପୂର୍ଣ୍ଣ; ରିନିତା ଏହା ଜାଣିଥିଲା । ସେପରି ସଂପୂର୍ଣ୍ଣତା ସେ ତା' ଜୀବନରେ ବହୁବାର ଅନୁଭବ କରିସାରିଛି ତା' ଭିତରେ ଥିବା ସେହି ଅଦୃଶ୍ୟ ସାଙ୍ଗରେ। ତେବେ ସେହି ସଂପୂର୍ଣ୍ଣତା ଉଦୟ ସହିତ ଆସୁନାହିଁ କାହିଁକି ? ଗୋଟିଏ ପ୍ରଶ୍ନର ଉତ୍ତରକୁ ଖୋଜିବାକୁ ଯାଇ ସେ ଆପେ ଆପେ ଆଉ ଗୋଟିଏ ପ୍ରଶ୍ନରେ ଛନ୍ଦି ହୋଇଯାଉଛି । ରିନିତା ଉଦୟକୁ ଆଉ କିଛି ପ୍ରଶ୍ନ କରିବାର ଚିନ୍ତା କରୁ କରୁ ବାହାରୁ ଟିକେ ବୁଲି ଆସୁଛି କହି ଉଦୟ ଘରୁ ବାହାରିଯାଇଛି । ରିନିତାର ଭାରିପଣ ପ୍ରତିମୁହୂର୍ତ୍ତରେ ବଢ଼ି ବଢ଼ି ଚାଲିଥାଏ। ତଥାପି ସେସବୁ ଭିତରୁ ବାହାରି ଆସି ସେ ତାର କର୍ତ୍ତବ୍ୟରେ ମନ ଦେଲା । ବିଦିଷାକୁ କିଛି ସମୟ ପାଠପଢ଼ାଇବା ପରେ ସେ ରାତ୍ରି ଭୋଜନ ପାଇଁ ରୋଷେଇ ଘରକୁ ପଶିଗଲା । ରୋଷେଇ କରୁଥିବା ସମୟରେ ତାକୁ ଅନ୍ୟ କୌଣସି ଭାବନା ବିବ୍ରତ କରେନା । ରୋଷେଇ ଶେଷ ହେବା ବେଳକୁ ବିଦିଷା ଖାଇବା ବାଢ଼ିବାକୁ କହିଲା । ବିଦିଷାକୁ ଖୁଆଇସାରି ଶୁଆଇଲା ବେଳକୁ ସମୟ ରାତି ଦଶଟା । ଉଦୟ ଏଯାଏଁ ଘରକୁ ଫେରିନାହିଁ । ରିନିତା ପୁନଶ୍ଚ ଏକୁଟିଆ ହୋଇଗଲା, ତା'ର ଏହି ଏକୁଟିଆ ବେଳର ଚିନ୍ତନମାନେ ତାକୁ ବ୍ୟତିବ୍ୟସ୍ତ କରନ୍ତି, ବିଭ୍ରାନ୍ତ କରନ୍ତି, ସାମାଜିକ ଗୋଠରୁ ନିବୃତ୍ତ ହେବାକୁ ପ୍ରସ୍ତୁତ କରନ୍ତି ।

ରିନିତା ପୁଣି ଆବଦ୍ଧ ହୋଇଯାଉଛି କାହା ବାହୁବନ୍ଧନରେ, ତା’ ଓଠ ଉପରେ ଓଠର ଉଷ୍ମ ସ୍ପର୍ଶ, ପାପୁଲି ଦ୍ୱୟ ଆବଦ୍ଧ ହୋଇଯାଉଛନ୍ତି ଅନ୍ୟ କାହା ପାପୁଲି ମଧ୍ୟରେ । ଶରୀରରେ ଭିନ୍ନ ରୋମାଞ୍ଚ, ଭିନ୍ନ ଶିହରଣ । ସତେ ଅବା ଜୀବନରେ ଏପରି ସ୍ପର୍ଶର ଅନୁଭବ ସେ କେବେ ପାଇନାହିଁ।

ଅନ୍ୱେଷିତା ଏବଂ ରୋହିତଙ୍କର ପ୍ରତିଛବି ରିନିତାର ଦୃଷ୍ଟି ପଟଳରେ । ଏତେଦିନ ଅନ୍ୱେଷିତା ଥିଲା କେଉଁଠି, ଆଉ ଆଜି ଏକାବେଳକେ ତାକୁ ମାଡ଼ିବସିଛି ମନରେ, ଦେହରେ, ଆଖିରେ, ଓଠରେ । ଅନ୍ୱେଷିତା ରିନିତାର ପିଲାଦିନର ସାଥୀ। ଦୁହେଁ ଏକାଠି କେତେ ଧୂଳି ଖେଳ ଖେଳିଛନ୍ତି, ସ୍କୁଲ ଜୀବନ ସେମାନଙ୍କ ଏକାଠି ହୋଇଥିଲେ ବି କଲେଜକୁ ଆସିବାବେଳକୁ ଅନ୍ୱେଷିତାର ବାପାଙ୍କ ବଦଳି ହୁଏ ଏବଂ ତା’ପରଠାରୁ ଦୁହିଁଙ୍କର ସାକ୍ଷାତ ନାହିଁ । ଆଉ ରୋହିତଙ୍କ ଯାହା ସହିତ ଏତେ ଅଳ୍ପ ଦିନର ପରିଚୟ କିନ୍ତୁ ରୋହିତଙ୍କ ସହିତ କଥାବାର୍ତ୍ତା କଲାବେଳେ ରିନିତା ଜୀବନର ପ୍ରକୃତ ମୂଲ୍ୟବୋଧ, ଦର୍ଶନ ଆଦିକୁ ଉପଲବ୍ଧି କରିପାରେ । ରିନିତା ମାନସିକ ସ୍ତରରେ ବାସ୍ତବତାକୁ ଯେତିକି ସହଜ ଭାବରେ ଆଦରି ପାରୁଥାଏ ଉଦୟ ସହିତ ସୂକ୍ଷ୍ମ ମାନସିକତାକୁ ନେଇ ଅନେକ ବେଳରେ ମତପାର୍ଥକ୍ୟ ହୁଏ । ତେବେ; କ’ଣ ଅନ୍ୱେଷିତା ଓ ରୋହିତଙ୍କର ସ୍ପର୍ଶରେ ସେ ଆଜି ଏତେ ଭିଜିଛି ? କେତେବେଳେ ଅନ୍ୱେଷିତା ତ ଆଉ କେତେବେଳେ ରୋହିତଙ୍କ ତା’ଭିତରେ ପଶି ତାକୁ ଆଣିଦେଉଛନ୍ତି ପୂର୍ଣ୍ଣତା । ଏ କିପରି ସମ୍ଭବ ଗୋଟିଏ ଶରୀର ଏବଂ ଗୋଟିଏ ମନ ଭିତରେ ? କିନ୍ତୁ ଏହା ହେଉଛି ସତ୍ୟ । ରିନିତାର ଭାରାକ୍ରାନ୍ତ ମନ, ହୃଦୟ ହାଲୁକା ହୋଇଯାଉଛି । ନିଜକୁ ଖୁବ୍ ମୁକ୍ତ, ସୁସ୍ଥ ଏବଂ ସଂପୂର୍ଣ୍ଣ ମନେ କରୁଛି ରିନିତା । ତେବେ ଏ ପୂର୍ଣ୍ଣତା ଆସୁଛି କେଉଁଠୁ ! ତେବେ କ’ଣ ସେ ଏ ଯାଏଁ ଥିଲା ଅସଂପୂର୍ଣ୍ଣ ଆଉ ଅର୍ଦ୍ଧେକ ?

ଏତେବେଳକୁ କାନ୍ଥରେ ଝୁଲୁ ଥିବା ଶିବଙ୍କର ଅର୍ଦ୍ଧନାରୀଶ୍ୱରର ଚିତ୍ର ଉପରେ ରିନିତାର ଦୃଷ୍ଟିପଡିଲା । କ୍ୟାଲେଣ୍ଡରରେ ଥିବା ଏହି ଫଟୋ ଚିତ୍ରକୁ ପୂର୍ବରୁ ଅନେକଥର ସେ ଦେଖିଛି। ତେବେ ଶିବଙ୍କର ଅର୍ଦ୍ଧନାରୀଶ୍ୱର ଚିତ୍ରର ପ୍ରକୃତ ଉଦ୍ଦେଶ୍ୟକୁ ସେ ଏବେ ଠିକ୍ ଭାବରେ ଅନୁଭବ କରିପାରୁଛି।



*(ନବଲିପି, ପ୍ରଜାତନ୍ତ୍ର ସାପ୍ତାହିକୀ)*

# ଭିନ୍ନ ଚିନ୍ତନ

ରାଜେନ୍ଦ୍ରର ବାରମ୍ବାର ଖରାପ ଶବ୍ଦଗୁଡ଼ିକର ପ୍ରୟୋଗରେ ଅସୀମା ଖୁବ୍ କ୍ଷତାକ୍ତ ହୋଇସାରିଥାଏ । ତା' ଚାରିପାଖରେ କେବଳ ମିଥ୍ୟାଚାରୀ ଓ ଠକଙ୍କର ଆତଯାତ; ତେବେ ବ୍ରଜେଶକୁ ଠକ କହି ରାଗିଛି କାହିଁକି ? ଆଜି ଅସୀମାର ଏହି ସଫଳତାରେ ବ୍ରଜେଶ୍ ଖୁବ୍ ଖୁସୀ ହୋଇଥାନ୍ତା । ସବୁବେଳେ ଅସୀମାର ଉନ୍ନତି, ଇଚ୍ଛା, ଆଗ୍ରହକୁ ସମ୍ମାନ ଦେଇଛି ବ୍ରଜେଶ । ଅସୀମାଠାରୁ କାଳେ ଦୂରେଇଯିବ ଏହି ଭୟରେ ସେ ଅସୀମା ପାଖରେ କହିଥିଲା ମାତ୍ର ଗୋଟିଏ ମିଛ, ଯାହାକି ସତକୁ ସତ ତା'ଠାରୁ ଅସୀମାକୁ ଦୂରେଇ ଦେଇଥିଲା ପରବର୍ତ୍ତି ସମୟରେ । ରାଜେନ୍ଦ୍ର ସହ ବିବାହର ନଅବର୍ଷ ପରେ ସେ ଏବେ ଠିକ ବୁଝିପାରୁଥିଲା ସଂସାର ହିଁ ମିଥ୍ୟା ତେବେ ଆଉ ବ୍ରଜେଶକୁ ତିରସ୍କାରର କୌଣସି ପ୍ରୟୋଜନ ନଥିଲା ।

ରାଜେନ୍ଦ୍ର ଅସୀମାକୁ ଥରେ ପ୍ରଶ୍ନ କଲା, 'ଅସୀମା; ବ୍ରଜେଶ ସହ କ'ଣ ବିବାହ ପରେ କେବେ ବି ଥରେ ଦେଖା ହୋଇନି ?' ସତରେ କ'ଣ ବ୍ରଜେଶକୁ ଅସୀମା ଭୁଲିଯାଇଛି, ବ୍ରଜେଶର ଭୁଲ ପାଇଁ ଅସୀମା କ'ଣ ଆଜି ପର୍ଯ୍ୟନ୍ତ ତାକୁ କ୍ଷମା କରିନି ? ଗୋଟିଏ ମିଛ ପାଇଁ କ'ଣ ସଂପର୍କ ମଧ୍ୟରେ ଏତେ ବଡ ଫାଟ ସୃଷ୍ଟି ହୋଇପାରେ ? ଏସବୁ ପ୍ରଶ୍ନ ରାଜେନ୍ଦ୍ରକୁ ଆଶଙ୍କା ଆଉ ସନ୍ଦେହ ଭିତରକୁ ବାରମ୍ବାର ଟାଣି ନେଉଥିଲା । ଯାହା କୁହ ଅସୀମା ତୁମେ ବ୍ରଜେଶକୁ କ୍ଷମା କରିଦେବା ଉଚିତ୍ ।'

ଅସୀମା ଏଥର ଫୋନ୍ ଉଠାଇଲା, ସେ ନିଶ୍ଚୟ ଆଜି ବ୍ରଜେଶକୁ ଫୋନ୍ କରିବ । ବୁଝିବ ସେ କିପରି ଅଛି ? ବହୁବାର ଚେଷ୍ଟା କରିବା ପରେ ମନରେ ସାହସ ଯୁଟାଇ

ସେ ବ୍ରଜେଶର ନମ୍ବରକୁ ଡାଏଲ କଲା । ଅପରପକ୍ଷରୁ ବ୍ରଜେଶର ହ୍ୟାଲୋ ଶୁଣି ଅସୀମା ପ୍ରଶ୍ନ କଲା–

'ବ୍ରଜେଶବାବୁ କହୁଛନ୍ତି ?'

'ହେଲୋ, କିଏ ?'

'ଆପଣ ବ୍ରଜେଶବାବୁ କହୁଛନ୍ତି ?'

'ହଁ କହୁଛି, କିଏ ? କିଏ ?'

'ଓଃ... ସରି।' କହି ଅସୀମା ଫୋନ୍ କାଟି ଦେଲା । ମନରେ ଅଜସ୍ର ଶଙ୍କା ବ୍ରଜେଶକୁ ଫୋନ୍ କରି କିଛି ଭୁଲ୍ କରିନି ତ ! ଯଦି ସେ ପୁଣି ତା' ଜୀବନରେ ଝଡ଼ ସୃଷ୍ଟି କରିଦେବ ? ଆଶଙ୍କା ଭିତରେ ଅସୀମା । ଏତିକିବେଳେ ଅସୀମାର ଫୋନ୍ ପୁଣି ବାଜିଉଠିଲା, ସେହି ନମ୍ବରରୁ...

'ହ୍ୟାଲୋ ।'

'ଅସୀମା।'

'ଏବେ ଚିହ୍ନିପାରିଲ ?'

'କେମିତି ଅଛ ଅସୀମା ?'

'ହଁ ଭଲ ଅଛି ।'

'ଆଉ ତୁମ ପୁଅ ।'

'ଭଲ ଅଛି, ଏବେ ତ ସେ ସ୍କୁଲ ବି ଗଲାଣି ।'

'କାଲିପରି ଲାଗୁଛି ଅସୀମା, ପୁଅ ଏହାରି ଭିତରେ ଏତେ ବଡ ହୋଇଗଲାଣି ?'

'---' ସଂପୂର୍ଣ୍ଣ ଚୁପ୍ ରହେ ଅସୀମା ।

'ଆଜି କେମିତି ମନେ ପଡ଼ିଲି, ଏତେବର୍ଷ ପରେ ?'

'କେମିତି ଅଛ ?'

'ହଁ ବଞ୍ଚିଛି ।'

'ବାପା, ବୋଉ, ଲିମା କେମିତି ଅଛନ୍ତି ?'

'ହଁ... ।'

'ତମ ପିଲାମାନେ ଭଲ ଅଛନ୍ତି ?'

'ବୁଲିନା ଚାକିରୀ କଲାଣି ଜାଣ । ସେ ଆଜି ବି ତମ କଥା ମୋତେ ପଚାରେ । ତମେ ତାକୁ ଦେଇଥିବା ଜେରୁକୁ ସେ ଖୁବ୍ ଯତ୍ନରେ ପାଳିଥିଲା । ବର୍ଷେ ହେଲା ସେ ମରିଗଲା ।'

'କେମିତି ?'

'ନାଁ କିଛି ରୋଗରେ ନୁହେଁ ବୟସ ହୋଇଯାଇଥିଲା । କୁକୁରମାନେତ ବାର/ତେର ବର୍ଷ ହିଁ ବଞ୍ଚନ୍ତି।'

ଗତ ଦଶହରାରେ ତମକୁ ଦେଖି ଖୁବ୍ ଖୁସୀ ଲାଗିଥିଲା । ବେଶ୍ ସୁସ୍ଥ ଏବଂ ଖୁସୀ ଥିବା ଜଣାପଡୁଥିଲ । ତମେ କିନ୍ତୁ ମୋତେ ଦେଖି କିଛି ନକହି ଚାଲିଗଲ । ଜାଣ, ମୋର ସେତେବେଳେ ମୃତ୍ୟୁ ଘଟିଲା ପରି ଲାଗିଲା । ମୋର ଶେଷ ଆଶା ଟିକକ ବି ଧୂଳିସାତ୍ ହୋଇଗଲା ଯେ ତମେ ମୋତେ ଏମିତି ମୁହଁମୋଡ଼ି ଚାଲିଯିବ ଭାବି ନଥିଲି, ତମଠୁଁ ଫୋନ୍ ଆଦୌ ଆଶା କରିନଥିଲି । ଆଜି ତମ ଫୋନ୍ ପାଇ ସତରେ ମୁଁ ଖୁବ୍ ଖୁସି । ଯାହାହେଉ ତମେ ମୋତେ ଭୁଲିଯାଇନ । ସମସ୍ତେ ମୋତେ ଛାଡ଼ି ଚାଲିଗଲେ ।"

'ମିଛକୁ ଯେତେବେଳେ ନିଜର କରିଥିଲ କେମିତି ବା ଆଉ ଅନ୍ୟମାନଙ୍କଠାରୁ ନିଜପଣର ଆଶା କରିଥିଲ ?'

'ନା' ଅସୀମା ତମେ ମୋତେ ଭୁଲ୍ ବୁଝିଛ ।'

'ଛାଡ଼, ସେସବୁକୁ ଆଉ ମୁଁ ପୁଣି ଠିକ୍ ବୁଝିବାକୁ ଚାହୁଁନି ହଁ ଆଜି ତମକଥା ରାଜେନ୍ଦ୍ର ପଚାରୁଥିଲେ ।'

'ଓଃ ସେଥିପାଇଁ ତେବେ ମୁଁ ମନେ ପଡ଼ିଗଲି ।'

'ନା, କେତେବେଳେ କେମିତି ମନେ ପଡ଼ିଛ  କିନ୍ତୁ ....।'

'ତେବେ ମୋ ସହ କଥାହେବା ବନ୍ଦ କରିଦେଲ କାହିଁକି, ଜାଣ ତମ ସହ ପଦେ କଥା ହେବାକୁ କେତେ ଜଣଙ୍କୁ ତମ ଫୋନ୍ ନମ୍ବର ମାଗିଛି । ଟିକିନାକୁ ବି କହିଲି, ସେ କ'ଣ କହିଲା ଜାଣ, "ଅପା ମନା କରିଛି ତା' ନମ୍ବର ଆପଣଙ୍କୁ ଦେବାକୁ ।'

'ହୁଁ ମୋ ନମ୍ବର ଆଉ ତମେ ଖୋଜି ପାଇଲନି, ତମେ ପରା ବାଘ ଛାତିରୁ କଲିଜା କାଢ଼ିନେଇ ପାରିବା ଲୋକ ।'

'ହଁ, ସେଥିପାଇଁ ତ ଦେଖ ଏତେବର୍ଷ ଧରି ତମର ଆପଣ ସମ୍ବୋଧନ ଆଜି ତମେରେ ବଦଳି ଯାଇଛି ।'

'ଓଃ ... ମୋର ଭୁଲ ହୋଇଗଲା ।'

'ନା, କିଛି ଭୁଲ ହେଇନି, ତମକୁ କେତେଥର କହିଥିଲି, ଆପଣ ନକହି ତମେ କହିବାକୁ, ତମଦେଇ କିନ୍ତୁ ତା' ହଉନଥିଲା ।'

'ହଁ, ଯେଉଁଥି ପାଇଁ ଫୋନ୍ କଲି ତା' ଏଯାଏଁ କହିପାରିଲିନି ।'

'କ'ଣ କାମ ଅଛି, କୁହ ମୋତେ ନିର୍ଦ୍ଦ୍ୱନ୍ଦ୍ୱରେ, ତମ ପାଇଁ କିଛି କଲେ ମୁଁ ଖୁସୀ ହେବି। କୁହ କ'ଣ କାମ ଅଛି ?'

'ଜୀବନରେ ଯେତିକି ଋଣୀ ରହିଛି ତୁମର ତା'ତ ଏଯାଏଁ ସୁଝିପାରିନି  କି ପାରିବିନି ତା' ଉପରେ ପୁଣି ଋଣୀ କରିବାକୁ ଚାହୁଁଛ ?'

'ନା, ନା, ତମେ କାହିଁକି ଋଣୀ ହେବ ମୋର ।'

'ହଁ, ତମ ପାଇଁ ତ ଆଜି ମୋର ଏହି ଯଶ ଖ୍ୟାତି । ଜାଣ ଏଇ ନିକଟରେ ମୋର ପ୍ରାପ୍ତ ସମ୍ମାନ ଯେଉଁଥିରେ ଖୁସୀ ହୋଇଥିଲେ ମୋ ବାପା କିମ୍ବା ତମେ ହିଁ ହେବ । ମନେ ଅଛି ତମର; ବାପାଙ୍କୁ ଥରେ ଗୋଟିଏ ପତ୍ରିକା ଦେଖାଇ କହିଥିଲ, 'ଅସୀମାକୁ ମଉସା ଏହି ପୃଷ୍ଠାରେ ଦେଖିବାକୁ ଚାହୁଁଛି, ଆଉ ତାହା ଆମ ଅସୀମା ନିଶ୍ଚୟ କରିବ ।' ଆଜି ତମର ସେହି ସ୍ୱପ୍ନ ପୂରଣ ହୋଇଛି । ହଁ ତମର ସ୍ୱପ୍ନକୁ ପୂରଣ କରିବି ବୋଲି ନୁହେଁ ତୁମ ରୋପିତ ବିଜର ଆଜି ଏହି ଫଳିତ ରୂପ । ତା'ର ଶ୍ରେୟ କେବଳ ତୁମର ।'

'ହଁ ଅସୀମା ମୁଁ ଜାଣିଛି ଆଉ ଦେଖିସାରିଛି । ମୁଁ  ତୁମ ଜୀବନର ପ୍ରତ୍ୟେକ ପାହାଚର ଖବର ରଖିଛି । ତୁମେ ଯେଉଁଦିନ ଓଡିଶାର ଶ୍ରେଷ୍ଠ ସ୍ତମ୍ଭକାର ଭାବରେ ସମ୍ମାନିତ ହେଉଥିଲ ତା' ଦୁଇଦିନ ପୂର୍ବରୁ ଖବରକାଗଜରୁ ମୁଁ ପଢ଼ି ଖୁସୀ ହୋଇଥିଲି ଆଉ ତୁମେ ସମ୍ମାନ ପାଉଥିବାବେଳେ ଯେଉଁ ତାଳିର ବର୍ଷଣ ହେଉଥିଲା ସବାଶେଷ ଧାଡ଼ିରେ ରହି ସେହି ହଲର ସବୁ ଲୋକଙ୍କଠାରୁ ବୋଧହୁଏ ମୁଁ  ହିଁ ବେଶୀ ଯୋରରେ ଆଉ ବେଶୀ ସମୟ ଯାଏଁ ତାଳି ମାରିଥିଲି । ମୁଁ କହି ପାରିବିନି ମୋ ତାଳିର ଶବ୍ଦ ତୁମ ପାଖରେ ପହଞ୍ଚି ପାରିଥିଲା କି ନାଇ ?'

'ମୋତେ ଦେଖା କଲନି କାହିଁକି ?'

'ତମ ସହ ତମ ପରିବାର, ତମ ସ୍ୱାମୀ ଥିଲେ । ଏମିତି ବି ଗତ ଦଶହରାରେ ଶେଷଥର ଦେଖା ହେବାରେ ତମେ ମୋ ସହ କଥା ହେବାକୁ ନ ଚାହିଁବା ସ୍ପଷ୍ଟ ବାରିପାରିଥିଲି । ଏଣୁ ତୁମେ ସମ୍ମାନିତ ହେବା ପରେ ସେହିଦିନ ରାତିରେ ହିଁ ମୁଁ ଫେରିଆସିଲି ।'

'ମୋ ପାରିବାରିକ ଜୀବନ ସଂପର୍କରେ ଥରେ ବି ପଚାରିଲନି ।' ଅସୀମା କୋହକୁ ଚାପି ବ୍ରଜେଶକୁ ଏହା କହିଥିଲା ।

'ମୁଁ ଜାଣେ ତୁମେ ଖୁବ୍ ଭଲରେ ଥିବ । ତୁମର ଖୁସୀରେ ହିଁ ମୋର ଖୁସୀ । ମୋର କୌଣସି କଥା ଯଦି ତୁମକୁ କଷ୍ଟ ଦେଉଥିଲା ଅତୀତରେ ତେବେ ତାହା ସ୍ପଷ୍ଟ କହିଦେଇ ପାରିଥାନ୍ତ କି ପଚାରିପାରିଥାନ୍ତ, ତୁମେ କିନ୍ତୁ ସେସବୁ ନ କରି ଏକଦମ୍ ଚୁପ୍ ରହିଗଲ ।'

'---' ଅସୀମା ପୁଣି ଚୁପ ରହେ ।

ବ୍ରଜେଶ କହିଚାଲିଲା, 'ହଁ ମୁଁ ତୁମକୁ ଭଲପାଏ, ଭଲ ପାଉଛି, ଭଲ ପାଉଥିବି । ଭଲପାଇବା କ'ଣ ଦୋଷ ନା ପାପ ? ଆଜି ବି ମୁଁ କହୁଛି ତୁମକୁ ଅସୀମା, ତୁମର ଯାହା କାମ ଥିବ ମୋତେ ବିନା ଦ୍ୱିଧାରେ କହିବ ।'

'ବାପାଙ୍କ ମୃତ୍ୟୁ ଖବର କ'ଣ ପାଇନ ?'

'ମୁଁ ହିଁ, ମଉସାଙ୍କୁ ଡାକ୍ତରଖାନାକୁ ନେଇଯାଇଥିଲି । ସେଇଠି ଆମେ ସାଙ୍ଗମାନେ କଥା ହେଉଥିଲୁ, ଅଳ୍ପ ଦୂରରେ ମଉସା ଅନ୍ୟ ଜଣଙ୍କ ସହ କଥାବାର୍ତ୍ତା କରୁଥିବାବେଳେ ହଠାତ୍ ପଡ଼ିଗଲେ, କ'ଣ ହେଲା କହି ଆମେ ସମସ୍ତେ ଦୌଡି ଗଲାବେଳକୁ ସେ ଚେତାଶୂନ୍ୟ ହୋଇ ସାରିଥିଲେ । ଡାକ୍ତରଖାନା ପହଞ୍ଚିଲାବେଳକୁ ସବୁ ଶେଷ ହୋଇଯାଇଥିଲା ।'

'ହଉ ବହୁତ ସମୟ କଥା ହେଲିଣି, ରହୁଛି ।'

'ଆଗକୁ ଯାହା ଦରକାର ହେବ କହିବ, ଏଠି ଲୋକମାନେ ଅନର୍ଥ କରିପାରନ୍ତି ସେଥିରୁ ହୁଏତ ତୁମ ସ୍ୱାମୀ ମଧ୍ୟ ବାଦ୍‌ଯାଇ ନପାରନ୍ତି ଏଣୁ ମୁଁ ଫୋନ କରିପାରିବିନି; ଆଗକୁ ତୁମ ଫୋନର ଅପେକ୍ଷାରେ ରହୁଛି ।'

ଆନନ୍ଦ ବିଭୋର ହୋଇଯାଉଥିଲା ବ୍ରଜେଶ । ଦୀର୍ଘଦିନର ଅପେକ୍ଷାରତ ସ୍ୱରକୁ ଶୁଣି ତା' ପାଦ ତଳେ ଲାଗୁନଥିଲା । ଅସୀମା ଫୋନ୍ ରଖିବା ପରେ ପୁଣି ବ୍ରଜେଶ ଫୋନ୍ କଲା। ଅସୀମା ଫୋନ୍ ରିସିଭ୍ କରୁ କରୁ 'ନା, ମନ ବୁଝିଲାନି ଏଣୁ ପୁଣି ଫୋନ୍ କରିଦେଲି, ବିଶ୍ୱାସ ବି ହେଉନି ତୁମ ସହ ଆଜି କଥା ହୋଇଛି ବୋଲି ହଉ ରହୁଛି ଏଥର ମୁଁ ଜାଣିଲି ତୁମ ସହ ହିଁ କଥା ହୋଇଛି ।'

'ଓକେ, ବାଏ .... ।'

ବ୍ରଜେଶ ଆନନ୍ଦରେ ବିଭୋର ହେଉଥିବାବେଳେ ଅସୀମା କିନ୍ତୁ ସେଭଳି କିଛି ଖୁସୀର ଅନୁଭବ କରିପାରୁନଥିଲା । ତେବେ କ'ଣ ଅସୀମାର ସମସ୍ତ ଖୁସୀ ରାଜେନ୍ଦ୍ର ପାଖରେ ହିଁ ଶେଷ ହୋଇଯାଇଛି ?

ରାଜେନ୍ଦ୍ର ସହିତ ଯେତେଥର ଚିନ୍ତା କରିଛି ଖୁସୀ ଆଉ ସୁଖକୁ ଅନୁଭବ କରିବାକୁ ସେତେ ଅଧିକ ଭାବରେ ରାଜେନ୍ଦ୍ରଠାରୁ ସେ ପାଇଛି ବାରମ୍ବାର ଦୁଃଖ ଓ ପ୍ରତାରଣା। ଦୁଃଖୀ ମନକୁ କେତେ ବାହାନାରେ ବୁଝାଇଛି ଅସୀମା; ତଥାପି ତେବେ ବି ବାରମ୍ବାର ତା'ର ଆଶ୍ୱାସନାର ମୃତ୍ୟୁ ଘଟେ ରାଜେନ୍ଦ୍ରର କଟାକ୍ଷରେ ।

ସ୍ୱାମୀ ଏବଂ ପରିବାର ସହ ଯେଉଁ ଖୁସୀ ଚାହିଁଥିଲା ଅସୀମା, ସବୁ ପାଣି ଫୋଟକା ପରି ମିଳାଇଗଲା ରାଜେନ୍ଦ୍ରର ସନ୍ଦେହୀଗୁଣ ଏବଂ ମିଥ୍ୟାରୋପରେ । ଅସୀମାକୁ ନେଇ ରାଜେନ୍ଦ୍ର ସନ୍ଦେହ କରିବା ସେମାନଙ୍କ ବିବାହର ବର୍ଷକ ପରଠାରୁ ହିଁ ଆରମ୍ଭ ହୋଇଯାଇଥିଲା । ସନ୍ତାନ ଜନ୍ମ ପରେ ସ୍ତ୍ରୀମାନଙ୍କର ନବଜାତ ଶିଶୁପ୍ରତି ଅଧିକ ଯତ୍ନ ଏବଂ ଯୌନ ଇଚ୍ଛାରେ ଆଗ୍ରହ କମିବା ସ୍ୱାମୀ ସ୍ତ୍ରୀ ମଧ୍ୟରେ ଦୂରତ୍ୱ ବଢାଇଥାଏ । ମନୋବୈଜ୍ଞାନିକଙ୍କଠାରୁ ଏହା ଜାଣିବା ପରେ ଅସୀମା ରାଜେନ୍ଦ୍ରର ପ୍ରତିକ୍ରିୟାକୁ ସାଧାରଣ ଭାବରେ ନେଇଥିଲା । କିନ୍ତୁ ରାଜେନ୍ଦ୍ରର ଅସୀମା ପ୍ରତି ଦିନକୁ ଦିନ ସନ୍ଦେହ ବଢ଼ିବାରେ ଲାଗିଥାଏ । ଏହି ସମୟରେ ପରିବାର ଲୋକମାନେ ହିଁ ଦମ୍ପତିଙ୍କୁ ମାନସିକ ସହାୟତା

କରିଥାନ୍ତି କିମ୍ବା ବାଟବଣା କରିଥାନ୍ତି । ଖୁବ୍ ସହଜରେ ଅନ୍ୟ କଥାରେ ପରିଚାଳିତ ହେଉଥିବା ରାଜେନ୍ଦ୍ର ନିଜେ କିଛି ଚିନ୍ତା କରିବାର କ୍ଷମତା ହରାଇ ସାରିଥିଲା । ପରିବାରର ଅନ୍ୟ ସଦସ୍ୟମାନଙ୍କର କଥା ହେଉ ବା ବନ୍ଧୁମାନଙ୍କଠାରୁ ଶୁଣା କଥା ହେଉ ସେସବୁକୁ ବିଶ୍ୱାସ କରି ଅସୀମାକୁ ଅବିଶ୍ୱାସ କରିବା ତା' ପାଇଁ ଏକ ଧରାବନ୍ଧା ନିୟମ ହୋଇସାରିଥିଲା। ରାଜେନ୍ଦ୍ରର ଏପରି ଆଚରଣରେ ଅସୀମାର ଅସହାୟତା କେତେ ଥର ଯେ ସୀମା ଉଲ୍ଲଂଘନ କରିଛି ତା'ର ହିସାବ ଅସୀମା କେବେ ରଖିବାକୁ ଚେଷ୍ଟା କରିନାହିଁ । ଓଲଟି ସେ ଆଶା ବାନ୍ଧିଥିଲା ଦିନେ ରାଜେନ୍ଦ୍ର ବଦଳିବ ଏବଂ ଅସୀମାକୁ ଯନ୍ତ୍ରଣାର ଏ ବୁଢ଼ୀଆଣି ଜାଲ ଭିତରୁ ମୁକୁଳେଇ ଆଣିବ । କିନ୍ତୁ ତାହା ତ' ଘଟୁନଥିଲା ନୂଆ ନୂଆ ଚରିତ୍ରଙ୍କ ସହ ଅସୀମାର ନାଆଁକୁ ଛନ୍ଦି ଦେଇ ରାଜେନ୍ଦ୍ରକୁ ମିଳୁଥିଲା ମାନସିକ ଶାନ୍ତି । ସେସବୁ ଅଭିଯୋଗ ଥିଲା ସଂପୂର୍ଣ୍ଣ ମିଥ୍ୟା ଏବଂ ନିରାଧାର । ଯେଉଁ ମିଛକୁ ଦିନେ ବିରୋଧ କରି ବ୍ରଜେଶକୁ ନିଜ ହୃଦୟରୁ ପୋଛି ଦେଇଥିଲା ଅସୀମା ସେ ଆଜି ଅସଂଖ୍ୟ ମିଥ୍ୟାରୋପର ଘେର ଭିତରେ ଛଟପଟ ହେଉଥିଲା । ଅସୀମା ମିଛ କହିବାକୁ ଭଲପାଏନା କି ମିଛ ଶୁଣିଲେ ଗ୍ରହଣ କରିପାରେନା । ସତ୍ୟର ସାହାରା ନେଇ ବଞ୍ଚିବାଟା କ'ଣ ଅସମ୍ଭବ ? କାହିଁ ସେପରି ମନେ କରୁନି ତ ଅସୀମା । ସତ୍ୟ ଆଉ ମିଥ୍ୟା ଭିତରେ ଫରକ ଖୋଜୁ ଖୋଜୁ ରାଜେନ୍ଦ୍ର ଏବଂ ବ୍ରଜେଶର ଚରିତ୍ର ଦୁଇଟି କେତେବେଳେ ଅସୀମା ମନ ଭିତରକୁ ପଶି ଆସିଲେଣି ତାକୁ ଜଣାନାହିଁ । ନଅବର୍ଷ ତଳେ ଗୋଟିଏ ମିଛ ପାଇଁ ଆଜି ବି ବ୍ରଜେଶ କ୍ଷମା ମାଗିବାକୁ ପଛାଉନାହିଁ କିନ୍ତୁ ରାଜେନ୍ଦ୍ର ନଅ ବର୍ଷକାଳ ମିଥ୍ୟାର ତ କେବଳ ଆଶ୍ରୟ ନେଇଚାଲିଛି। ଭୁଲରେ ବି କେବେ ଦିନେ ପଶ୍ଚାତାପ କରିବାର କାଣିଚାଏ ଚିହ୍ନ ବର୍ଣ୍ଣ ଦେଖିପାରିନି ଅସୀମା ତା'ଠାରେ । ତେବେ ସେସମୟରେ ବ୍ରଜେଶକୁ କ୍ଷମା କରିଦେବା ତା'ପାଇଁ ହୁଏତ ଉଚିତ୍ ହୋଇଥାଆନ୍ତା । ତା'ପର ଦିନ ସକାଳୁ ଅଫିସ୍ ପାଇଁ ପ୍ରସ୍ତୁତ ହେଉଥିଲା ଅସୀମା। କାଲିଠାରୁ ଆଜିଯାଏଁ ବ୍ରଜେଶର ଭାବନା ବାରମ୍ବାର ତାକୁ ବ୍ୟସ୍ତବିବ୍ରତ କରୁଥିଲା । ରାଜେନ୍ଦ୍ର ଅସୀମାକୁ ଅଫିସ୍‌ରେ ଡ୍ରପ୍ କରି ଚାଲିଗଲାଣି କେତେବେଳୁ। ଟେବୁଲ ସାରା ଫାଇଲଗୁଡ଼ାକ ଅସୀମାକୁ ଯେମିତି ଚାତକ ପରି ଚାହିଁ ରହିଛନ୍ତି । ଅସୀମାର ଦୃଷ୍ଟି ଯାଉନଥିଲା ସେଇଆଡକୁ। ଫୋନ୍ ଲଗାଇଲା ସେ ବ୍ରଜେଶକୁ । କ୍ଷଣିକ ମଧ୍ୟରେ ବ୍ରଜେଶର ସ୍ୱର ସେପଟୁ ଭାସିଆସିଲା, 'ମୁଁ ତୁମକୁ ଦେଖା କରିବାକୁ ଚାହେଁ ବ୍ରଜେଶ।'

'ମୋତେ ଦେଖା କରିବାକୁ ଚାହଁ ?'

'ହଁ, ତାହା ପୁଣି ନିରୋଳାରେ ।'

'ମୁଁ କିଛି ବୁଝିପାରୁନି ଅସୀମା ?'

'ସହରର ଯେକୌଣସି ଲଜ୍‌ରେ ଗୋଟିଏ ରୁମ୍ ହେଲେ ଆହୁରୀ ଭଲ ହେବ।'

'ତୁମେ କ'ଣ କହୁଛ ଜାଣିପାରୁଛ ତ ଅସୀମା ?'

'ହଁ, ସଂପୂର୍ଣ୍ଣ ସୁସ୍ଥ ମାନସିକତାରେ ଥାଇ ମୁଁ ଏକଥାଟି ତୁମକୁ କହୁଛି । ତୁମେ ତ ମୋତେ କଥା ଦେଇଥିଲ ତୁମେ ମୋତେ ଯେକୌଣସି ସାହାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛ । ସମାଜରେ ରାଜେନ୍ଦ୍ରର ପ୍ରତିଷ୍ଠା ତୁମ ଉପରେ ନିର୍ଭର କରୁଛି ।'

'ଏଥିରେ ରାଜେନ୍ଦ୍ରର ପ୍ରତିଷ୍ଠା ସହ କ'ଣ ସଂପର୍କ ଅଛି ?'

'ଅଛି, ତୁମେ ତୁମ କଥା ରଖିବ ନା' ନାଇ କୁହ ?'

'ଠିକ୍ ଅଛି ମୁଁ ଲଜ୍ ବୁକ୍ କରି ତୁମକୁ ଜଣାଉଛି । କିନ୍ତୁ ତୁମେ ଆଉ ଥରେ ଭାବିନିଅ ।'

'ଭାବିବାର ସମୟ ସରିଯାଇଛି । ଏବେ କାମ କରି ଦେଖାଇବାର ସମୟ ।'

ଠିକ୍ ଦିନ ଦୁଇଟାବେଳେ ଲଜ୍‌ର ୩୦୨ ନମ୍ବର କୋଠରୀରେ ବ୍ରଜେଶ ଆଉ ମୋନାଲିସା। ହୋଟେଲ ରେଜିଷ୍ଟରରେ ଦୁହେଁ ସ୍ୱାମୀ-ସ୍ତ୍ରୀର ପରିଚୟ ଦେଇ ରୁମ୍ ମଧ୍ୟକୁ ଆସିଛନ୍ତି ।

'ତୁମେ ତ କେବେ ମିଛର ଆଶ୍ରୟ ନିଅନି ଅସୀମା। ଆଜି ମୋର ସ୍ତ୍ରୀ ବୋଲି କହି ଏତେବଡ ମିଛର ସାହାର୍ଯ୍ୟ କ'ଣ ପାଇଁ ନେଲ ?

'ମୋ ସ୍ୱାମୀଙ୍କ ମଙ୍ଗଳ ପାଇଁ।' ଧୀର ସ୍ୱରରେ ଉତ୍ତର ଦେଲା ଅସୀମା।

'ମୋତେ ଆଉ ସନ୍ଦେହ ଭିତରକୁ ଟାଣନି ଅସୀମା ମୋ ସ୍ତ୍ରୀବୋଲି କହି ତୁମେ ତୁମ ସ୍ୱାମୀଙ୍କର କିପରି ମଙ୍ଗଳ ଚିନ୍ତନ କରିପାରୁଛ, ବୁଝିପାରୁନାହିଁ?'

'ରାଜେନ୍ଦ୍ର ବାରମ୍ବାର ମୋର ଚରିତ୍ରକୁ ନେଇ ମିଥ୍ୟା ଆରୋପ କରିଛନ୍ତି । ତାଙ୍କ କଥାରେ ଯେ ସତ୍ୟତା ଅଛି ଆଉ ମୁଁ ହାତ ଧରିଥିବା ମଣିଷଟା ଯେ ସତ ଛଡା ମିଛ କୁହେନା ତାହା ପ୍ରମାଣ କରିବାକୁ ମୁଁ ତୁମର ସାହାର୍ଯ୍ୟ ଚାହେଁ ।'

'ମୁଁ ଏବେ ବି କିଛି ବୁଝିପାରୁନି ଅସୀମା ।'

'ରାଜେନ୍ଦ୍ରର ଅଧିକାରରେ ତୁମେ ଭାଗିଦାର ହେଲେ ତା'ର ମିଥ୍ୟା ଆପେ ଆପେ ଲୁଚି ଯିବ ।'

'ଏମିତି କ'ଣ ସମ୍ଭବ ଅସୀମା ?'

'ହଁ, ଯେତେବେଳେ ରାଜେନ୍ଦ୍ର ବାରମ୍ବାର ମିଛର ସାହାର୍ଯ୍ୟ ନେଉଛନ୍ତି ସେତେବେଳେ ମିଛକୁ ସତରେ ପ୍ରମାଣ କରିବା ଛଡା ମୋ ପାଖରେ ଅନ୍ୟ କିଛି ଉପାୟ ନାହିଁ ।'

ହୋଟେଲ ରୁମ୍‌ର ଖୋଲା ଝର୍କା ପାଖରେ ଠିଆ ହୋଇ ବାହାର ଆକାଶକୁ ଚାହିଁ ରହିଥିଲା ବ୍ରଜେଶ।

'ଝରକା ବନ୍ଦ କରି ଆସ ଆମ ହାତରେ ସମୟ କମ ଅଛି । ମୁଁ କ୍ୟାମେରା ଅନ କରି ସାରିଲିଣି । ଏବେ ଘଟିବାକୁ ଯାଉଥିବା ଘଟଣାର ସିଡି ରାଜେନ୍ଦ୍ର ପାଖରେ ପହଞ୍ଚାଇବାର ଦାୟିତ୍ୱ ମୋର ସେଥିପାଇଁ ତୁମେ ବ୍ୟସ୍ତ ହୁଅନି । ମୁଁ କଥା ଦେଉଛି ତୁମ ପ୍ରତି କୌଣସି ବିପଦ ଆସିବ ନାହିଁ.... ।'

ଅଫିସ୍‌ରୁ ଫେରି ରାଜେନ୍ଦ୍ର ଫ୍ରେସ୍ ହୋଇ ଟିଭି ସାମ୍ନାରେ ବସିଥିଲା । ଅସୀମା ଗରମ୍ ଚା' କପ୍ ତା'ହାତକୁ ବଢ଼ାଇ ଦେଉ ଦେଉ ରାଜେନ୍ଦ୍ର ପ୍ରଶ୍ନ କଲା, 'କ'ଣ ଆଜି ବେଶ୍ ଖୁସି ଜଣାପଡୁଛ ?'

'ଆଜିଠୁଁ ତୁମକୁ କେହି ମିଥ୍ୟାଚାରୀ ବା ସନ୍ଦେହୀ କହିବେ ନାହିଁ। ତୁମେ ଯେ ସତ କୁହ ଆଉ ତୁମ ଆରୋପରେ ଯେ କେବଳ ସତ୍ୟତା ଥାଏ ତାହା ମୁଁ ଏବେ ସମାଜ ସାମ୍ନାରେ ଗର୍ବରେ କହିପାରିବି ।' ଏହା କହି ସିଡିଟାକୁ ବଢ଼ାଇ ଦେଲା ଅସୀମା ରାଜେନ୍ଦ୍ର ହାତକୁ ।



*(ଝର୍କା)*

# ଗୋରା ଲୋକ

ରାତି ଅଧରୁ ହଠାତ୍ ଶ୍ରୀୟା ଉଠିପଡି ସ୍ୱାମୀ ପ୍ରୀତିରାଜର ଦେହସାରା ପାଉଡର ବୋଳିଚାଲିଲା। ପିଠି, ହାତ, ଛାତି, ଜଂଘ ସଂଧିର ଜଘନ୍ୟ ଇଲାକା ଇମିତି ସବୁକିଛି ଜାଗା ମାନଙ୍କରେ। ରାତି ଅଧରେ ପାଉଡର ବାସ୍ନାରେ ବିସ୍ମିତ ହୋଇ ପ୍ରୀତିରାଜ ଉଠିପଡି ଦେଖିଲା ବେଳକୁ ଶ୍ରୀୟା ଖୋଜିଚାଲିଛି ପ୍ରେମକୁ ତା' ସାରା ଦେହରେ। ଶ୍ରୀୟାର ଏପରି ପ୍ରତିକ୍ରିୟା ପ୍ରଥମ ଥର ଦେଖୁଛି ପ୍ରୀତିରାଜ। ପ୍ରଶ୍ନ କଲା, 'ରାତି ଅଧରେ ମୋ ଦେହରେ ପାଉଡର ବୋଳିବାର ମାନେ କ'ଣ ମନୀଷା ?' ମନୀଷା ଲାଜୁଆ ହସରେ ସ୍ୱାମୀକୁ ଉତ୍ତର ଦେଲା, 'ତୁମ ଝାଳୁଆ ଦେହ ଆଉ ମୁହଁରେ ଲଟେଇ ହେବା ପୂର୍ବରୁ ସୁଷ୍କ କରିବାର ଏ ଗୋଟିଏ ଅଭିପ୍ରାୟ।'

ପ୍ରୀତିରାଜ ନିଜ ତେଲୁଆ ଶରୀରକୁ ନେଇ ଖୁବ୍ ଚିନ୍ତିତ । ଏଥିରୁ ମୁକୁଳିବା ପାଇଁ କେତେ ଥର ବ୍ଲିଚର ସାହାର୍ଯ୍ୟ ନେଇଛି । କିନ୍ତୁ କିଛି ଦିନ ପରେ ଫଳ ଯେଉଁଟାକୁ ସେଇଟା ।

ଏଇମିତି ନିଇତି ରାତିରେ ପ୍ରୀତିରାଜ ଦେହ ଆଉ ମୁହଁରେ ବାସ୍ନାଯୁକ୍ତ ପାଉଡର ବୋଳି ମନୀଷା ତା'ଦେହଉପରେ ଲଟେଇ ପଡେ । ଦେହରେ ଦେହ ଘସି ଯୌନ ଉଦ୍‌ବେଗକୁ ତୃପ୍ତ କରେ ।

ବାସ୍ ଏଥର କଳାରାତିରେ ଧଳା ମାର୍ବଲ ପରି ଚମକି ଉଠେ ପ୍ରୀତିରାଜର ଦେହ । ନା, ପ୍ରୀତିରାଜ ଆଉ କଳା ରଂଗ ଦେହରେ ଗଣା ହେବ ନାହିଁ । ସେ ବେଶ୍ ଗୋରା ଦେହଧାରି ପ୍ରେମିକ ପୁରୁଷଟିଏ । ମନୀଷା ପାଇଁ କଳାରଙ୍ଗ ତିରସ୍କାରିତ ନ ହେଲେ ବି ସେ କିନ୍ତୁ ଚାହେଁ ସ୍ୱାମୀକୁ ଧଳା ରଙ୍ଗରେ ଦେଖିବାପାଇଁ । କଳାରଙ୍ଗ ଦେହଧାରୀମାନେ

କୁଆଡେ ଅଧିକ କାର୍ଯ୍ୟକ୍ଷମଥାଆନ୍ତି । କଥାଟି ପ୍ରୀତିରାଜ ପକ୍ଷେ ବି ସତ । ପ୍ରୀତିରାଜ ଆଦୌ ଅଳସୁଆ ନୁହେଁ । କର୍ମକୁ ଈଶ୍ୱର ମନେ କରୁଥିବା ମଣିଷଙ୍କ ଭିତରେ ସେ ଜଣେ ।

ଦୁହିଁଙ୍କ ବାହାଘର ବର୍ଷେ ପୁରିବାକୁ ଆଉ ତିନି ଚାରି ମାସ ବାକି । ଦୁହେଁ ପରସ୍ପରକୁ ଖୁବ୍ ଭଲପାଆନ୍ତି । ଶ୍ରୀୟା ଦେଖିବାକୁ ସୁନ୍ଦର ଆଉ ବର୍ଣ୍ଣରେ ଗୋରା । ପ୍ରୀତିରାଜ ଦେଖିବାକୁ ଆକର୍ଷଣୀୟ ହେଲେ ବର୍ଣ୍ଣରେ କଳା । ଶ୍ରୀୟା ଯେତେବେଳେ ବାହାହୋଇ ଶାଶୁଘରକୁ ଆସିଥିଲା ଶାଶୁଘର ଗାଁ ମାଇପି ଟାହିଟାପର ହେଇ କହିଥିଲେ, 'ରୂପାଥାଳିଆକୁ ଜାମୁକୋଳି ।' ଏପରି ମତାମତରେ ପ୍ରୀତିରାଜ ହସିଦେଇଥିଲା ସିନା ଶ୍ରୀୟାକୁ କିନ୍ତୁ ଏକଥା ଜମାରୁ ଭଲ ଲାଗି ନଥିଲା । ତା' ମନର ମଣିଷକୁ ଯଦି କେହି କିଛି ଟାହି ଟାପରା କରିବେ ସେ ସହ୍ୟ କରିପାରିବ ନାହିଁ । ପ୍ରୀତିରାଜର ବର୍ଣ୍ଣ ତ ଖାଲି କଳା ନଥିଲା ସେ ଥିଲା ସାମାନ୍ୟ ଝାଳୁଆ ମଧ୍ୟ । ସେ କେବେ ପାଉଡର ବା ବଡିସ୍ପ୍ରେ ବ୍ୟବହାର କରିବାକୁ ପସନ୍ଦ କରେନି । କଲେଜରେ ପାଠ ପଢ଼ିଲାବେଳେ ହୁଏତ ତା' ବଂଧୁମାନେ ଏକଥା ଜାଣିପାରିଥିଲେ ଆଉ ବଂଧୁତ୍ୱର ଖାତିରରେ କେବେ କିଛି ମୁହଁ ଖୋଲି କହିବାକୁ ଠିକ୍ ମନେ କରିନଥିଲେ । କିନ୍ତୁ ପ୍ରୀତିରାଜର ଜନ୍ମଦିନ ପାର୍ଟିରେ ପ୍ରାୟ ସମସ୍ତେ ବଡିସ୍ପ୍ରେ ବା ପାଉଡର ଗିଫ୍ଟ କରନ୍ତି । ଆଉ ସେସବୁ ବ୍ୟବହାର ନକରି ସେ ତା' ସାଙ୍ଗ ମାନଙ୍କ ମଧ୍ୟରେ ବାଣ୍ଟିଦିଏ ।

ବିବାହ ପରର ଜୀବନ କିନ୍ତୁ ଅଲଗା । ସ୍ୱାମୀ ସ୍ତ୍ରୀ ବିବାହ ପରେ ପରସ୍ପର ପ୍ରତି ଗୁଣ ଆଉ ଦୁର୍ଗୁଣ ସହିତ ଖାଲି ପରିଚିତ ହୋଇଯିବା ଉଚିତ ନୁହେଁ । ତାକୁ ପରସ୍ପର ଗ୍ରହଣ କରିନେଲେ ବୈବାହିକ ଜୀବନରେ ଶାନ୍ତି ଆନନ୍ଦ ମିଳିଥାଏ । କିନ୍ତୁ ଏସବୁ କଥା ଶ୍ରୀୟା ମନକୁ ଛୁଇଁ ପାରୁନଥିଲା । ବାହାଘର ଏଇ କେଇଟା ମାସ ହୋଇଛି । ପ୍ରେମ ଆଉ ଦେହ ସହିତ ଆଉ ଗୋଟିଏ ଅନ୍ତରଙ୍ଗ ପରିଚୟ ଆରମ୍ଭ ହୋଇଛି । ଯଦି ଗୋଟାଏ ଦେହ ଆଉ ଗୋଟାଏ ଦେହ ସହିତ ଅନ୍ତରଙ୍ଗତା ବଢ଼ାଇବାରେ କିଛି ପ୍ରତିବନ୍ଧକ ସାମ୍ନାରେ ଆସେ ତେବେ ପ୍ରେମର ସେହି ଭିନ୍ନ ରୂପ ସହିତ ଅନ୍ତରଙ୍ଗତା ତ ବଢ଼ିବନି ଓଲଟି ଦୂରତା ବଢ଼ିବାର ସୁଯୋଗ ଅଛି ।

ଏମିତି ଦେଖିଲେ ପ୍ରୀତିରାଜ ମନରେ ଆଉ ହୃଦୟରେ ଜଣେ ରୋମାଣ୍ଟିକ ମଣିଷ । କିଏ କିଛି କାମ କହିଲେ ସେ କେବେ ମନା କରେନି । ରାଜଧାନୀରେ ରହୁଥିବାରୁ ଗାଁ ଯାଖ ଲୋକଙ୍କ ଫରମାଇସ୍ ପୁରଣ କରିବା ଛଡା ସେ ଶ୍ରୀୟାକୁ ଯଥେଷ୍ଟ ସମୟ ଦେଇଥାଏ । ଶ୍ରୀୟାବି ପ୍ରୀତିରାଜର ଏହି ନିଃସ୍ୱାର୍ଥପର ମନୋବୃତ୍ତିକୁ ଖୁବ୍ ତାରିଫ୍ କରେ ।

ଏମିତି ତ ମହାପ୍ରଭୁ ଜଗନ୍ନାଥ କଳା । ସେଥିରେ ସ୍ୱାମୀଙ୍କ ବର୍ଣ୍ଣ ନେଇ ଅଶାନ୍ତି ହେବା କେବେ କେହି ଦେଖିନାହାନ୍ତି। ହଁ ପାଉଡର ବୋଳି ଦେଲେ ଏମିତିବି କଳା ରଙ୍ଗ ଦେହ ଧଳା ହୋଇଯାଏ। ଯାହା ପ୍ରତିବାଦ ସେହି ଝାଲୁଆ ଦେହକୁ ନେଇ।

ସେଦିନ ସଂଧ୍ୟାରେ ପ୍ରୀତିରାଜ ଅଫିସ୍‌ରୁ ଫେରିଆସି ଶ୍ରୀୟାକୁ କହିଲା, 'ଦେଖ ପୂର୍ଣ୍ଣିମାର ଜହ୍ନ ଆକାଶରେ କେମିତି ଚିକ୍‌ମିକ୍ କରୁଛି। ତାରାମାନେ ଜହ୍ନର ରୂପ ଦେଖିବାପାଇଁ ଦୁଆର ଖୋଲି ବାହାରକୁ ଚାଲି ଆସୁଛନ୍ତି। ଆକାଶରେ ଆଜି ଖୁବ୍ ଭିଡ। ଚାଲ  ଟିକେ ବାହାରେ ବୁଲି ଆସିବା।' ଜହ୍ନ ଆଉ ତାରାମାନଙ୍କର କଥା ଶୁଣି ଶ୍ରୀୟା ଟିକେ ରୋମାଞ୍ଚିତ ହୋଇଗଲା। ଏମିତିତ ଦେଖିବାକୁ ଗଲେ ପ୍ରୀତିରାଜଠାରୁ ସେ ଟିକେ ଅଧିକ ରୋମାଣ୍ଟିକ ମଣିଷ।

'ଠିକ୍ ଅଛି ମୁଁ ଟିକେ ଚା' କରିନିଏ। ତୁମେ ଫ୍ରେସ ହୋଇ ଚାଲିଆସ। ତା'ପରେ ବାହାରିବା।' ଶ୍ରୀୟା ପ୍ରୀତିରାଜକୁ ଉତ୍ତର ଦେଲା।

'ନା, ନା,  ତୁମେ ବ୍ୟସ୍ତ ହୁଅ ନାହିଁ। କୌଣସି କଫି ସପ୍‌ରେ ବସି ଗରମ କଫିର ମଜା ନେବା। ମୁଁ ଆସିଲେ ଫ୍ରେସ୍ ହେବି। ତମେ ଜଲ୍‌ଦି ବାହାର।'

ସ୍ୱାମୀର କଥା ନଭାଙ୍ଗି ଶ୍ରୀୟା ନିଜକୁ ପ୍ରସ୍ତୁତ କରିନେଲା। ଏଥର ସେମାନେ ଗାଡି ଷ୍ଟାର୍ଟ୍ କରି ବାହାରିଗଲେ। ଶ୍ରୀୟା ସଜବାଜ ହୋଇ ପଛରେ ବସିଗଲା। ସ୍ୱାମୀକୁ ଜାବୁଡି ଧରିବାକୁ ଚେଷ୍ଟାକଲାବେଳକୁ ବେକ ପଛପାଖରେ ଝାଳଦ୍ୱାରା ସୃଷ୍ଟି ହେଉଥିବା ଆର୍ଦ୍ରତା ତା'ମନରେ ଥିବା ରୋମାଣ୍ଟିକପଣକୁ କମ୍ କରିଦେଲା। ସେ ଆକାଶ, ତାରା, ଜହ୍ନ କଥା ଭୁଲିଯାଇ କିପରି ପ୍ରୀତିରାଜ ମନରେ ଦେହକୁ ପ୍ରସ୍ତୁତ ରଖିବାର ମାନସିକତା ଭରିବାର ଉପାୟ ଚିନ୍ତାକଲା।

ଦୁହେଁ କଫି ସପ୍‌ରେ ବସିଥିଲେ। ତାଙ୍କ ଛଡା ଆଉ ବହୁତ ଦମ୍ପତି ମଧ୍ୟ ଗରମ କଫିର ମଜା ନେଉଥିଲେ। ସେଠାରେ ଶ୍ରୀୟା ଅଲକ୍ଷରେ ସମସ୍ତ ଦମ୍ପତିଙ୍କ ଆଡକୁ ଗୋଟାଏ ନଜର ବୁଲେଇ ଆଣିଲା। ଯୋଡିମାନେ ସବୁ ଆକର୍ଷଣୀୟ ଲାଗୁଥିଲେ ସତ କିନ୍ତୁ ତା'ଠାରୁ ଅଧିକ ରଂଗୀନ ସ୍ୱଭାବର ଥିଲେ। ଆଉ ଯେତେବେଳେ ପ୍ରୀତିରାଜର ଉପରେ ତା'ର ନଜର ପଡିଲା ଶ୍ରୀୟା ଭାବିଲା କେଉଁ ସତୁରୀ ଦଶକର କଳାଧଳା ଛବିର ଅନାକର୍ଷଣୀୟ ଯୋଡି ଦୁଇଜଣ। ସେ କଫି ସପ୍‌ରେ ବେଶୀ ସମୟ ବସିପାରିଲା ନାହିଁ। ବିଲ୍ ପେମେଣ୍ଟ କରି ଦୁହେଁ କଫି ସପ୍‌ରୁ ବାହାରି ଆସିଲେ।

ପ୍ରିତିରାଜ ପ୍ରଶ୍ନକଲା, 'ଆଉ କେଉଁଠିକି ଯିବ.... ?'

'ନା.... ଚାଲ ଘରକୁ ଫେରିଯିବା।' ଭାରି ମନନେଇ ଉତ୍ତର ଦେଲା ଶ୍ରୀୟା।

ଦୁହେଁ ଘରକୁ ଫେରିଆସିଲେ। ପ୍ରୀତିରାଜ ଫ୍ରେସ୍‌ହେବା ସମୟ ଭିତରେ ଶ୍ରୀୟା ରାତ୍ରୀଭୋଜନ ପ୍ରସ୍ତୁତ କଲା। ମନେମନେ ଭାବିଲା ଯାହା ବି ହେଲେ କିଛି ଗୋଟେ ବନ୍ଦୋବସ୍ତ କରିବାକୁ ହେବ। ନହେଲେ ହୁଏତ ପ୍ରେମ ସେମାନଙ୍କୁ ଆବୋରି ନେବାରେ କଂଜୁସୀ କରିବ। ଦୁହେଁ ବସି କିଛି ସମୟ ଟିଭି ଦେଖିଲେ। ରାତ୍ରୀଭୋଜନ ସାରି ବିଛଣାକୁ ଗଲା ବେଳକୁ ସମୟ ରାତି ଏଗାର। ଦିନସାରା ପରିଶ୍ରମର କ୍ଳାନ୍ତିରେ ଶୋଇପଡିଲାଣି ପ୍ରୀତିରାଜ କିନ୍ତୁ ଶ୍ରୀୟାକୁ ନିଦ ହୋଇନାହିଁ।

ନାରୀ ବିବାହ ପରେ ଜୀବନ ସାଥିଟିଏ ପାଏ। ଆଉ ସେମାନଂକ ପ୍ରେମ ଆଉ ଭଲ ପାଇବାର ପ୍ରମାଣ ସ୍ୱରୂପ ସନ୍ତାନଟିଏ ଏହି ଦୁନିଆର ଆଲୁଅ ଦେଖେ। ସେ ସମୟରେ ନାରୀ ଭାବେ ହୁଏତ ତା' ଜୀବନରେ ପୂର୍ଣ୍ଣତା ଆସିଗଲା। କିନ୍ତୁ ପ୍ରେମ ଆଉ ଭଲପାଇବା ଯେ ଖାଲି ସମର୍ପଣ କହିଲେ ତ ହେବନାହିଁ ଜଣକୁ ଅନ୍ୟ ଜଣେ ମାନସିକ ଆଉ ଶାରୀରିକ ସ୍ତରରେ ନିଃସର୍ତ୍ତ ଭାବରେ ଗ୍ରହଣ କରିବା ଉଚିତ। ଗୋଟିଏ ସ୍ତ୍ରୀ ଯେପରି ତା' ସ୍ୱାମୀର ନୀବିଡତା ଆଉ ଆନ୍ତରିକତାର ପ୍ରତିଟି ମୁହୂର୍ତ୍ତକୁ ଉପଭୋଗ କରିବା ପାଇଁ ନିଜକୁ ଶାରୀରିକ ଏବଂ ମାନସିକ ସ୍ତରରେ ପ୍ରସ୍ତୁତ ରଖେ ଠିକ୍ ସେହିପରି ସେ ମନରେ ଆଶା ବାନ୍ଧେ ତା' ସ୍ୱାମୀ ମଧ୍ୟ ତାର ଶାରୀରିକ ଏବଂ ମାନସିକ ସ୍ତରରେ ଏଭଳି ପ୍ରସ୍ତୁତି କରି ରଖୁ ଯେ ଦୁହେଁ ସେମାନଂକ ଅନ୍ତରଂଗ ମୁହୂର୍ତ୍ତକୁ ଖୁବ୍ ଆନ୍ତରିକତାର ସହିତ ଉପଭୋଗ କରିପାରିବେ।

ଏହି ଭାବନାରେ ଶ୍ରୀୟା ଆଖି କେତେବେଳେ ଲାଗିଯାଇଛି। ସେ ଉଠିଲା ବେଳକୁ ପ୍ରୀତିରାଜ ତା'ଆଡକୁ ପଛକରି ନିଘୋଡ ନିଦର ମଜା ନେଉଛି। ପ୍ରେମରେ ସେ ସ୍ୱାମୀର ପିଠିରେ ଟିକେ ହାତ ଆଉଁସି ଆଣିଲା। ଝାଳ ଆର୍ଦ୍ରତା ତା' ମନରେ ପୁଣି ଆଶଙ୍କା ଭରି ଦେଲା। ଶେଯରୁ ଉଠିପଡି ଡ୍ରେସିଂଟେବୁଲରୁ ପାଉଡର ଡବା ନେଇଆସିଲା ଏବଂ ବୋଳି ପକାଇଲା ପ୍ରୀତିରାଜର ଦେହସାରା।

ଦାମ୍ପତ୍ୟ ପ୍ରେମରେ ଗୋଟିଏ ଶରୀର ଅନ୍ୟ ଶରୀରକୁ ଗ୍ରହଣ କରିବାର ମାନସିକତା ସୃଷ୍ଟି କରିବା ସେହି ଦମ୍ପତ୍ତିଙ୍କ ଉପରେ ନିର୍ଭର କରେ। ଶରୀରର ଗଠଣକୁ ଆମେ ତ ପରିବର୍ତ୍ତନ କରିପାରିବା ନାହିଁ ତେବେ ତା'ର ଟିକିଏ ଯତ୍ନନେଇ ଯଦି ଜୀବନସାଥୀକୁ ଆନନ୍ଦ ଦିଆଯାଇ ପାରିଲା ତେବେ ସେଠାରେ ଭୁଲ୍ ରହିଲା କେଉଁଠି ? ଶ୍ରୀୟା ଏଭଳି ଭାବନା ଭିତରେ ରହି ପାଉଡର ବୋଳିବାବେଳେ ପ୍ରିତିରାଜର ନିଦ ଭାଙ୍ଗିଗଲା। ପ୍ରିତିରାଜର ମୁହଁରେ ପ୍ରଶ୍ନବାଚୀ ଦେଖି ଶ୍ରୀୟା କହେ, 'ମୁଁ ଯେପରି ପ୍ରସ୍ତୁତ ହୋଇ

ରହିଛି ତୁମରି ସାନିଧ୍ୟ ପାଇବା ପାଇଁ ଠିକ୍ ସେମିତି ତୁମର ପ୍ରସ୍ତୁତି ମଧ୍ୟ ନିହାତି ଆବଶ୍ୟକ ମୋ ସାନିଧ୍ୟ ପାଇଁ।' ଏହା କହି ଶ୍ରୀୟା ପ୍ରିତିରାଜର ଦେହରେ ଛନ୍ଦି ହୋଇଗଲା ଭିନ୍ନ ଏକ ଠାଣିରେ। ପ୍ରେମର ଆଉ ଏକ ନୂଆ ଶିହରଣ ପ୍ରୀତିରାଜ ଅନୁଭବ କଲା ଶ୍ରୀୟାର ପ୍ରେମ ଆଉ ନୀବିଡତାକୁ ଦେଖିବାର ଭିନ୍ନ ଅଥଚ ଫଳପ୍ରଦ ଉପାୟଟିକୁ।

ତା' ପରଦିନ ଅଫିସ୍‌ରୁ ଫେରିଲା ପରେ ପ୍ରୀତିରାଜ ଫ୍ରେସ୍ ହେବାକୁ ପଶିଗଲା ବାଥରୁମ୍ ଭିତରକୁ। ବାଥରୁମ୍‌ରୁ ବାହାରି ଆସି ବ୍ୟାଗରୁ କାଢ଼ିଲା ନୂଆ ପାଉଡର ଆଉ ବଡି ସ୍ପ୍ରେ। ଦେହରେ ସେସବୁ ଲଗାଇ ନେଲା ପରେ ବେଡ୍ ରୁମ୍‌ର ଚାରିଆଡକୁ ବି ସ୍ପ୍ରେ କରିଦେଲା ଜସ୍ମିନ୍ ଫ୍ରେସ୍ ରୁମ ସ୍ପ୍ରେ। ଶ୍ରୀୟା ଗରମ ଚା' ଧରି ରୁମ୍‌ରେ ପଶିଲା ବେଳକୁ ଦୁଷ୍ଟାମୀ ଚାହାଣୀରେ ଯେତେବେଳେ ପ୍ରୀତିରାଜ ତାକୁ ତା' ଦେହ ପାଖକୁ ଟାଣିନେଲା। ଶ୍ରୀୟା ଅନୁରୋଧ କଲା ଦେହର ରଂଗ କଳା କି ଗୋରାରେ ଫରକ ନଥାଏ ବରଂ ମନ ଭିତରଟା ସଫା ହେବା ନିହାତି ଦରକାର।

ଏଥର ପଡିଶା ଘର ସ୍ତ୍ରୀ ଲୋକ ହେଉ କି ମିତ୍ର ବର୍ଗରେ ହେଉ ପ୍ରୀତିରାଜକୁ କଳା ଲୋକ ବୋଲି ମନୀଷା ପାଖରେ କିଏ କହିଲେ ତା'ର ଆଉ ଆଦୌ ଶୋଚନା ନଥିଲା । କାହିଁକିନା ମନୀଷା ପାଇଁ ପ୍ରୀତିରାଜ ରାତି ଅନ୍ଧକାରରେ ବି ଜଣେ ଗୋରା ଲୋକ ।



*(ମୁକ୍ତି)*

# ଅଦୃଶ୍ୟ

"ଶୁଭକାନ୍ତ ତୁମେ ଆଜି ଏ ଧରାରେ ଜୀବନ ଧରିନାହଁ, ଏ କଥା ବାପାବୋଉ ନିକୁନ୍ ଆଉ ଅନ୍ୟମାନେ ଯେତେ ଯିଏ କହିଲେ ବି ମୁଁ କାହିଁକି ବିଶ୍ୱାସ କରିପାରୁନାହିଁ । ଏଇ ତ ତୁମ ଅଫିସ ଯିବାର ସମୟ ହୋଇଗଲାଣି । ନିଅ ତୁମ ଅଫିସ ବ୍ୟାଗ୍। ୱାଚ ପିନ୍ଧିଲ ? ହ୍ୟାଣ୍ଡକରଚିପ୍ ନେଲ ?"

କେଉଁଠୁ କେମିତି ମନିଷାକୁ ତା' ପ୍ରଶ୍ନମାନଙ୍କର ଉତ୍ତର ଶୁଭକାନ୍ତ ଆସି ଦେଇଯାଉଥିଲା । ମନିଷା ଯେ ଆଜି ବିଧବା ସେ ଏ କଥା ଆଦୌ ବିଶ୍ୱାସ କରିପାରୁନଥିଲା । ସେ କେତେଥର କହିଛି ସମସ୍ତଙ୍କୁ, 'ଶୁଭକାନ୍ତ ବଂଚିଛନ୍ତି, ମରିନାହାନ୍ତି ।' ତଥାପି ତାକୁ କାହିଁକି ବୈଧବ୍ୟର ନୀତିନିୟମ ପାଳନ କରିବାକୁ ବାଧ କରାଯାଉଛି ?

ଦଶ ବର୍ଷର ପୁଅ ନିକୁନ୍ । ସେ ବି କେମିତି ଜାଣିଲା ଆମ ସାମାଜିକ ବ୍ୟବସ୍ଥାର ଆଦବକାଇଦା । ଏଗୁଡାକ ସବୁ ମନଗଢା, କେତେକ ସ୍ୱାର୍ଥାନ୍ୱେଷୀ ମଣିଷଙ୍କର କପଟ-ନିୟମ ବୋଲି ସେ ଅନେକ ଥର ନିକୁନ୍‌କୁ ବୁଝେଇଛି, ହେଲେ... । ଦିନେ ନିକୁନ୍ ଘର ସାମ୍ନା ଖେଳପଡିଆରୁ ଖେଳ ଛାଡି ଦୌଡି ଦୌଡି ଆସି କହିଲା, ମାମା... ମାମା, ବାପା ପରା ମରିଯାଇଛନ୍ତି, ହେଲେ ତୁ ମଥାରେ ସିନ୍ଦୂର ଆଉ ହାତରେ ନାଲିଶଂଖା ନାଇଛୁ କାହିଁକି ?"

କେମିତି ସେ ବୁଝାଇବ ନିକୁନ୍‌କୁ ? ସ୍ୱାମୀ ବୋଲି ଜଣକୁ ଗ୍ରହଣ କରିବା ପୂର୍ବରୁ ସେ ଚୂଡି ପିନ୍ଧୁଥିଲା, କୁମାରୀ ଅବସ୍ଥାରେ ଦୁଇଟି ନିର୍ଦ୍ଦିଷ୍ଟ କର୍ମକର୍ମାଣିରେ ତା' ଦେହରେ ସିନ୍ଦୂର ପଡିଥିଲା; ଥରେ ଜନ୍ମହେବାର ବର୍ଷକ ପରେ ଏବଂ ଦ୍ୱିତୀୟ ଥର ଝିଅବେଳର ଦେହ ନାରୀ ହେବା ପରେ । କାଇଁ ଏତେବେଳକୁ ତ ସ୍ୱାମୀ ବୋଲି କିଏ ନଥିଲେ ।

ଯଦି ସ୍ୱାମୀ ମଥାରେ ସିନ୍ଦୂର ଦେବା ପରେ ସିନ୍ଦୂରକୁ ସଧବାର ପ୍ରତୀକ ରୂପେ ଧରିନିଆଯାଏ ତେବେ ବିବାହ ପୂର୍ବରୁ ଏହି ଦୁଇ କର୍ମରେ ସିନ୍ଦୂର ନାରୀ ଦେହ ପାଇଁ କେତେ ପ୍ରଯୁଜ୍ୟ ?

ମନୀଷା ମନକୁ ଏମିତି କେତେ ଯେ ଭାବନା ଆସେ, ତା' ଅନ୍ତରକୁ ଦୋହଲାଇ ଦିଏ । ମାତ୍ର ତା' ଭାବନାର ସେଇ ସୂକ୍ଷ୍ମାତିସୂକ୍ଷ୍ମ ମୂଲ୍ୟବୋଧ ପରିବାରର ସଦସ୍ୟଙ୍କ ନିକଟରେ ସତ୍ତା ହରାଇବସେ । ମଣିଷଗଢ଼ା ନୀତିନିୟମ ହିଁ ସମାଜରେ ଧସେଇ ପଶେ । ବ୍ୟକ୍ତିକୁ ନେଇ ସମାଜ, ତଥାପି ବ୍ୟକ୍ତିର ଅଧିକାର ଓ ବଂଚିବାର ରାହା ବେଳେ ବେଳେ ସମାଜର ହୀନମନ୍ୟତାର ଶିକାର ହୁଏ । ମନିଷାର କଳ୍ପନାରେ, ମନରେ, ଅନୁଭବରେ ଆଜି ବି ଶୁଭକାନ୍ତ ଜୀବିତ । ସେ ଶୁଭକାନ୍ତ ସହ ଏକାନ୍ତ ମୁହୂର୍ତ୍ତରେ କଥାହୁଏ, ଆନନ୍ଦ ନିଏ । ଯିଏ ଯାହା କହୁପଛେ ସେ କାହା କଥାରେ ପ୍ରଭାବିତ ହୁଏ ନାହିଁ । ସେଥିରୁ ତାକୁ ମିଳିବ ବା କ'ଣ ? ସେ ଭାବେ ହାତରୁ ଶଂଖା ଓ ମଥାରୁ ସିନ୍ଦୂର ଅପସରି ଗଲେ ହୁଏତ ଶୁଭକାନ୍ତ ଆଉ ତାକୁ ସ୍ପର୍ଶ କରିପାରିବ ନାହିଁ । ସେ ଶୁଭକାନ୍ତର ଉପସ୍ଥିତିକୁ ଅନୁଭବ କରିପାରିବ ନାହିଁ । ଘୂର୍ଣ୍ଣିଝଡର ପରବର୍ତ୍ତୀ ଶୂନ୍ୟତାକୁ ଭରିବା ପାଇଁ ବୋହି ଆସୁଥିବା ଶୀତଳ ପବନକୁ ରୋକିବାକୁ ମନିଷା ତଥାକଥିତ ସାମାଜିକ ନିୟମ ବିରୋଧରେ ହାତରେ ପିନ୍ଧିବ ଶଂଖା ଆଉ ମଥାରେ ସିନ୍ଦୂର । ହୁଏତ ଶୂନ୍ୟତାକୁ ଭରିବା ପାଇଁ ବହିଆସିଥିବା ଶୀତଳ ପବନର ସ୍ପର୍ଶ ତା' ପାଇଁ ଅସହ୍ୟବୋଧ ହୋଇପାରେ ।



*(ନବଲିପି)*

# ସଂପର୍କ

"ସୋନାଲି ମୋ ଗାଲରେ ଗୋଟିଏ ଚୁମା ଦେଲ ।" କୁମାରଠାରୁ ଏଭଳି ଏକ ଉକ୍ତି ସୋନାଲିକୁ ଶୁଣିବାକୁ ପଡିବ ସେ ଆଦୌ ଚିନ୍ତା କରିନଥିଲା । କୁମାର ସହିତ ସୋନାଲିର ଏଇମାତ୍ର ଦ୍ୱିତୀୟ ସାକ୍ଷାତ । ପ୍ରଥମ ଥର ପରିଚୟ ଦୁହିଁଙ୍କ ଭିତରେ ହୋଇଥିଲା ଏକ ସଭା କକ୍ଷ ବାହାରେ ଯେତେବେଳେ ସୋନାଲି ସଭା ଶେଷ ପରେ ଘର ମୁହାଁ ହୋଇଥିଲା । ସାମାନ୍ୟ ପରିଚୟ ଏବଂ ଆଗକୁ କିଛି କାମରେ ପରସ୍ପର ଆସିପାରନ୍ତି ଏହି ଅଭିଳାଷରେ ପରସ୍ପର ଟେଲିଫୋନ ନମ୍ବର ଦିଆନିଆ ହୋଇଥିଲେ ।

ପ୍ରଥମ ସାକ୍ଷାତ ପରେ ପରେ କୁମାରବାବୁଙ୍କର ଥରେ ଫୋନ୍ ଆସେ ସୋନାଲି ପାଖକୁ – "ମ୍ୟାଡ଼ମ୍ ମୁଁ ଗୋଟିଏ ପ୍ରୋଜେକ୍ଟ ଚିନ୍ତାକରିଛି । ଆଉ ତାକୁ କେବଳ ଆପଣ ହିଁ ସଫଳ କରିପାରିବେ । ଯଦି ରାଜି ହୁଅନ୍ତି ମୁଁ ଆପଣଙ୍କୁ ନେଇ ଏ କାମରେ ଆଗାନ୍ତି ।"

"କାମ କ'ଣ କୁହନ୍ତୁ, ଦେଖିବା ଯଦି ଠିକ୍ ଲାଗେ କରାଯାଇପାରେ ।"

"ଏମିତି କ'ଣ ଫୋନ୍‌ରେ ଏକଥା କୁହାଯାଏ ଯଦି ରାଜି ହୁଅନ୍ତି ସାକ୍ଷାତରେ ପ୍ରୋଜେକ୍ଟ ସଂପର୍କରେ କହିବି, "ଠିକ୍ ଅଛି ଆମେ ଏ ବିଷୟରେ ସାକ୍ଷାତରେ କଥାହେବା ।"

ନିର୍ଦ୍ଧିଷ୍ଟ ଦିନ ଏବଂ ସମୟରେ କୁମାର ଏବଂ ସୋନାଲିର ସାକ୍ଷାତ ହୁଏ । କୁମାର ଯେଉଁ ପ୍ରୋଜେକ୍ଟ ଉପରେ କହିଲା ସୋନାଲି ପୂର୍ବରୁ ସେଥିପାଇଁ ନିଜେ ଚିନ୍ତା କରିସାରିଥାଏ ଏବଂ କିଛି ପ୍ଲାନିଙ୍ଗ ମଧ୍ୟ କରିଥିଲା କିନ୍ତୁ ଆର୍ଥିକ ସହଯୋଗ ମିଳିଲେ ସେ ଏହା କାର୍ଯ୍ୟକାରୀ କରିବ ସେହି ଅପେକ୍ଷାରେ ଥିଲା । ଯୋଗକୁ କୁମାର ମଧ୍ୟ ସେହିଭଳି ଏକ ପ୍ରୋଜେକ୍ଟର ପ୍ରସ୍ତାବ ସୋନାଲିକୁ ଦିଏ । ଦୁହେଁ ସେହି ପ୍ରୋଜେକ୍ଟ ଉପରେ ଅନେକ ତର୍କ ବିତର୍କ କରନ୍ତି । ସୋନାଲି ନିଜେ ଏଭଳି ଏକ ଚିନ୍ତା କରିଥିବା ଏବଂ କିଛି କାର୍ଯ୍ୟ ଆଗେଇଥିବା

ସମସ୍ତ କାଗଜପତ୍ର କୁମାର ସାମ୍ନାରେ ଥୋଇ ଦେଲା । କୁମାର ଏସବୁ ଦେଖି ନିଜ ପ୍ରୋଜେକ୍ଟର ସଫଳତା ବିଷୟରେ ଭାବି ଖୁବ୍ ନିକଟରେ ସଫଳ ହେବ ଚିନ୍ତା କରିନିଏ । ଏଥର ଦୁହିଁଙ୍କ ପ୍ରୋଜେକ୍ଟକୁ ଏକାଠି କରିବା ଏବଂ କୁମାର ଫାଇନାନସ କରିବ ବୋଲି ନିଷ୍ପତ୍ତି ହେଲା । ପ୍ରେଜେକ୍ଟକୁ ନେଇ ସୋନାଲିର ଯୋଜନାକୁ କୁମାର ପସନ୍ଦ କରେ ଏବଂ ସେହି ହିସାବରେ ଆଗେଇବାକୁ ସ୍ଥିର ହୁଏ । ସବୁ କଥାବାର୍ତ୍ତା ସରିବା ପରେ କୁମାର ବସିଥିବା ସ୍ଥାନରୁ ଉଠି ପଡେ ଏବଂ ସୋନାଲିଠାରୁ ବିଦାୟ ନିଏ । ବିଦାୟ ନେବା ପୂର୍ବରୁ କୁମାର ସୋନାଲି ପାଖରୁ ଗୋଟିଏ ଚୁମ୍ବନ ଭିକ୍ଷା କରେ । ସୋନାଲି ସହଜ ସରଳ ଭାବରେ ହସିଦିଏ ଏବଂ ସ୍ପଷ୍ଟ କୁହେ, "ଦେଖନ୍ତୁ କୁମାରବାବୁ ଯଦି ଏସବୁ ଆର୍ଥିକ ସହଯୋଗ ଦେଖାଇ ଏବଂ ବ୍ୟବସାୟ ଯୋଜନାରେ ଯଦି ଆପଣ ଏଭଳି ଉଦ୍ଦେଶ୍ୟ ରଖନ୍ତି ତେବେ ଏସବୁରେ ମୋର ଆଦୌ ରୁଚି ନାହିଁ କି ଆପଣଙ୍କ ସହ ମିଶି କୌଣସି ପ୍ରୋଜେକ୍ଟରେ କାମ କରିବାରେ ମୋର ଆଗ୍ରହ ନାହିଁ, ଆପଣ ଯାଇପାରନ୍ତି ।"

"ମ୍ୟାଡମ୍ କ'ଣ ଆପଣ ରାଗିଗଲେ ଯେ ।"

"ନିଶ୍ଚୟ ଆପଣଙ୍କର ସ୍ଥାନ କାଳ ପାତ୍ର ଚିହ୍ନିବାର ଦୃଷ୍ଟି ନାହିଁ । ଆପଣ ମୋ ସହ କି କାମ କରିପାରିବେ ?"

"ନା..., ନା ମ୍ୟାଡମ୍"

"ନା, ନା କଣ ! ଆପଣଙ୍କ ଭଳି ମଣିଷମାନଙ୍କ ପାଇଁ ଆମ ଦେଶରେ ମହିଳାମାନେ କର୍ମକ୍ଷେତ୍ରକୁ ବାହାରି ପାରୁନାହାନ୍ତି । ଆପଣଙ୍କ ପରି ଲୋକଙ୍କର କି ଅସୁବିଧା ଥାଏ କେଜାଣି । ନିଜକୁ ପ୍ରଥମେ ସମ୍ଭାଳନ୍ତୁ । ତା'ପରେ ଆଉ କାହାକୁ ସମ୍ଭାଳିବା ଚିନ୍ତା କରିବେ ।"

କୁମାର ସୋନାଲି ପ୍ରତି କହିଥିବା କଥାକୁ ନେଇ ଖୁବ୍ ଦୁଃଖିତ ହୁଏ ଏବଂ କ୍ଷୋଭ ପ୍ରକାଶ କରେ ।

"ଜାଣନ୍ତି କୁମାରବାବୁ, ମୁଁ ଆପଣଙ୍କୁ ରାଗୁନାହିଁ ବରଂ ଆମ ସମାଜରେ ଆପଣଙ୍କ ପରି ମଣିଷମାନେ ନିଜକୁ ପୁରୁଷ କହୁଥିବାବେଳେ ପୁରୁଷର ଗାରିମା ବଜାୟ ରଖିପାରନ୍ତି ନାହିଁ । ଆପଣ କ'ଣ ଭାବୁଛନ୍ତି ଏଭଳି ଶବ୍ଦପ୍ରୟୋଗରେ ମୁଁ କ୍ଷତାକ୍ତ ହେଲି ? ନା, ବରଂ ଆପଣଙ୍କୁ ଗୋଟିଏ ଦୁଷ୍ଟ ପୁଅର ଦୁଷ୍ଟାମୀ ଭାବି ନେଉଛି । ଯେଉଁ ଦୁଷ୍ଟ ପୁଅ ମାଆର ଉଚିତ୍ ଶାସନରେ ନିଜ ଦୁଷ୍ଟାମୀ ଛାଡି ଭଲ ପିଲା ହେବାର ଅନେକ ସମ୍ଭାବନା ରହିଥାଏ ।" କିଛି ସମୟ ସୋନାଲି ଏବଂ କୁମାର ଭିତରେ ନୀରବତା । କୁମାର ନିଜ ଆଚରଣ ପାଇଁ ପଶ୍ଚାତାପର ମୁଖମଣ୍ଡଳରେ ନୀରବ ଥିବା ସୋନାଲି ଅନୁମାନ କଲା । ସୋହାଲି ନୀରବତା ଭାଙ୍ଗି କହିଲା, "ମୁଁ ପ୍ରକୃତରେ ଏହି ପ୍ରୋଜେକ୍ଟରେ କାମ କରିବାକୁ ଚାହେଁ ଆପଣଙ୍କ ସହଯୋଗ ମୋର ଏକାନ୍ତ କାମ୍ୟ ।"



# ପୁନର୍ଜନ୍ମ

ହାଇସ୍କୁଲର ପରୀକ୍ଷାଫଳ ବାହାରିଲା । ଗୌତମୀକୁ ସବୁ ବିଷୟରେ ଭଲ ନମ୍ବର ମିଳିଥିଲା, ଜିଲାରେ ସେ ପ୍ରଥମ ହୋଇଥାଏ । ପିଉସୀ କହିଲେ, 'ଭାଉଜ ! ତୁମ ଗୌତମୀ ମେଧାବୀ, ଯାହା ଘରକୁ ଯିବ ଉଭୟ ପରିବାରର ନାମ ରଖିବ । ସେ ଦେଖିବାକୁ ଯେମିତି ସୁନ୍ଦର, ମନ ମଧ ତା'ର ଠିକ୍ ସେମିତି ସୁନ୍ଦର । ତାର ଗୋଲାପ ପାଖୁଡା ପରି ନରମ ଓଠ, ଲମ୍ବା ନାକ, ଘଞ୍ଚ କେଶ ଆଉ ତା'ସାଙ୍ଗକୁ ଗୋରା ରଙ୍ଗ । ଗୌତମୀର ବିବାହରେ କୌଣସି ଅସୁବିଧା ହେବନାହିଁ ।'

ଏକାଂତ ପ୍ରିୟ ଗୌତମୀର ଅନେକ ଭଲ ଗୁଣ ଥାଏ। ଲେଖିବା ଏବଂ ସଂଗୀତ ଶୁଣିବା ତା'ର ବଡ ସଉକ ଥିଲା । ସମୟ ଗଡି ଚାଲିଥାଏ । ବିଶ୍ୱବିଦ୍ୟାଳୟରେ ନିଜ ବିଭାଗରେ ଟପର ହୋଇ ଗୋଲ୍ଡମେଡାଲ ପାଇଲା । ନିଜ ଅଧ୍ୟବସାୟ ବଳରେ ଜଣେ ନାମକରା ବୈଜ୍ଞାନିକ ହୋଇ ସେ ବାହାରିଲା। ବିହାରର ଏକ ଗବେଷଣା କେନ୍ଦ୍ରରେ ସେ ଯୋଗଦେଲା। ସେତେବେଳକୁ ଗୌତମୀର ବିବାହ ବୟସ ହୋଇଗଲାଣି। ସମସ୍ତଙ୍କ ପରି ସେ ସେହି ବୟସରେ ସ୍ୱପ୍ନ ଦେଖେ, ଆନମନା ହୁଏ, ସ୍ୱପ୍ନ ପରେ ସ୍ୱପ୍ନ ଖଞ୍ଜେ।

ସେତେବେଳକୁ ଗୌତମୀ ପାଇଁ ବିବାହ ପ୍ରସ୍ତାବର ଭିଡ ଜମିଲାଣି। ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କଠାରୁ ନେଇ ସଫ୍ଟୱେୟାର ଇଞ୍ଜିନିୟର ପର୍ଯ୍ୟନ୍ତ, ବଡ ବ୍ୟବସାୟୀଙ୍କଠାରୁ ନେଇ ଏନଆରଆଇ ପର୍ଯ୍ୟନ୍ତ ଗୋଟିଏ ପରେ ଗୋଟିଏ ପ୍ରସ୍ତାବ ଗୌତମୀର ପରିବାରକୁ ଆସିବାରେ ଲାଗିଥାଏ। ସେହି ପ୍ରସ୍ତାବମାନଙ୍କ ଭିତରୁ ଗୌତମୀର ବାପାଙ୍କୁ ଗୋଟିଏ ଏନଆରଆଇ ପ୍ରସ୍ତାବ ପସନ୍ଦ ଆସିଲା। ବ୍ୟସ୍ତତା ମଧ୍ୟରେ ଝିଅର

ବିବାହ ତାରିଖ ଠିକ୍ ହୋଇଗଲା; ଝଟ୍‌ମଙ୍ଗନି ପଟ୍‌ବିହା ଢ଼ଙ୍ଗରେ ବିବାହ ବି ସମାପନ ହୋଇଗଲା। ଜୀବନକୁ ନେଇ ରଙ୍ଗୀନ ସ୍ୱପ୍ନ ଦେଖିବାକୁ ଲାଗିଲା ଗୌତମୀ। ଗୌତମୀର ସ୍ୱାମୀ ଜିତେନ୍ଦ୍ର ବିବାହ ପରେ ପରେ ଭିସା ନମିଳିବାର ବାହାନା କରି ଗୌତମୀକୁ ଭାରତରେ ଛାଡି ଆମେରିକା ଚାଲିଗଲା । ଯଦିଓ ଗୌତମୀ ସ୍ୱାମୀ ସହ ଆମେରିକା ଯିବାରେ ଇଚ୍ଛା ରଖିଥିଲା ତଥାପି ସ୍ୱାମୀଙ୍କର ଅସୁବିଧାକୁ ଆଖିଆଗରେ ରଖି ନିଜ ଇଚ୍ଛାକୁ ସଞ୍ଚିତ କରିନେଲା । କିଛି ଦିନ ପରେ ଜିତେନ୍ଦ୍ର ଆସି ଗୌତମୀକୁ ଆମେରିକା ନେଇଗଲା । ନିଜେ ବୈଜ୍ଞାନିକ ହୋଇଥିବାରୁ ଗୌତମୀ ଭାବିଲା ଆମେରିକାରେ ତା'ର ବିବାହ ପରର ଜୀବନ ପାରିବାରିକ ଦାୟିତ୍ୱ ସହ ଗବେଷଣାରେ ମଧ୍ୟ ମନୋନିବେଶ କରିପାରିବ। କିନ୍ତୁ ଅଳ୍ପ ଦିନ ପରେ ତା'ସ୍ୱପ୍ନ ସବୁ ଚୁରମାର୍ ହେଲା ଭଳି ଲାଗିଲା । ସ୍ୱାମୀ ତା'ର ଜଣେ ଆମେରିକୀୟ ମହିଳା ସହ ପ୍ରେମ ବନ୍ଧନରେ ଆବଦ୍ଧ ଥିଲେ । ସତରେ ଯେମିତି ଚଡକ ପଡିଲା ଗୌତମୀ ଉପରେ। ସବୁ କିଛି ଜାଣି ପରିସ୍ଥିତିକୁ ସମୟ ଉପରେ ଛାଡିଦେବା ଉଚିତ୍ ମନେ କଲା ଗୌତମୀ। କିଛି ଦିନ ପରେ ସେମାନଙ୍କର ପୁଅଟିଏ ହେଲା ତଥାପି ବିଦେଶୀ ମହିଳାର ଆକର୍ଷଣ ଟିକିଏ ବି କମି ନଥିଲା ଜିତେନ୍ଦ୍ର ପାଇଁ।

ସେ ସମୟରେ ଅପ୍ରବାସୀ ଭାରତୀୟଙ୍କର ବିବାହ ଏକ ଆଲୋଚ୍ୟ ବିଷୟବସ୍ତୁ ଥିଲା । ଏନଆରଆଇ ପୁଅମାନେ ନିଜ ଚାକିରୀ ତଥା ରୋଜଗାରର ମିଥ୍ୟା ସୂଚନା ଦେଇ ଭାରତର ସୁନ୍ଦରୀ ଝିଅମାନଙ୍କୁ ବିବାହ କରୁଥିଲେ ଏବଂ ସେମାନଙ୍କୁ ବିଦେଶ ନେଇଯାଇ ବିବାହର କିଛି ଦିନ ପରେ ସହଜରେ ଛାଡପତ୍ର ଦେଇଦେଉଥିଲେ । ଏଥିରେ ଭାରତୀୟ ନାରୀଟିଏ ଖାଲି ଅସହାୟ ତ ହେଉନଥିଲା ବିଦେଶ ମାଟିରେ ସାହାଯ୍ୟ ସହଯୋଗ ଖୋଜିବା ତା' ପାଇଁ ଅସମ୍ଭବ ଥିଲା। ଏଇସବୁ କଥା ଚିନ୍ତା କରି ଭାରତୀୟ ରାଷ୍ଟ୍ରୀୟ ମହିଳା ଆୟୋଗ ଏକ ସ୍ୱତନ୍ତ୍ର ସେଲ୍ ଗଠନ କରିଥିଲେ । ଯେଉଁ ସଂସ୍ଥା ଏପରି ଅସହାୟ ମହିଳାମାନଙ୍କୁ ଖାଲି ସାହାଯ୍ୟ ତ କରୁନଥିଲା ବିବାହ ପୂର୍ବରୁ ପୁଅ ଏବଂ ପୁଅ ଘରର ସମସ୍ତ ସୂଚନା ଝିଅ ପରିବାରକୁ ଦେବାରେ ସକ୍ଷମ ଥିଲା। କିନ୍ତୁ ବ୍ୟସ୍ତତା ଭିତରେ ଏପରି ସଂସ୍ଥାର ସାହାଯ୍ୟ ନେଇ ନଥିଲେ ଗୌତମୀର ପରିବାର।

ଜିତେନ୍ଦ୍ର ଏବଂ ଗୌତମୀର ପାରିବାରିକ ଜୀବନ ଦିନକୁ ଦିନ ଦୁରୁହ ହେବାକୁ ଲାଗିଲା। କଥା କଥାରେ କଥା କଟାକଟି ତା'ସାଙ୍ଗକୁ ବଢ଼ିଲା ଛୁଆ, ଏସବୁ ଦିନକୁ ଦିନ ଅସହ୍ୟ ହେବାକୁ ଲାଗିଲା ଗୌତମୀ ପାଇଁ। ଶେଷରେ ଦିନେ ଗୌତମୀ ମୁହଁ ଖୋଲି କହିଲା, 'ସବୁଦିନ ଏଭଳି ଲଢ଼େଇ କରିବାଠୁଁ ଭଲ ଅଲଗା ରହିବା। ଯେତେବେଳେ ଆମ ବିଚାର, ଚିନ୍ତାଧାରା ପରସ୍ପରର ବିପରୀତ ଦିଗକୁ ଯାଉଛି

ସେତେବେଳେ ଗୋଟିଏ ଛାତ ତଳେ ରହିବା ଆଉ ସମ୍ଭବ ନୁହେଁ। ତୁମେ ଚାହିଁଲେ ମୋତେ ଛାଡପତ୍ର ଦେଇଦେଇ ପାର।'

ଜିତେନ୍ଦ୍ର କହିଲା, 'ତୁମକୁ କିଏ ଅଟକାଇଛି । ଜଲ୍‌ଦି ସମାଧାନ କର ଆଉ ମୋତେ ମୁକ୍ତ କରିଦିଅ। ମୁଁ ବି ଏବେ ଏହା ଭାବୁଛି ଆମର ସମ୍ପର୍କ ସବୁଦିନ ପାଇଁ ଶେଷ ହୋଇଯିବା ଉଚିତ୍।' ଶେଷରେ ବିବାହ ବନ୍ଧନରୁ ମୁକ୍ତ ହେବା ପାଇଁ ଦୁହେଁ ଛାଡପତ୍ରର ରାସ୍ତା ବାଛିନେଲେ। ଆଉ ଅଳ୍ପ ଦିନରେ ଛାଡପତ୍ର ହୋଇଗଲା ମଧ୍ୟ। ଗୌତମୀ ନିଜର ପୁଅକୁ ନେଇ ଆସି ଗୋଟିଏ ଅନିଶ୍ଚିତ ଭବିଷ୍ୟତ ଭିତରେ ଉବୁଟୁବୁ ହେଉଥିବାବେଳେ ଜିତେନ୍ଦ୍ର ସେ ବିଦେଶୀନିକୁ ବିବାହ କରିବା ପାଇଁ ଯୋଜନା କରୁଥିଲା। ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ମୋଡରେ ଏଭଳି ଏକ ଅପ୍ରତ୍ୟାଶିତ ଧକ୍କାରେ ଭାରସାମ୍ୟ ହରାଇଲା ଗୌତମୀ। ମନେ ମନେ ଭାବିଲା ଗୋଟିଏ ଭୁଲ ନିଷ୍ପତ୍ତି ତା' ଜୀବନକୁ ନଷ୍ଟଭ୍ରଷ୍ଟ କରିଦେଲା।

ପ୍ରତିଶୋଧର ଝଡ ଗୌତମୀ ମନରେ ତୀବ୍ର ଭାବରେ ବୋହୁଥାଏ । ନାରୀ ମନ ତଳର ବ୍ୟଥା ତାକୁ ଖୁବ୍ ବ୍ୟଥିତ କରୁଥାଏ । ଏଥର ନିଜ ଚିନ୍ତାଧାରାରୁ ଓହରି ସାଧାରଣ ନାରୀର ସ୍ଥିତିର ଆକଳନ ସେ କଲା । ସେ ନିଶ୍ଚିତ କଲା ଯେ ପୁନଃ ବିବାହ କରିବ ନାହିଁ। ଯେଉଁ ପଙ୍କରୁ ସେ ଏବେ ମୁକୁଳିଛି ସେହି ପଙ୍କରେ ପୁଣି ଫସିବାକୁ ଚାହୁଁ ନଥିଲା । ସେ ନିଷ୍ପତ୍ତି ନେଲା ଅସହାୟ ଏବଂ ବେସାହାରା ମହିଳାଙ୍କ ପାଇଁ କାମ କରିବ ଯେଉଁ ମହିଳାମାନେ ଏଭଳି ପ୍ରତାରିତ ପୁରୁଷଙ୍କ ଦ୍ୱାରା କଷ୍ଟପାଉଛନ୍ତି ସେ ସେମାନଙ୍କ ସପକ୍ଷରେ ଲଢ଼େଇ କରି ସେମାନଙ୍କୁ ଏଭଳି ପୁରୁଷମାନଙ୍କ କବଳରୁ ଉଦ୍ଧାର କରିବ ।

ନିଜ ସ୍ୱାଭିମାନ ତଥା ତା'ଭଳି ଅସହାୟ ମହିଳାମାନଙ୍କର ସୁରକ୍ଷା ପାଇଁ ସେ ଯେଉଁ ବଜ୍ର ଶପଥ ନେଇଥିଲା ତା'ର ସେହି ସଫଳ ରୂପାୟନ ନିମନ୍ତେ ସେ କଲମ ଧରିବାର ନିଷ୍ପତ୍ତି ନେଲା । ଗବେଷଣା କାର୍ଯ୍ୟରେ ନିଜକୁ ନିୟୋଜିତ କରି ସେ ଅତି ସହଜରେ ନିଜର ଗୁଜୁରାଣ ମେଣ୍ଟାଇପାରୁଥିଲା। ବାକି ସମୟ ନିଜ କଲମରୁ ସୃଷ୍ଟ ଲେଖାମାନଙ୍କ ଦ୍ୱାରା ପ୍ରତାରିତ ମହିଳାମାନଙ୍କ ନିମନ୍ତେ ଏକ ଜାଗରଣ ସୃଷ୍ଟି କରିପାରିଥିଲା। ଏମିତି ଦେଖିବାକୁ ଗଲେ ଆମେରିକା ପରିବେଶରେ ଛାଡପତ୍ର ଏକ ସାଧାରଣ ବିଷୟ। କିନ୍ତୁ ଭାରତୀୟ ପରମ୍ପରାରେ ବଞ୍ଚିଥିବା ଏବଂ ଭାରତୀୟ ସଂସ୍କୃତିକୁ ସମ୍ମାନ ଦେଉଥିବା ଗୌତମୀ ପାଇଁ ତାହା ଖୁବ୍ ଯନ୍ତ୍ରଣାଦାୟକ ଥିଲା । ସେ ଉଭୟ ସଭ୍ୟତାକୁ ସମତୁଲ କରିବା ଏବଂ ତୁଳନାତ୍ମକ ବିଚାର ବିମର୍ଷକୁ ଲୋକଙ୍କ ଆଗରେ ଉପସ୍ଥାପନ କରିବାକୁ ଲାଗିଲା ।

ଭାରତରେ ନାରୀ ସର୍ବଂସହା। ସବୁ ଯନ୍ତ୍ରଣା ଦୁଃଖକୁ ପିଇଯାଏ ସତ କିନ୍ତୁ କାହାକୁ କାଣୀଚାଏ କଷ୍ଟଦେବାରେ ଇଚ୍ଛା ରଖେନାହିଁ। ସବୁବେଳେ ଦେବାରେ ବିଶ୍ୱାସ ରଖୁଥିବା ଭାରତୀୟ ନାରୀ କିନ୍ତୁ ଅଧିକାଂଶ ସମୟରେ ପ୍ରତାରଣା ଛଡା ଆଉ କିଛି ପାଏ ନାହିଁ। ଗୌତମୀ ଭାବିଚାଲେ ନାରୀ ଜନନୀ, ଜଗତର ସୃଷ୍ଟି କର୍ତ୍ତୀ । ପୁରୁଷକୁ ସେ ହିଁ ଜନ୍ମ ଦେଇଛି ନିଜ ଗର୍ଭରୁ । ନିଜ ରକ୍ତରେ ଗଢିଛି ତା'କୁ । ତାହାରି ଶକ୍ତିରେ ପୁରୁଷ ଶରୀରରେ ଶକ୍ତିର ସଂଚରଣ, ପୌରୁଷର ଜାଗୃତି ଏବଂ ସେ ସେହି ପୌରୁଷକୁ ନାରୀ ଉପରେ ହିଁ ପ୍ରୟୋଗ କରେ । ଗୋଟିଏ ସମୟ ଥିଲା ଏହି ଭାରତର ସମାଜରେ ନାରୀର ଅଧିକାର ଥିଲା । ସମାଜରେ ମାତୃସତ୍ତାତ୍ମକ ବ୍ୟବସ୍ଥା ଥିଲା । ନାରୀକୁ ତାର ବୈଧ ଅଧିକାର ପ୍ରାପ୍ତଥିଲା ।

ଭାରତରୁ ଯାଇ ଆମେରିକାରେ ରହୁଥିବା ଗୌତମୀ ଧିରେ ଧିରେ ଅନୁଭବ କଲା ଯେପରି ବିବାହ ଗୋଟିଏ ବନ୍ଧନ ନୁହେଁ ଗୋଟିଏ ସାମୟିକ ସମ୍ପର୍କ। ଏପରି ଚିନ୍ତାଧାରା ଆମେରିକାରେ ବସବାସ କରୁଥିବା ଭାରତୀୟ ନାରୀମାନଙ୍କୁ ନିଃସଙ୍ଗତା ଆଡକୁ ଟାଣିନେଉଥିଲା ଆଉ ସେହି ନିଃସଙ୍ଗତାର ଭାରରେ ଭାରାକ୍ରାନ୍ତ ହେଲା ଗୌତମୀ। ତଥାପି ଦୃଢ଼ମନା ଗୌତମୀ ନିଜ କର୍ମରେ ବିଶ୍ୱାସ ରଖି ଗୋଟିଏ ଶୃଙ୍ଖଳାଗତ ଜୀବନ ଭିତରେ ନିଜକୁ ଖାପଖୁଆଇ ନେଲା । ପୁଅ ବି ମାଆ ପାଖରେ ସଂସ୍କାର ଓ ସମ୍ମାନରେ ବଞ୍ଚିବାର ଉପାୟ ସବୁ ଶିଖିବାରେ ଲାଗିଲା।

ସମୟ ଗଡି ଚାଲେ। ଜିତେନ୍ଦ୍ର ଧିରେ ଧିରେ ଅନୁଭବ କଲା ସେହି ବିଦେଶୀନି ଝିଅ ଡେଜି ତା'ଠାରୁ ଦୂରେଇ ଯାଉଛି। ସତେ ଯେମିତି ଚଡକ ପଡିଲା ଜିତେନ୍ଦ୍ର ଉପରେ । ନିଜ ସ୍ତ୍ରୀ ପୁଅକୁ ଛାଡି ସେ ଯେଉଁ ପ୍ରେମ ପଛରେ ଦଉଡିଥିଲା ତାହା ଯେ ବାସ୍ତବିକ ନଥିଲା, ଥିଲା ଗୋଟିଏ ମରିଚିକା ତାହା ଜାଣିବା ପାଇଁ ତାକୁ ଅଛପା ରହିଲା ନାହିଁ। ଡେଜି କିଛି ଦିନ ପରେ ଜିତେନ୍ଦ୍ରଠାରୁ ଛାଡପତ୍ର ନେଇଗଲା। ଜିତେନ୍ଦ୍ର ତାକୁ କାକୁତି ମିନତି ହୋଇ କହିଲା, 'ମୁଁ ତୁମ ବିନା ବଞ୍ଚିପାରିବିନି ଡେଜି।'

'ତୁମେ ଯେତେବେଳେ ଗୌତମୀ ବିନା ବଞ୍ଚି ପାରିଛ, ମୋ ବିନା ବଞ୍ଚିବାରେ କିଛି ଅସୁବିଧା ହେବ ନାହିଁ।' ଡେଜିର ଏଭଳି ନିଷ୍ଠୁର ଉତ୍ତରରେ ହତବାକ୍ ହୋଇଗଲା ଜିତେନ୍ଦ୍ର । ମନେ ପଡିଲା ତା'ର ଗୌତମୀ ଆଉ ପୁଅ ସିପୁନ୍‌ର କଥା। କେତେଥର ଅଯଥା କଥାରେ ସେ ଅସାଳୀନ ବ୍ୟବହାର କରିଥିଲା ଗୌତମୀ ପ୍ରତି। ତାକୁ ଠିକ୍ ଠିକ୍ ଲାଗୁଥିବା ଜିନିଷ ଗୁଡିକ ଯେ ଠିକ୍ ନୁହେଁ ଭୁଲ୍ ତାହା ସେ ଜାଣିଗଲା ଅଳ୍ପଦିନରେ। ମନସ୍ଥ କଲା ଗୌତମୀକୁ ସାକ୍ଷାତ କରିବ। ନିଜ ବ୍ୟବହାର ପାଇଁ କ୍ଷମା ମାଗିବ। ସମୟ ସୁଯୋଗ ଦେଖି ଦିନେ ଗୌତମୀକୁ ସେ ଭେଟିଲା । ସେତେବେଳକୁ କିନ୍ତୁ ଢ଼େର

ସମୟ ଗଡିଗଲାଣି । ଗୌତମୀ କହିଲା, 'ସତୀ ଅନୁସୂୟା, ସାବିତ୍ରୀଙ୍କୁ ପୂଜା କରୁଥିବା ଦେଶର ନାରୀ ସିଏ। ସାବିତ୍ରୀ ପୁନଃର୍ଜନ୍ମ ଦେବାକୁ ଯାଇ ଯମରାଜଙ୍କ ପାଖରୁ ନିଜ ସ୍ୱାମୀଙ୍କୁ ବଞ୍ଚାଇଥିଲେ। କିନ୍ତୁ ଆମେରିକା ଭଳି ଦେଶରେ କିଛି ଦିନ ରହିବା ପରେ ସେ ଜାଣିସାରିଛି ଜିତେନ୍ଦ୍ର ପାଖରେ ସତ୍ୟବାନଙ୍କ ଭଳି କୌଣସି ସ୍ୱଭାବ ନାହିଁ। ତେଣୁ ଜିତେନ୍ଦ୍ର ଆଉ ଗୌତମୀର ସଂପର୍କକୁ ପୁନଃର୍ଜନ୍ମ ଦେଇ କୌଣସି ଲାଭନାହିଁ। ଏମିତି ବି ଗୌତମୀ ବେଳେ ବେଳେ ଦ୍ୱନ୍ଦ୍ୱରେ ଥିଲା ଜିତେନ୍ଦ୍ର ତା' ସହିତ କେତେ ଦିନବା ସମ୍ପର୍କରେ ଯୋଡି ହୋଇ ରହିବ। ଶେଷରେ ଜିତେନ୍ଦ୍ର ହତାଶ ହୋଇ ଫେରିଗଲା ଗଲାବେଳେ କହିଗଲା, 'ଗୌତମୀ ତୁମେ ମୋ ପାଖକୁ ଫେର କି ନଫେର କିନ୍ତୁ ସିପୁନ୍‌କୁ ଭେଟିବାର ସୁଯୋଗ ମୋଠାରୁ ଛଡେଇ ନିଅନି।'

ସିପୁନ୍ କେବଳ ମୋ ପୁଅ ନୁହଁ। ତା' ଦେହରେ ତୁମ ରକ୍ତ ବି ଦଉଡୁଛି । ତୁମେ ଚାହିଁଲେ ଯେକୌଣସି ମୁହୂର୍ତ୍ତରେ ତାକୁ ସାକ୍ଷାତ କରିପାରିବ। ଦିନେ ସୁଯୋଗ ଦେଖି ଜିତେନ୍ଦ୍ର ଗୌତମୀ ଘରେ ଆସି ପହଞ୍ଚିଲା। ସେଦିନ ସିପୁନ୍‌ର ଜନ୍ମ ଦିନ ଥିଲା। ଘରେ ଅତିଥିଙ୍କ ଭିଡ ଲାଗିଥାଏ। ଜିତେନ୍ଦ୍ର ସିପୁନ୍‌କୁ ଦେଖି ହାପିବାର୍ଥ ଡେ' କହୁ କହୁ ସିପୁନ୍ ଉତ୍ତର ଦେଲା, 'ଥ୍ୟାଙ୍କ୍ୟୁ ଅଙ୍କଲ୍'। ଆବାକ୍ ହୋଇ ଚାହିଁ ରହିଥିଲା ଜିତେନ୍ଦ୍ର।



*(ଅନୁପମ ଭାରତ ବାର୍ଷିକସଂଖ୍ୟା)*

# ଆର୍ଚ୍ଚି

ଆର୍ଚ୍ଚି, ସେ ଦିନ ଜାଣି ନଥିଲା କି ଅନୁଭବ କରିବାର ସକ୍ଷମତା ତା'ର ନ ଥିଲା, ଅଥଚ ଗୋଟିଏ ମୁହୂର୍ତ୍ତରେ ବଦଳିଯାଇଥିଲା ମାଆର ସମ୍ବୋଧନ । ଯେଉଁ ଗର୍ଭରେ ଦୀର୍ଘ ନଅମାସ ଧରି ତିଆରି ହୋଇଥିଲା ସେ, ସେହି ଗର୍ଭରୁ ବାହାରିଯିବା ପରେ ସମ୍ବୋଧନଗୁଡିକ ନିବିଡ ଓ ସଂପର୍କମାନେ ଘନିଷ୍ଠ ହେବା ବଦଳରେ ତା'ଠାରୁ ଏସବୁ କିନ୍ତୁ ଦୂରେଇ ଯାଇଥିଲା । କିନ୍ତୁ ଜଣକର ଅନାଦର ଅନ୍ୟ ଜଣଙ୍କର ଆବଶ୍ୟକତାକୁ ମେଣ୍ଟାଇବା ହୁଏତ ଆର୍ଚ୍ଚିର ଭାଗ୍ୟରେ ସେଦିନ ଲିପିବଦ୍ଧ ହୋଇଥିଲା ।

ଦିପକବାବୁଙ୍କ ବୈବାହିକ ଜୀବନକୁ ଦଶବର୍ଷ ଅତିକ୍ରମ କରିସାରିଛି କିନ୍ତୁ ନିଃସନ୍ତାନର ଦୁଃଖ ସେମାନଙ୍କୁ ଅଧିକରୁ ଅଧିକ ଯନ୍ତ୍ରଣା ଦେଉଥିଲା । ସେମାନଙ୍କର ଦଶବର୍ଷ ପରେ ସନ୍ତାନସୁଖର ଜ୍ୟୋତିଷବାଣୀରେ ଅବଶ୍ୟ ସେମାନେ ବେଶ୍ ଆଶ୍ୱସ୍ତ । ଦମ୍ପତି ମଧ୍ୟ ବେଶ ଖୁସୀରେ ଥାଆନ୍ତି ଯେ ଏଥର ତାଙ୍କ ଘର ଅଗଣାରେ ନବଜାତ ଶିଶୁର ଆଗମନ ଘଟିବ ଏବଂ ପାପା-ମାମାର ଡାକରେ ଘର ଗୁଞ୍ଜରି ଉଠିବ । ଦୀପକବାବୁ ଜୈନ ସଂପ୍ରଦାୟର, ଖୁବ୍ ନିଷ୍ଠାବାନ ଏବଂ ସଙ୍କୋଚ ସାଧାରଣ ଜୀବନଯାପନ କରୁଥିବା ମଣିଷଟିଏ । ଘରେ ସେ ବଡ ପୁଅ ତାଙ୍କ ତଳକୁ ଆଉ ତିନି ଭାଇ । ଭାଗ୍ୟର ବିଡମ୍ବନା ଗୋଟିଏ ପରେ ଗୋଟିଏ ସବୁ ଭାଇଙ୍କର ବିବାହ କାର୍ଯ୍ୟ ସମାପନ ହୁଏ କିନ୍ତୁ କାହାରିକୁ ମଧ୍ୟ ସନ୍ତାନପ୍ରାପ୍ତି ହେଉ ନଥିଲା । ଜୈନ ପରିବାର ପାଇଁ ଏହା ଏକ ଚିନ୍ତାର ବିଷୟ ସାଙ୍ଗକୁ ସାମାଜିକ କୁତ୍ସାରଟନାର ଭୟ ଓ ଆଶଙ୍କା । ଏତିକିବେଳେ ଦୀପକବାବୁଙ୍କୁ କେହି ଜଣେ ଜ୍ୟୋତିଷ ଭବିଷ୍ୟତବାଣୀ ଶୁଣାଇ କୁହନ୍ତି ତାଙ୍କର ସନ୍ତାନ ସୁଖ ଅଛି ।

କିନ୍ତୁ ଏ କ'ଣ ବିବାହର ଦଶ ବର୍ଷ ଅତିକ୍ରମ କରିଯିବା ପରେ ଦିପକବାବୁଙ୍କ ସ୍ତ୍ରୀର ଶାରୀରିକ ଅସୁସ୍ଥତା ହେତୁ ଡାକ୍ତର ୟୁଟ୍ରେସ୍ କାଢ଼ିଦେବାକୁ ନିର୍ଦ୍ଦେଶ ଦେଲେ। ଜୈନ ଦମ୍ପତିଙ୍କ ମଧ୍ୟରେ ଭାଳେଣୀ ପଡେ । କ'ଣ ତାଙ୍କ ପରିବାର ଉପରେ କାହାର କି ଅଭିଶାପ ପଡିଛି ! ଯେ ଏପରି ସବୁ ଘଟିଯାଉଛି । ଜ୍ୟୋତିଷଙ୍କ ଭବିଷ୍ୟତବାଣୀ କ'ଣ ମିଥ୍ୟା ସାବ୍ୟସ୍ତ ହେବ । ଜୈନ ଦମ୍ପତି ଖୁବ୍ ଚିନ୍ତାରେ ପଡନ୍ତି ଏବଂ ମନସ୍ତାପ କରି ଘରକୁ ଫେରିଲେ । ଘରକୁ ଫେରିବା ବାଟରେ ଭବିଷ୍ୟତବାଣୀ କରିଥିବା ସେହି ଜ୍ୟୋତିଷଙ୍କ ସହ ସାକ୍ଷାତ ହେଲା । ଜ୍ୟୋତିଷ କିଛି ବୁଝିପାରନ୍ତି ନାହିଁ । ପରବର୍ତ୍ତୀ ସମୟରେ ଜୈନଦମ୍ପତିଙ୍କ ଦୁଃଖ ଶୁଣି ସେ ସାମାନ୍ୟ ହସି ଦେଇ ଚାଲିଯାଆନ୍ତି । ଦମ୍ପତି ନିରାଶ ହୋଇ ଘରକୁ ଫେରି ଆଲୋଚନା କରନ୍ତି ଏବଂ ନିଷ୍ପତ୍ତି ନିଅନ୍ତି ୟୁଟ୍ରେସ୍ କାଢ଼ି ଦେବାକୁ । ଦୀପକବାବୁ ମନଟାଣ କରି ସ୍ତ୍ରୀଙ୍କୁ ବୁଝାଇଲେ ଏବଂ ଦୁହେଁ ନିଷ୍ପତ୍ତି ନେଲେ ପୋଷ୍ୟ ସନ୍ତାନ ଗ୍ରହଣ କରିବାପାଇଁ ।

ନିର୍ଦ୍ଦିଷ୍ଟ ଦିନ ଉପନୀତ ହେଲା, ୟୁଟ୍ରେସ କଢ଼ାଗଲା ଏବଂ ଡାକ୍ତରଙ୍କୁ ଦୀପକବାବୁ କହି ଦେଇ ଆସନ୍ତି କୌଣସି ମାତାପିତାଙ୍କର ଅଲୋଡା ପିଲାଟିଏ ଯଦି ଜନ୍ମ ହୁଏ ତେବେ ତାଙ୍କୁ ତୁରନ୍ତ ଖବର ଦେବାକୁ । ଡାକ୍ତର ଦୀପକ୍‌ବାବୁଙ୍କୁ ସମ୍ମତି ଦିଅନ୍ତି ଏବଂ ତାଙ୍କର ଏତାଦୃଶ ଇଚ୍ଛାକୁ ସମ୍ମାନ ମଧ୍ୟ ପ୍ରଦର୍ଶନ କରନ୍ତି ।

କିଛି ଦିନ ଅତିକ୍ରମ କଲାପରେ ଜଣେ ସ୍ତ୍ରୀଲୋକ ଡେଲିଭରି ପାଇଁ ମେଡିକାଲକୁ ଆସିଲେ । ଉକ୍ତ ସ୍ତ୍ରୀଲୋକର ଗୋଟିଏ କନ୍ୟା ସନ୍ତାନ ଜନ୍ମ ହେଲା । କନ୍ୟା ସନ୍ତାନ ଦେଖି ଶିଶୁ ଜନ୍ମ କରିଥିବା ସ୍ତ୍ରୀ ଲୋକଟି ଉକ୍ତ କନ୍ୟା ସନ୍ତାନକୁ ନେଇ ଘରକୁ ଫେରି ନପାରିବାର ଦୁଃଖ ଡାକ୍ତରଙ୍କ ପାଖରେ କହିଲା । ହାୟରେ ମାତୃତ୍ୱ ନଅମାସ ଧରି ପ୍ରସ୍ତୁତ କରିଥିବା ମଣିଷ ପିଲାକୁ ଏମିତି ନଅମିନିଟ ଲାଗି ନଥିଲା ନିଜଠୁ ଦୂରେଇ ଦେବାକୁ ।

ସଙ୍ଗେ ସଙ୍ଗେ ଡାକ୍ତରଙ୍କୁ ମନେ ପଡେ ଦୀପକ୍‌ବାବୁଙ୍କ କଥା । କିନ୍ତୁ ଏ ଯେ କନ୍ୟା ସନ୍ତାନ, ଜନ୍ମ କଲା ମାଆ ତାକୁ ଗ୍ରହଣ କରିବାକୁ ରାଜି ହେଉନି, ଦୀପକବାବୁ କ'ଣ ତାକୁ ଆପଣେଇବେ ? ଏସବୁ ଶଙ୍କା ଭିତରେ ଡାକ୍ତର ଦୀପକବାବୁଙ୍କୁ ଫୋନ କଲେ ।

ଡାକ୍ତରଙ୍କ ଫୋନ୍ ପାଇ ଦୀପକବାବୁ ଖୁସୀରେ କୁଣ୍ଢେ ମୋଟ ।

'ଦୀପକବାବୁ ଏଇମାତ୍ର ପିଲାଟି ଜନ୍ମ ହୋଇଛି, ତା'ମାଆ ତାକୁ ନେବାକୁ ଚାହୁଁନି ।'

'ଡାକ୍ତରବାବୁ ସେହି ଛୁଆକୁ ମୁଁ ନେବି ଆପଣଙ୍କ ମେଡିକାଲ ଖର୍ଚ୍ଚ ଯାହା ହୋଇଥିବ ମୁଁ ସବୁ ଦେଇଦେବି ।'

'କିନ୍ତୁ ଗୋଟିଏ ଅସୁବିଧା ଅଛି ।'

'କ'ଣ ?'

'ପିଲାଟି କନ୍ୟା ସନ୍ତାନ ।'

'ନା, ମୋର ସେହି କ୍ଷୋଭ ନାହିଁ । ମୁଁ ସେହି ଝିଅକୁ ମୋର ପରିଚୟ ଦେବି ।'

'ତେବେ ଆସନ୍ତୁ ପିଲାଟିକୁ ଜନ୍ମ କରିଥିବା ମାଆ ସହ ଦେଖା କରିନେବେ ସେ କିଏ କ'ଣ ସବୁ ବୁଝିନେବେ ।'

'ନା, ଡାକ୍ତରବାବୁ ମୋର ସେସବୁ ଜାଣିବାର କିଛି ଆବଶ୍ୟକ ନାହିଁ । ଆପଣ ସେ ସ୍ତ୍ରୀ ଲୋକଙ୍କୁ ଛାଡି ଦିଅନ୍ତୁ ଆଉ ତାଙ୍କଠାରୁ ମେଡିକାଲ ଖର୍ଚ୍ଚ କିଛି ନେବେ ନାହିଁ, ସେ ମୋ ଝିଅ ଏଣୁ ମୁଁ ତା'ର ସମସ୍ତ ଖର୍ଚ୍ଚ ବହନ କରିବି ।'

ତା' ପରେ ଦୀପକବାବୁ ଡାକ୍ତରଖାନାରେ ପହଞ୍ଚି ଯାଆନ୍ତି । ପିଲାଟିକୁ କୋଳେଇ ବହୁତ ଗେହ୍ଲା କରି ଘରକୁ ନେଇ ଆସନ୍ତି । ଏଥର ଜୈନ ଦମ୍ପତି ପିଲାଟିକୁ ନେଇ ଖୁବ୍ ଖୁସୀର ଦିନ କାଟନ୍ତି । ପିଲାଟିକୁ ନା ଦିଅନ୍ତି "ଆର୍ଚ୍ଚି" । ଚାରିଭାଇଙ୍କ ପରିବାରରେ ଆର୍ଚ୍ଚି ଖୁବ୍ ଗେଲବସରରେ ବଢ଼େ । ଆର୍ଚ୍ଚି ଜୈନ ପରିବାରର ସଦସ୍ୟ ହେବା ପରେ ପରେ ଦୀପକବାବୁଙ୍କ ସାନ ତିନି ଭାଇଙ୍କ ଘରେ ଗୋଟିଏ ପରେ ଗୋଟିଏ ସନ୍ତାନ ଜନ୍ମ ହୁଅନ୍ତି । ସବା ସାନ ଭାଇର ତିନୋଟି ପିଲା ଏବଂ ଦ୍ୱିତୀୟର ଦୁଇଟି, ମଝିଆର ଗୋଟିଏ ପିଲା ହେବା ପରେ ଭାଇମାନେ ଦୀପକବାବୁଙ୍କୁ ସାନ ଭାଇର ତିନି ସନ୍ତାନଙ୍କ ମଧ୍ୟରୁ ଗୋଟିଏକୁ ପୋଷ୍ୟ ସନ୍ତାନରେ ନେବାକୁ କହନ୍ତି । ଆର୍ଚ୍ଚି ତାଙ୍କ ପରିବାରର ରକ୍ତ ହୋଇ ନଥିବାରୁ ତାକୁ ନରଖି ବରଂ ନିଜଭାଇର ସନ୍ତାନକୁ ରଖିବାକୁ ପରିବାର ଲୋକ ବାଧ୍ୟ କରନ୍ତି । କିନ୍ତୁ ଦୀପକବାବୁ ଏଭଳି ପ୍ରସ୍ତାବକୁ ଆଦୌ ଗ୍ରହଣ କରନ୍ତି ନାହିଁ । ଯେଉଁ ପିଲାଟିକୁ ତା'ମାଆ ଜନ୍ମ କରି ଛାଡିଗଲା ତାକୁ ପାଳିପୋଷି ଏତେ ବଡ କଲାପରେ ତା'ପ୍ରତି ଏତେ ମୋହ ଆସିବା ପରେ ଆଉ କ'ଣ ତାକୁ ଦୁରେଇବା ସମ୍ଭବ ? ଦୀପକବାବୁ ସଭିଙ୍କୁ ଖୋଲାଖୋଲି କହନ୍ତି, 'ମୋର ମୃତ୍ୟୁରେ ଆର୍ଚ୍ଚି ହିଁ ମୋତେ ମୁଖାଗ୍ନି ଦେବ । ଆର୍ଚ୍ଚି ହିଁ ମୋର ଝିଅ ପୁଅ ଉଭୟ ।'

ଆର୍ଚ୍ଚିକୁ ସାତ ବର୍ଷ ହେବାବେଳକୁ ଦୀପକବାବୁଙ୍କର ଦେଖା ହେଲା ସେହି ଜ୍ୟୋତିଷଙ୍କ ସହ । ମନସ୍ତାପ ଏବଂ ଦୁଃଖିଥିବା ଦୀପକବାବୁ ଏବେ କିନ୍ତୁ ଖୁବ୍ ଖୁସୀ ଜଣାପଡୁଥାଆନ୍ତି । ଜ୍ୟୋତିଷ ଏମନ୍ତ ଖୁସୀର କାରଣ ପଚାରନ୍ତେ ଦୀପକବାବୁ ଜ୍ୟୋତିଷବାଣୀ ସତ୍ୟ ହେବା ଖବରଟି ଜଣାଇଲେ । ଏବଂ ନିଜ ଘରକୁ ତାଙ୍କୁ ଘେନି ନିଅନ୍ତି । ଘରକୁ ପଶୁ ପଶୁ ଦୀପକବାବୁଙ୍କ ଶ୍ରୀମତି ଆସି ଜ୍ୟୋତିଷଙ୍କୁ ମୁଣ୍ଡିଆ ହେଲେ ଏବଂ ଡାକପକାନ୍ତି, "ମାଆ ଆର୍ଚ୍ଚି..."

ଆର୍ଚ୍ଚି ଆସି ଜ୍ୟୋତିଷଙ୍କୁ ମୁଣ୍ଡିଆ ମାରି ଦୌଡି ପଳାଇଲା ।



*(ସାବିତ୍ରୀ)*

# ଦ୍ୱିତୀୟ ବର

ନରହରି ସହ ନନ୍ଦିନୀର ଦ୍ୱିତୀୟ କଳତ୍ର ବାଲ୍ୟ ବିବାହ ସରିଥିଲା । ନରହରିଙ୍କ ପ୍ରଥମ ସ୍ତ୍ରୀର ମୃତ୍ୟୁ ହୋଇଯାଇଥିଲା । ମିଶ୍ର ପରିବାର ସେହି ଅଞ୍ଚଳର ଖୁବ୍ ଖାନ୍‌ଦାନି ଓ ଜଣାଶୁଣା । ଦ୍ୱିତୀୟ ବିବାହ ହେତୁ ଯୌତୁକ ବିଶେଷ କିଛି ଦେବାକୁ ନଥିଲା । ଅଳ୍ପ କିଛି ଟଙ୍କା, ପାଟ ଯଥା ଓ ସୁନାମୁଦି ଆଦି ଦେଇ ଅପ୍ରାପ୍ତ ବୟସ୍କ ନିରୀହ ବାଳିକା ସହ ଚାଳିଶି ବର୍ଷ ବୟସ୍କ ଜଣେ ଲୋକ ସହ ନନ୍ଦିନୀର ବିବାହ ସ୍ଥିର ହେଲା । ବର ନନ୍ଦିନୀର ମଉସାଙ୍କ ସାବତ ମାଁର ପୁଅ । ମଉସାଙ୍କ ଚାପ, ତା'ଉପରେ ଅଭାବି ସଂସାର। ନନ୍ଦିନୀର ବାପା, ବୋଉ ସେହି ପ୍ରସ୍ତାବରେ ରାଜିହୋଇ ଝିଅକୁ ବାଲ୍ୟ ବିବାହ କରିଥିଲେ ।

ବରପାତ୍ରର ସ୍ୱାସ୍ଥ୍ୟ ଅସୁସ୍ଥ ପୁଣି ବ୍ୟଭିଚାର ଇତ୍ୟାଦି କେତେକ ଦୁର୍ଗୁଣ ଥିବାରୁ ଦ୍ୱିତୀୟ କଳତ୍ର ହିସାବରେ କେହି ଝିଅ ଦେଉ ନଥିଲେ, ହେଲେ ନନ୍ଦିନୀର ବାପା ବୋଉଙ୍କୁ ମିଛ ସତ କହି ନନ୍ଦିନୀର ମଉସା ପ୍ରସ୍ତାବଟି ବାଧ୍ୟରେ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ନନ୍ଦିନୀର ଏହି ବିବାହ ପରେ ନନ୍ଦିନୀବାପାଙ୍କର ପରଲୋକ ହୋଇଗଲା । ନନ୍ଦିନୀ ବାପାଙ୍କର ପରଲୋକ ପରେ କ୍ରମଶଃ ସେହି ବରପାତ୍ରର ସ୍ୱାସ୍ଥ୍ୟର ଅବନତି ଅବସ୍ଥା ସହ ତା'ର କଳୁଷିତ ଚରିତ୍ର ବିଷୟରେ ସବୁକିଛି ନନ୍ଦିନୀ ପରିବାର ଜାଣିବାକୁ ପାଇଲେ । ସେଭଳି ଗୋଟିଏ ଦୁଷ୍ଚରିତ୍ର ପୁଣି ଦୁରାରୋଗ୍ୟ ଲୋକ ସହ ଜଣେ ଅମାୟିକ ବାଳିକାକୁ ଯେ ଘର ସଂସାର କରି ରହିବା ପାଇଁ କହିବାକୁ କୌଣସି ଲୋକ ସମ୍ମତି ଦେବନାହିଁ । ସବୁ କଥା ଜାଣିବା ପରେ ନନ୍ଦିନୀ ପରିବାର ଲୋକଙ୍କୁ  ଚାରିଆଡ଼ ଅନ୍ଧାର ଦିଶିଲା । ସାଧାରଣତଃ ବ୍ରାହ୍ମଣ ସମାଜରେ

ଗୋଟିଏ ଝିଅର ଦ୍ୱିତୀୟ ଥର ବିବାହ ଏକ ଅସମ୍ଭବ କଥା ଥିଲା। ଏପରି ପରିସ୍ଥିତିରେ ସେମାନେ କ'ଣ କରିବେ କିଛି ସ୍ଥିର କରିପାରୁନଥିଲେ। ଘରେ ମୁରବୀ ହୋଇ ପୁରୁଷ ଲୋକ କେହି ନାହାନ୍ତି। ନନ୍ଦିନୀବାପାଙ୍କ ମୃତ୍ୟୁ ପରେ ସେମାନଙ୍କ ଦୁଃଖ ସୁଖ ବୁଝୁଥିଲେ ନନ୍ଦିନୀର ମାମୁଁ । ସେ ମଧ୍ୟ ନନ୍ଦିନୀର ବାପାଙ୍କ ମୃତ୍ୟୁର ଛଅମାସ ପରେ ମୃତ୍ୟୁବରଣ କଲେ । ଅନ୍ୟ ଯେଉଁମାନେ ପିଉସା, ପିଉସୀ କିମ୍ବା ମଉସା, ମାଉସୀ ବା ଅନ୍ୟ ବନ୍ଧୁବାନ୍ଧବ ସବୁଥିଲେ; ସେମାନଙ୍କ କାହାରି ହେଲେ ନନ୍ଦିନୀ ପରିବାର ପ୍ରତି ସହାନୁଭୂତି କିମ୍ବା ଅନୁକମ୍ପା ନଥିଲା । ପଡ଼ିଶାରେ ନନ୍ଦିନୀର କକା, ଖୁଡ଼ୀ ରହୁଥାନ୍ତି । ସେମାନେ ମଧ ନନ୍ଦିନୀ ପରିବାର ସହ ସମସ୍ତ ସମ୍ପର୍କ ତୁଟାଇ ଦେଇଥାନ୍ତି । ଏହାରି ଭିତରେ ନନ୍ଦିନୀର ବଡ଼ଭାଇ ମଧ ପରିବାର ସହ କଳିଗୋଳ କରି ଜମି ଘର ପ୍ରଭୃତିରୁ ଭାଗ ନେଇ ସେ ଅଲଗା ରହୁଥାନ୍ତି । ବଡ଼ଭାଇ ପରିବାର କଥା କିଛି ବୁଝୁନଥିଲେ । ଖାଲି ଯା ନନ୍ଦିନୀର ବଡ଼ଭଉଣୀ ଓ ଭିଣୋଇ ବେଳେବେଳେ ଆସି ଭଲମନ୍ଦ ବୁଝି ଯାଉଥାନ୍ତି । ପରିବାର ଭିତରେ ନନ୍ଦିନୀର ବିବାହକୁ ନେଇ ସମସ୍ତେ ସର୍ବଦା ବ୍ୟସ୍ତ ରହୁଥିଲେ, ଅନ୍ୟ ଭାଇ ଭଉଣୀ ସବୁ ସାନ । ଦ୍ୱିତୀୟ ଭାଇଟି ସାନ ହେଲେ ବି ପରିବାର ଦାୟିତ୍ୱ ଟିକେ ବୁଝିଲାଣି । ଦିନେ ଦ୍ୱିତୀୟ ଭାଇ ଶ୍ୟାମାପ୍ରସାଦ ଭାରି ଚିନ୍ତାରେ ବସିଥାଏ ତା'ମୁଣ୍ଡକୁ ଏବେ ପରିବାର ଦାୟିତ୍ୱ ।

ନନ୍ଦିନୀର ବିବାହ କଥା ଏବେ ଗୋଟିଏ ଜଟିଳ ପରିସ୍ଥିତି ଆଣି ଦେଇଛି ସେହି ପରିବାର ପାଇଁ । କାହାକୁ କହିବ, କ'ଣବା କରିବ, କାହାର ସାହାଯ୍ୟ ନେବ, କିଏ ବା ଏଇ ଜଟିଳ ସମସ୍ୟାର ସମାଧାନ କରିବ କିଛି ବୁଝିପାରୁନଥାଏ । ଠିକ୍ ଏତିକି ବେଳେ ବର ଘର ତରଫରୁ ବରର ଦୁଇ ଭିଣୋଇ ମିଶି ନନ୍ଦିନୀ ଘରକୁ ଆସିଲେ । ସେମାନେ ନନ୍ଦିନୀର ବୋଉଙ୍କୁ କହିଲେ, 'ଆମେ ଦୁଇଟି ପୁଆଣି ଯୋଗ ନେଇ ଆସିଛୁ, ତମ ଝିଅକୁ କେଉଁ ଯୋଗରେ ପଠାଇବ ସ୍ଥିର କରି ଆମକୁ ଜଣାଅ । ଶାଶୁ ଆମର ବୁଢ଼ିଲୋକ ରନ୍ଧାବଢ଼ା କାମକୁ ପାରୁନାହାଁନ୍ତି । ତେଣୁ ଚଳିତ ମାସ ବା ଆଗାମୀ ମାସର ଯୋଗରେ ଝିଅକୁ ପଠାଇ ଦେବାକୁ ପଡ଼ିବ ।' ନନ୍ଦିନୀର ବୋଉ ତାଙ୍କ କଥାର କିଛି ଜବାବ ଦେଇପାରିଲେ ନାହିଁ । ଖାଲି ଏତିକି କହିଲେ, 'ପୁଅ ଦୁଇଜଣ ବାହାରେ ରହୁଛନ୍ତି ତାଙ୍କୁ ଡକାଇ ସବୁକଥା କହିବି ତା'ପରେ ତୁମକୁ ଖବର ଦେବି।' ଏତିକି କହି ସେମାନଙ୍କୁ ବିଦାୟ ଦେଲେ ।

ଶ୍ୟାମା ଘରକୁ ଫେରି ବୋଉଙ୍କଠାରୁ ସବୁ ଶୁଣି ବୁଝିଲାପରେ କଟା ଘା'ରେ ଚୂନ ଦେଲାପରି ତାକୁ ଲାଗିଲା । ଝିଅର ପୁଆଣୀ ଘର କଥା ଶୁଣି ଶ୍ୟାମା ଏବଂ ତା'ବୋଉ ଭାଙ୍ଗି ପଡ଼ିଲେ । ଦିନରାତି ଗୋଟିଏ ଚିନ୍ତା କ'ଣ କରିବା କେମିତି ସମାଧାନ ହେବ । ଏତେବେଳକୁ ଶ୍ୟାମା ମୁଣ୍ଡରେ ଗୋଟିଏ ବୁଦ୍ଧି ପଶିଲା; ପ୍ରଥମେ ଭଉଣୀ

ପାଇଁ କେଉଁଠି ହେଲେ ନୂଆରେ ଗୋଟିଏ ପ୍ରସ୍ତାବ ସ୍ଥିର କରିବାକୁ ହେବ ତା’ ପରେ ଅନ୍ୟକଥା ।

ସାଧାରଣରେ ଅଭାବି ସଂସାରର ଅଭିଆଡ଼ି ଝିଅକୁ ବର ମିଳିବା କଷ୍ଟ । ସେପରିସ୍ଥଳେ ଗୋଟିଏ ବିବାହିତ କନ୍ୟାକୁ କିଏ ବା କାହିଁକି ବିଭାହେବ । ତଥାପି ସେମାନେ ଚେଷ୍ଟା କଲେ; କିନ୍ତୁ କେଉଁଠି ହେଲେ ସ୍ଥିର ହୋଇପାରୁ ନଥାଏ । ସେମାନଙ୍କ ଚେଷ୍ଟା ସଫଳ ହେବାପରି କିଛି ହେଲେ ସୂଚନା ଦିଶୁ ନଥାଏ । ଦିନ ପରେ ଦିନ ଓ ମାସ ପରେ ମାସ ଗଡ଼ି ଯାଉଥାଏ କ’ଣ ହେବ କିଛି ଜଣାପଡୁ ନଥିଲା । କଥାରେ ଅଛି ମନୁଷ୍ୟ ଯେତେବେଳେ ସମସ୍ତ ଆଶା ହରାଇ ବସେ ନିଜକୁ ସଂପୂର୍ଣ୍ଣ ଅସହାୟ ମନେକରେ, ସେତିକିବେଳେ ଯାଇ ଭଗବାନ ସାହାଯ୍ୟ କରିବାକୁ ଆସିଥାନ୍ତି । ଠିକ୍ ସେହିଭଳି ଘଟଣା ଆସି ଘଟିଲା ।

ଦିନକର ଘଟଣା, କାମ ସାରି ମନକୁ ଟିକିଏ ହାଲୁକା କରିବା ପାଇଁ ସିନେମା ହଲ୍‌ରେ ବସି ସିନେମା ଦେଖୁଥାଏ ଶ୍ୟାମା । କିଛି ସମୟ ପରେ ମଧ୍ୟାନ୍ତର (ଇଣ୍ଟରଭାଲ) ହେଲା । ସିନେମା ହଲ୍‌ରୁ ଦର୍ଶକ ସବୁ ବାହାରକୁ ଆସିଲେ । ଶ୍ୟାମା ମଧ୍ୟ ସମସ୍ତଙ୍କ ସହ ବାହାରକୁ ଆସିଲା । ବାହାର ଆଲୁଅକୁ ଆସିବା ପରେ ବାରଣ୍ଡା ଉପରେ ଶ୍ୟାମାର ବଡ଼ ପିଉସୀଙ୍କ ଦ୍ୱିତୀୟ ପୁଅ ଦନାର୍ଦ୍ଦନଙ୍କ ସହ ତା’ର ସାକ୍ଷାତ ହୁଏ। ତାଙ୍କୁ ନମସ୍କାର ଜଣାଇ ସାଥିହୋଇ ଦୁହେଁ ଚା’ ପିଇବାକୁ ପାଖ ହୋଟେଲକୁ ଗଲେ । ହୋଟେଲରେ ଦୁହେଁ ଚା’ପିଇ ପୁଣି ସିନେମା ହଲ ବରଣ୍ଡାକୁ ଆସିଲେ । ଦୁହେଁ ସାକ୍ଷାତ ପରେ କିଛିଟା କଥାବାର୍ତ୍ତା ପରେ ହଠାତ୍ ଦନାର୍ଦ୍ଦନ ପଚାରିଲେ ‘କ’ଣ ନନ୍ଦିନୀର ବିବାହ ପ୍ରସ୍ତାବ କେଉଁଠି ଠିକ୍ ହେଲା ?’ ଶ୍ୟାମା ମୁଣ୍ଡ ହଲାଇ ନାହିଁ କହେ । ଶ୍ୟାମା କଥା ଶୁଣି ଦନାର୍ଦ୍ଦନ ମଧ୍ୟ ଟିକିଏ ଚିନ୍ତା କଲାଭଳି ରହିଲେ । ଦୁହିଁଙ୍କ ଭିତରେ କିଛି ସମୟ ପାଇଁ ନୀରବତା । ହେଲେ ଦନାର୍ଦ୍ଦନଙ୍କ ମୌନତା ଦେଖି ଶ୍ୟାମା ମନରେ ତାଙ୍କୁ କହିବା ପାଇଁ କିଛିଟା କଥା ଉଙ୍କି ମାରିଲା । ପରବର୍ତ୍ତୀ ସମୟରେ ସାହସ କରି ଶ୍ୟାମା ମନ କଥା ତାଙ୍କୁ କହିବାକୁ ସ୍ଥିର କରେ ଏବଂ କଥା ଛଳରେ ପଚାରେ, ‘ଆପଣ ଯେତେବେଳେ ସାକ୍ଷାତ ହେଲେ ନନ୍ଦିନୀର ବିବାହ କେଉଁଠି ସ୍ଥିର ହେଲା କି ବୋଲି ଖାଲି ପଚାରୁଛନ୍ତି କିନ୍ତୁ ନିଜକଥା କିଛି କହୁନାହାଁନ୍ତି ।’

ଦନାର୍ଦ୍ଦନ ଶ୍ୟାମାକୁ ପଚାରିଲେ, ‘ମୋ ନିଜ କଥା ତୁମକୁ କ’ଣ କହିବି ?’ ସଙ୍ଗେ ସଙ୍ଗେ ଶ୍ୟାମା କହେ, ‘ନିଜ କଥା, ମାନେ ନନ୍ଦିନୀ ସହ ବାହାହେବା କଥା।’ ଶ୍ୟାମା କଥା ଶୁଣି ସେ ଟିକିଏ ଘାବରେଇ ଗଲେ, ଦନାର୍ଦ୍ଦନ ପ୍ରସ୍ତୁତ ନଥିଲେ ହଠାତ୍

ଏମିତି ଶୁଣିବେ ବୋଲି । ଶ୍ୟାମା ତାଙ୍କଠାରୁ କୌଣସି ଜବାବ ପାଇବା ଆଗରୁ ପୁଣି କହିଚାଲେ, 'ଦେଖୁଛନ୍ତି କେତେ ଚେଷ୍ଟା ମୁଁ କରୁଛି, କେତେ ଯାଗାକୁ ଯାଇ କେତେ ଲୋକଙ୍କ ସହ ମିଶି ଆସୁଛି, ହେଲେ ଆଜି ସୁଦ୍ଧା ନନ୍ଦିନୀ ପାଇଁ କେଉଁଠି ପ୍ରସ୍ତାବ ସ୍ଥିର ହୋଇପାରିଲା ନାହିଁ । ବୁଲି ବୁଲି ହତାଶ ହେଲିଣି ବୋଉ ମଧ୍ୟ ସବୁବେଳେ ଚିନ୍ତାକରି ରହୁଛନ୍ତି ଆପଣ ଯଦି ରାଜି ହୁଅନ୍ତେ ତାହାହେଲେ ଆମେ ସବୁ ଖୁସି ହୁଅନ୍ତୁ... ।'

ଦନାର୍ଦ୍ଦନ କିଛି ସମୟ ପାଇଁ ଚିନ୍ତିତ ହୋଇପଡ଼ିଲେ, ଶ୍ୟାମା ତୁନୀ ହୋଇ ରହେ । ଏତିକିବେଳେ ସିନେମା ଆରମ୍ଭ ହେବା ଘଣ୍ଟି ବାଜିଲା, ଦୁହେଁ ସିନେମା ହଲ ଭିତରକୁ ପଶିଲେ ଓ ଆଖପାଖ ଦୁଇଟି ଚୌକିରେ ଯାଇ ବସିଲେ । ଘଣ୍ଟି ବାଜିବା ଶବ୍ଦ ଶୁଣି ବାହାରେ ଥିବାଲୋକ ସବୁ କ୍ରମଶଃ ଭିତରକୁ ଆସୁଥାନ୍ତି । ଭିତର ଆଲୁଅ ଲିଭିନଥାଏ, ହଠାତ୍ ସେ କହିଲେ, 'ବୁଝିଲନା ଶ୍ୟାମା ନନ୍ଦିନୀକୁ ବାହା ହେବାରେ ମୋର କିଛି ଆପତ୍ତି ନାହିଁ ମୁଁ ସଂପୂର୍ଣ୍ଣ ରାଜି ହେଲେ, ମୋ ବାପା ବୋଉ ପୁଣି ବଡ଼ଭାଇ ସେମାନେ ରାଜିହେଲେ ହେଲା ।' ଦନାର୍ଦ୍ଦନ ମୁହଁରୁ ସମ୍ମତି ସୂଚକ କଥା ଶୁଣି ଶ୍ୟାମା ଖୁସୀ ହୋଇଯାଏ । ସଙ୍ଗେ ସଙ୍ଗେ ସେ ଦନାର୍ଦ୍ଦନଙ୍କୁ କହେ, 'ଆପଣ ଯଦି ରାଜିଅଛନ୍ତି ତା'ହେଲେ ଚାଲନ୍ତୁ ଆପଣଙ୍କ ବାପା ବୋଉ, ବଡ଼ଭାଇଙ୍କୁ ବୁଝାଇଦେବା ।' ଦୁହେଁ ମିଶି ତୁରନ୍ତ ସିନେମା ହଲରୁ ବାହାରି ଆସି ଦନାର୍ଦ୍ଦନଙ୍କ ଘରକୁ ଆସିଲେ । ସିନେମା ଦେଖା ସେଦିନ ସେତିକିରେ ରହିଲା ।

ଦନାର୍ଦ୍ଦନଙ୍କ ଘରେ ପହଞ୍ଚି ଦେଖିଲେ ଘରେ ସମସ୍ତେ ଉପସ୍ଥିତ ଅଛନ୍ତି । ପହଞ୍ଚିବା ପରେ ଶ୍ୟାମା ସମସ୍ତଙ୍କୁ  ନମସ୍କାର ଜଣାଇଲା । ଶ୍ୟାମାକୁ  ଦେଖି ତା' ପିଉସା ପିଉସୀ କେତେବେଳେ ଆସିଲୁ, ଘରେ ସବୁ ଭଲ ଅଛନ୍ତିକି, ପୁଣି ନନ୍ଦିନୀର ବିବାହ ପ୍ରସ୍ତାବ କେଉଁଠି ଠିକ୍ ହେଲାକି ଇତ୍ୟାଦି ପଚାରିଲେ । ତାଙ୍କ କଥାକୁ ଜବାବ ଦେଇ ଶ୍ୟାମା କହେ, 'ମୁଁ ତ ପିଲାଲୋକ, ମୁଁ ବା କାହାକୁ ଜାଣିଛି ଯେ କାହାଦ୍ୱାରା ପ୍ରସ୍ତାବ ଠିକ୍ କରିବି, ଆପଣମାନେ ସମସ୍ତେ ତୁନି ହୋଇ ରହିଯାଉଛନ୍ତି କେହି ହେଲେ ବି ସେ ଦିଗରେ ଚେଷ୍ଟା କରୁନାହାନ୍ତି । ମୁଁ ଯେତେବେଳେ ଆସୁଛି ସେଇ ଗୋଟିଏ କଥା ପଚାରୁଛନ୍ତି ।' ଶ୍ୟାମା କଥା ଶୁଣି ଦନାର୍ଦ୍ଦନଙ୍କ ବଡ଼ ଭାଇ ନୃସିଂହ କହନ୍ତି, 'ଆମେ ଆଉ କ'ଣ କରିବୁ   କହୁନୁ ?' ଓଲଟି ପ୍ରଶ୍ନ କଲେ । ତାଙ୍କ କଥାକୁ ଆଉ ଅଧିକ ନବଢ଼ାଇ ଶ୍ୟାମା ସଙ୍ଗେ ସଙ୍ଗେ ତାଙ୍କୁ କହେ, 'ଭାଇନା, ଆପଣ କ'ଣ କରିବେ ବୋଲି ମୋତେ ଯେତେବେଳେ ପଚାରୁଛନ୍ତି ମୁଁ କହୁଛି ଶୁଣନ୍ତୁ, ନନ୍ଦିନୀ ସହ ଦନାର୍ଦ୍ଦନଙ୍କ ବିବାହ କରିଦେଲେ କ'ଣ ହେବନି ? ମୋ ଭଉଣୀ ପାଇଁ ମୁଁ ଆଉ ଅଧିକ କ'ଣ କହିବି... ।' ହଠାତ୍ ଶ୍ୟାମା ତୁଣ୍ଡରୁ ଏଭଳି ଏକ ପ୍ରସ୍ତାବ ଆସିଯିବ ଏକଥା ସେମାନେ

ଜାଣି ନଥିଲେ । ଶ୍ୟାମା କଥା ଶୁଣି ପିଉସା, ପିଉସୀ ତାଙ୍କ ବଡ଼ପୁଅ ସବୁ ଆଶ୍ଚର୍ଯ୍ୟ ହେଲାଭଳି ତୁନି ହେଇ ରହିଗଲେ । ଶ୍ୟାମା ଖାଲି ଭଗବାନଙ୍କୁ ଡାକୁଥାଏ ପ୍ରଭୁ, ମୋତେ ସାହାଯ୍ୟ କରନ୍ତୁ ମୋ ପ୍ରସ୍ତାବରେ ସେମାନେ ରାଜି ହୋଇଯାଆନ୍ତୁ । କିଛି ସମୟ କାହା ତୁଣ୍ଡରୁ କିଛି କଥା ବାହାରୁ ନଥାଏ । କିଛି ସମୟ ପରେ ମୌନ ଭାଙ୍ଗି ନୃସିଂହ ଭାଇନା କହିଲେ, 'ତୁ ଯାହା କହୁଛୁ ସେଥିରେ ଆମର ଅରାଜି ହେବା କିଛି ନାହିଁ ହେଲେ ଦନାର୍ଦ୍ଦନକୁ  ବୁଝିବାକୁ ହେବ ।' ଏତିକି କହି ଭାଇର ନାଁ ଧରି ପାଖକୁ ଡାକିଲେ, ଦନାର୍ଦ୍ଦନ ଦାଣ୍ଡ ବାରଣ୍ଡାରେ ଥିଲେ ଘରକୁ ଆସି କିଛି ନକହି ମୌନ ହୋଇ ରହିଗଲେ, ତାଙ୍କ ମୌନତା ଦେଖି ଶ୍ୟାମା ଉପରେପଡ଼ି କହିଦିଏ, 'ଆପଣମାନେ ଯେତେବେଳେ ଠିକ୍ କହୁଛନ୍ତି, ସେ ଆଉ କ'ଣ ମନା କରିବେ ? ଆପଣମାନେ ମୁରବୀ ସବୁକିଛି ଆପଣମାନଙ୍କ ଇଚ୍ଛା ।' ଶ୍ୟାମା କଥାଶୁଣି ସେମାନେ ସମସ୍ତେ ରାଜି, 'ତା' ହେଲେ ଠିକ୍ ହେଲା । ଆମର ସବୁ ରାଜି ତୁ ଯାଇ ମାଇଁଙ୍କି ଏକଥା ଜଣାଇ ଦେ ଯେ ଆମେ ନନ୍ଦିନୀକୁ ଆମ ଘରକୁ ବୋହୂକରି ଆଣିବୁ ।'

ଶ୍ୟାମା ସ୍ୱପ୍ନରେ ବି ଭାବି ନଥିଲା ଯେ ତା'କଥାରେ ସଙ୍ଗେ ସଙ୍ଗେ ସେମାନେ ରାଜି ହୋଇଯିବେ । ତାର ବେଶୀ ଭୟଥିଲା ତା' ବଡ଼ ପିଉସୀଙ୍କୁ । କାରଣ ସେ ଆଗରୁ ତାଙ୍କ ପୁଅ ଦନାର୍ଦ୍ଦନ ପାଇଁ ବାହାରେ ପ୍ରସ୍ତାବ ଖୋଜୁଥିଲେ; ତାଙ୍କ ଇଚ୍ଛା ପୁଅ ବାହାହୋଇ ବହୁତ କିଛି ଜାନି ଯୌତୁକ ଆଣିବ । ହେଲେ ବଡ଼ପୁଅ ଆଉ ବାହା ହେବା ପୁଅ ଦୁହେଁ ଯେତେବେଳେ ରାଜି ହୋଇଗଲେ ସେ ବାହାରକୁ ମନାକରି ପାରିଲେ ନାହିଁ । ଭିତରେ କିନ୍ତୁ ଷୋହଳପଣ ଇଚ୍ଛା ନାହିଁ ସେ ଯାହାହେଉ ଶ୍ୟାମା ସଙ୍ଗେ ସଙ୍ଗେ ତାଙ୍କ ଘରୁ ବସଷ୍ଟାଣ୍ଡକୁ ନାଇଟ୍ ହଲ୍ଟ ବସ୍‌ରେ ଆସି ଘରେ ପହଞ୍ଚିଯାଏ, ପ୍ରଥମେ ଘରର ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆ ହୁଏ । ତାକୁ ଦେଖି ବୋଉ ମନରେ ପ୍ରଶ୍ନ, 'କିରେ ! ଆଜି ଏତେ ରାତି କଲୁ ଯେ, କ'ଣ ଏତେ କାମ ଥିଲାକି ?'

'ହଁ ବୋଉ, ଆଜି ବହୁତ କାମ କରିଆସିଛି । ଯେଉଁ କାମ ପାଇଁ ଅମେ ଦିନରାତି ଭାଳି ହେଉଥିଲେ ସେଇ କାମ ଆଜି ସାରିଦେଇ ଆସିଛି ।' ସେ କିଛି ବୁଝିପାରୁନଥିଲେ ପୁଅ ତାଙ୍କର କେଉଁ କାମକୁ ଉଦ୍ଦେଶ୍ୟ କରି କହୁଛି । ଶ୍ୟାମା ବୋଉର ମୁହଁରେ ପ୍ରଶ୍ନ ଶୁଣି ଆଉଟିକେ ସ୍ପଷ୍ଟ କରି କୁହେଁ, 'ଆଜି ନନ୍ଦିନୀ ପାଇଁ ବିବାହ ପ୍ରସ୍ତାବ ସ୍ଥିର ହୋଇଗଲା ବୋଉ ।' ବୋଉ ମୁହଁରେ ଆଶ୍ଚର୍ଯ୍ୟ, 'ହଇରେ କାଇଁ କେହି ତ ଆମ ଘରକୁ ଆସି ନାହାନ୍ତି ପ୍ରସ୍ତାବ ସ୍ଥିର କେମିତି ହେଲା ?'

'ସେମାନେ ବହୁତଥର ଆମ ଘରକୁ ଆସିଛନ୍ତି, ତେଣୁ ଏବେ ଆଉ ନଆସି ତାଙ୍କ ଘରେ ରହି ବିବାହ ପ୍ରସ୍ତାବ ସ୍ଥିର କରିଦେଲେ । ଏଣିକି ଆମକୁ ଟଙ୍କା ପଇସାର

ଯୋଗାଡ଼ କରି ବାହାଘର ପାଇଁ ପ୍ରସ୍ତୁତ ହେବାକୁ ହେବ ।' ଶ୍ୟମା କଥା ଶୁଣି ସେ ଆହୁରି ଆଶ୍ଚର୍ଯ୍ୟ ହୋଇ କହିଲେ, 'କ'ଣ ତୁ କହୁଛୁ ମୁଁ କିଛି ବୁଝିପାରୁନି, ବୁଝିଲା ଭଳି କହ ।' ଏଥର ଶ୍ୟାମା ସବୁ କଥା ବିସ୍ତୃତ ଭାବରେ ଜଣାଇଲା । ପୁଅର ଏଇ ସଫଳତାକୁ ସେ ଅତି ଆଶ୍ଚର୍ଯ୍ୟ ହୋଇ ଘଡ଼ିଏ ଚିନ୍ତାକଲେ, 'ତା' ହେଲେ ଆମେ ତାଙ୍କ କଥାକୁ ବିଶ୍ୱାସ କରି ଆଗେଇବା... ।'

ଫୁଲ ଫୁଟିଲେ ଚାରିଆଡ଼େ ବାସନା ଚହଟେ କିଛି ଦିନ ଭିତରେ କଥାଟା ଚାରିଆଡ଼ ପ୍ରକଟ ହେଲା । ତୁଣ୍ଡ ବାଇଦ ସହସ୍ର କୋଶ ଭଳି ବିବାହ ପ୍ରସ୍ତାବ ସ୍ଥିର ହେବା କଥା ନନ୍ଦିନୀର ପ୍ରଥମ ଶାଶୁଘର ଲୋକେ ସବୁ ଶୁଣିଲେ । କଥାରେ ଅଛି 'ଖଳ ଲୋଡ଼ନ୍ତି ଗୋଳ' । ପ୍ରସ୍ତାବ ସ୍ଥିର ହେବା ଶୁଣି ତାଙ୍କର ସାନ ଜ୍ୱାଇଁ ପ୍ରଫୁଲ୍ଲଙ୍କୁ ନନ୍ଦିନୀର ବଡ଼ ପିଉସୀ ଘରକୁ ପଠାଇ ତାଙ୍କୁ ଧମକ ଦେଇ କହିଲେ 'ତୁମେ ଯଦି ବୋହୂ କରି ନନ୍ଦିନୀକୁ ଆଣିବ ତା'ହେଲେ ତୁମ ସମସ୍ତଙ୍କ ବିରୋଧରେ କେଶ୍ କରି ତୁମକୁ କୋର୍ଟ ଦେଖାଇବୁ ହୁସିଆର୍ ।'

'ମଲୁ ଲୋଡୁଥିଲା କାକର ପାଣି, ବଇଦ କହିଲା ପିଇ ତୋରାଣି ।' ଭଳି କଥାଟା ନନ୍ଦିନୀର ବଡ଼ ପିଉସୀଙ୍କ ମନକୁ ଖାପଖାଇଲା ! ସେମାନଙ୍କଘରେ ବନ୍ଧୁ କରିବା ତାଙ୍କର ଆଗରୁ ଇଚ୍ଛା ନଥିଲା । ସେ ସଙ୍ଗେସଙ୍ଗେ ତାଙ୍କ ଘରକୁ ଖବର ପଠାଇଲେ ଯିବା ପାଇଁ ସେ ଖବର ଦେଲେ ଏହା ଶୁଣି ଶ୍ୟାମା ତୁରନ୍ତ ବାହାରି ପଡିଲା । ଶ୍ୟାମାକୁ ସେମାନେ ସବୁକଥା କହିଲେ । ଶେଷରେ କହିଲେ, 'ଆମର ସଂପୂର୍ଣ୍ଣ ଇଚ୍ଛା ନନ୍ଦିନୀକୁ ଆମ ଘରକୁ ବୋହୂ କରି ଆଣିବାକୁ । ହେଲେ, କ'ଣ କରିବୁ ପିଲାମାନେ ମୋର ଚାକିରିଆ, କୋର୍ଟ ଯିବା ପର୍ଯ୍ୟନ୍ତ ସେମାନେ ଅଛନ୍ତି ଆମକୁ ଭୟ ଲାଗୁଛି ତେଣୁ ବର ପାଖରୁ ଯଦି ତା'ର ଦସ୍ତଖତ ଥାଇ କାଗଜ ଲେଖାଇ ଆଣି ଆମକୁ ଦେଇପାରିବୁ ତାହାହେଲେ ସେଇ କାଗଜ ବଳରେ ଆମେ ତୋ ଭଉଣୀକୁ ବୋହୂ କରି ଆମ ଘରକୁ ଆଣିବୁ । ଓକିଲକୁ ଆମେ ବୁଝିବାରୁ ସେ ଏକଥା କହିଲା, ତେଣୁ ବାପା ଅନ୍ୟ କିଛି ତୁ ଭାବିବୁ ନାହିଁ ।' ଶ୍ୟାମା ଆଗରୁ ଜାଣିଛି ତା' ପିଉସୀର ଇଚ୍ଛା ନାହିଁ ତା'ସାଙ୍ଗକୁ ତାଙ୍କର ଧମକ । ପିଉସୀର ମନ ପୂର୍ଣ୍ଣ ହେଲା । ଶ୍ୟାମାକୁ ମୁଣ୍ଡ ଉପରୁ ଆକାଶ ଛିଡ଼ି ପଡ଼ିଲା ଭଳି ଲାଗିଲା । ଚାରିଆଡ଼ ଅନ୍ଧାର ଦିଶିଲା । କ'ଣ କରିବ, ସେ କିଛି ସ୍ଥିର କରି ପାରିଲାନାହିଁ ।

ବିବାହ ବିଚ୍ଛେଦ ବା ବରପାଖରୁ ଛାଡ଼ପତ୍ର ଲେଖାଇ ଆଣିବା କଥା ଶୁଣିବା ମାତ୍ରେ ତାର ହାଲୁକା ଶୁଖିଗଲା ଆଗରୁ ସେ ଯେତେଟା ଖୁସି ହୋଇଥିଲା ଛାଡ଼ପତ୍ର କଥାଶୁଣି ସେତେଟା ନିରାଶା ତା' ମନକୁ ଆସିଗଲା । ସେ ଯେ କ'ଣ କରିବ କିପରି ଲେଖାଟି ଲେଖାଇ ଆଣିବ କିଛି ବୁଝିପାରିଲାନାହିଁ । ମନରେ ତାର କୋହ ସୃଷ୍ଟି ହେଲା

ଯେତିକି ଉତ୍ସାହିତ ହୋଇ ଆଗଉଥିଲା ସେଥିରେ ହଠାତ୍ ଭଟ୍ଟା ପଡ଼ିଗଲା । ଚାରିଦିଗ ତାକୁ ଶୂନ୍ୟ ଲାଗିଲା । କାହା ପାଖକୁ ଯିବ, କ'ଣ କରିବ, କିପରି କାଗଜଟି ଲେଖାଇ ଆଣିବ କିଛି ସ୍ଥିର କରିପାରିଲାନାହିଁ । କମ୍ ବୟସ ସେଥିରେ ପୁଣି ଏପରି ଅଡୁଆକୁ ସମାଧାନ କରିବାକୁ ହେବ ତା' ପକ୍ଷେ ଅସମ୍ଭବ ଭଳି ଜଣାଗଲା । କିଛି ସ୍ଥିର କରିନପାରି ସପ୍ତାହେ କେତେ ଚାଲିଗଲା । ପୁଣି ଥରେ ମନକୁ ସ୍ଥିର କରି ସାହସ ବାନ୍ଧେ । ଏଇ ଅଡୁଆ କଥା ବନ୍ଧୁବାନ୍ଧବରେ ଅଳ୍ପ ବହୁତ ସବୁ ଜାଣିଲେ ହେଲେ କେହି ଜଣେ ମଧ୍ୟେ ସାହାଯ୍ୟ କରିବା କଥା ଦୂରେଥାଉ ସହାନୁଭୂତି ମଧ୍ୟ ଦେଖାଇଲେ ନାହିଁ । ଶ୍ୟାମାକୁ କେବଳ ତା'ବଡ଼ ଭିଣୋଇ ଓ ବଡ଼ ଭଉଣୀ ମଝି ମଝିରେ ଆସି ସାହସ ଦେଉଥିଲେ ।

ଦିନକର କଥା, ସେତିକିବେଳେ ନନ୍ଦିନୀଘର ଗାଁରେ ରହୁଥିବା ଜଣେ ଭଦ୍ର ଲୋକ ଯିଏ କି ତାଙ୍କ ପରିବାରର ଭଲମନ୍ଦ ପଚାରି ବୁଝୁଥାନ୍ତି। ଦିନେ କଥା ପ୍ରସଙ୍ଗରେ ଶ୍ୟାମା 'ଛାଡ଼ପତ୍ର' ଲେଖାଇ ଆଣିବା କଥା କହେ ତାଙ୍କ ପାଖରେ । ଶ୍ୟାମା କଥା ଶୁଣି ସେ ତାକୁ ସାହାଯ୍ୟ କରିବାର ଆଶ୍ୱାସନା ଦେଲେ ।' ତା'ପରେ ତାଙ୍କୁ ସାଇକେଲରେ ବସାଇ ତାଙ୍କ ଗାଁରୁ ପ୍ରାୟ ପଚିଶି କିଲୋମିଟର ଦୂରରେ ଥିବା ପଞ୍ଚାୟତକୁ ବାହାରିଲେ ।

ରାସ୍ତାରେ ଜଣେ କୁଷ୍ଠରୋଗୀ ଡାକ୍ତର ଦେଖାହେଲେ, ଯିଏ କି ନନ୍ଦିନୀର ପ୍ରଥମ ବର ନରହରିଙ୍କୁ ଚିକିତ୍ସା କରୁଥିଲେ । ଡାକ୍ତରଙ୍କୁ ସେମାନେ ସବୁ ଘଟଣା ବୁଝାଇ କହିଲେ, ସବୁ କଥା ଶୁଣି ସେ ମଧ୍ୟ ସାଇକେଲଟିଏ ଧରି ସେମାନଙ୍କ ସହ ବାହାରିଲେ ସମସ୍ତେ ମିଶି ନରହରିର ଗାଁକୁ ଯାଆନ୍ତି ଓ ସେଠିକା ପଞ୍ଚାୟତ ସରପଞ୍ଚଙ୍କୁ ଭେଟି ଛାଡ଼ପତ୍ର କଥା କହିଲେ । ସେତେବେଳେ କୁଷ୍ଠରୋଗର କୌଣସି ଚିକିତ୍ସା ନଥିଲା । ଜଣେ ଅମାୟିକ ଝିଅର ଭବିଷ୍ୟତ ଜୀବନ ରକ୍ଷା କରିବା ସମସ୍ତଙ୍କର ଉଦ୍ଦେଶ୍ୟ । ହେଲେ ନରହରିର ମାଆ ଅନେକ କଟୁକଥା କହିଲେ, 'ଏଇ ଅବାଞ୍ଛିତ ବିବାହର ସୂତ୍ରଧର ଯିଏ ତାକୁ ଯଦି ଏଠାକୁ ଆଣିବ ତା'ହେଲେ ସେ ଏହି ଛାଡ଼ପତ୍ର କାଗଜରେ ଦସ୍ତଖତ କରିବେ ।' ଏହା ଶୁଣି ସେମାନେ ସମସ୍ତେ ନିରାଶହୋଇ ସେଠାରୁ ଫେରିଲେ । ସେଠାରୁ ଫେରି ଶ୍ୟାମା ତା' ମଉସାଙ୍କୁ ଭେଟିଲା ଏବଂ ତାଙ୍କୁ ସବୁକଥା କହି ସେମାନେ ମଧ୍ୟସ୍ଥ ପିଉସାଙ୍କ ପାଖକୁ ଗଲେ କିନ୍ତୁ ସେ ଛାଡ଼ପତ୍ର ଲେଖାଇ ଆଣିବା କଥା ନ କହି ନନ୍ଦିନୀକୁ ନରହରି ପରିବାରକୁ ପଠାଇଦେବାକୁ କହିଲେ । ଏକଥା ଶୁଣି ଶ୍ୟାମାକୁ ଭାରି କଷ୍ଟ ହୁଏ । ରାଗରେ ଶ୍ୟାମା ଏଥର କହେ 'ମୋ ଭଉଣୀ ବଦଳରେ ଯଦି ତମ ଝିଅ ହୋଇଥାଆନ୍ତା ତା'ହେଲେ ଜଣେ କୁଷ୍ଠରୋଗୀ ପାଖକୁ ଘର ସଂସାର କରିବା ପାଇଁ କଣ ନିଜ ଝିଅକୁ ପଠାଇଦିଅନ୍ତ ?' ଶ୍ୟାମା କଥାଶୁଣି ସେ ମଧ ଜବାବ ଦିଅନ୍ତି,

'ପୁଅାଣୀ ଘର ହେବାପରେ ଯଦି ତାକୁ ସେ ରୋଗ ହୋଇଥାନ୍ତା ତେବେ କ'ଣ କରିଥାନ୍ତ, ତାକୁ କ'ଣ ନେଇ ଆସନ୍ତୁ ?'

'ତୁମେ ଏମିତି ଅବାସ୍ତବ କଥା ମୋତେ କୁହନାହିଁ । ଯଦି ଇଚ୍ଛା ଅଛି ମୋ ସହ ଚାଲ ଯଦି ଇଚ୍ଛା ନାହିଁ ମୁଁ ତମ ସାହାଯ୍ୟ ବିନା ମୋ କାମ ସଫଳ କରିବା ବନ୍ଦୋବସ୍ତ କରିବି । ମୁଁ ଏବେ ଜାଣିଲି ମୋ ବାପାଙ୍କ ସରଳତାର ସୁଯୋଗ ନେଇ ଗୋଟିଏ କୋମଳମତି କନ୍ୟାକୁ ସଂପୂର୍ଣ୍ଣ ଜାଣିଶୁଣି ଜଣେ କୁଷ୍ଟରୋଗୀ ସହ ଛନ୍ଦିଦେଲ । ହେଲେ ସେ କଥା ହେବାକୁ ମୁଁ କଦାପି ଦେବିନି ମୁଁ ମୋର ପାରୁପର୍ଯ୍ୟନ୍ତ ଚେଷ୍ଟା କରି ମୋର ମନୋନିତ ଉପଯୁକ୍ତ ପାତ୍ରରେ ମୋ ଭଉଣୀର ବାହାଘର ପୁଣିଥରେ କରିବି ଆଉ ତମେ କରିଥିବା ଅପକୀର୍ତ୍ତି ସମସ୍ତଙ୍କୁ ଜଣାଇଦେବି । ତମେ ଜାଣି ଜାଣି ଆମକୁ ଯେଉଁ ବିପଦରେ ଆଣି ପକାଇଛ ତାହାର ଫଳ ନିଶ୍ଚୟ ତମକୁ ମିଳିବ । ଆଉ ମୁଁ ନିଶ୍ଚୟ ମୋ କାର୍ଯ୍ୟରେ ସଫଳ ହେବି । ତମେ ଭାବନି ତମ ବିନା ଆମର ଆଉ କେହିନାହିଁ । କେହି ନଥିଲେ ବି ଭଗବାନ ଅଛନ୍ତି, ଆମକୁ ସେଇ ଠାକୁର ନିଶ୍ଚୟ ସାହାଯ୍ୟ ହେବେ ।'

ଶ୍ୟାମା ତା' ମଉସାଙ୍କୁ ଉଚିତ ଯବାବ ଦେଇ ତାଙ୍କ ଘରୁ ଚାଲିଆସିଲା । ଏହା ଭିତରେ ପୁଣି କିଛିଦିନ କଟିଗଲା । କାହାଦ୍ୱାରା ଏଇକାମ ସଫଳ ହେବ ଦିନରାତି ଖାଲି ତା'ର ଏହି ଚିନ୍ତା । ଦିନେ ଶ୍ୟାମା ତା' ବଡ଼ଭଉଣୀ ଘରକୁ ଯାଇଥାଏ  ସେଠାରେ ତା'ବଡ଼ଭଉଣୀର ଦିଅର ନବୀନ ସହ ତା'ର ସାକ୍ଷାତ ହେଲା । ସେ ତାଙ୍କ ପରିବାରର ସମସ୍ତଙ୍କ କୁଶଳାଦି ପୁଛାକରି ନନ୍ଦିନୀର ବାହାଘର କଥା ପଚାରନ୍ତେ ସେସବୁ ବିଷୟ ତାଙ୍କୁ ଜଣାଇଲା । ସେ ସବୁକଥା ଶୁଣିବା ପରେ କହିଲେ, 'କେବଳ ଖଣ୍ଡେ ଲେଖା ପାଇଁ ବାହାଘର ଅଟକି ଯାଇଛି । ଠିକ୍‌ଅଛି କାଗଜ ଲେଖାଇ ଆଣିବା ଦାୟିତ୍ୱ ମୁଁ ନେଉଛି । ତୁମେ ଆଉ ବ୍ୟସ୍ତ ହେବା ଦରକାର ନାହିଁ । ବାହାଘର ପାଇଁ ଯାହା ଦରକାର ସେ କଥା ତୁମେ ବୁଝ ମୁଁ  ନିଶ୍ଚିତ ଭାବରେ ମିଶ୍ରଠାରୁ ଲେଖାଇ ନେଇ ଆସିବି ।' ତାଙ୍କ ଦୃଢ଼ ପ୍ରତିଶ୍ରୁତି ଶୁଣି ଶ୍ୟାମା ଟିକିଏ ଆଶ୍ୱସ୍ତ ହେଲା । ଦୁହିଁଙ୍କ ଭିତରେ କିଛି ସମୟ ନିରବତା ପରେ ସେ ପୁଣିଥରେ ମୁହଁ ଖୋଲି କହେ, 'ଲେଖାଟା ଲେଖେଇ ଆଣିବି ଯେ ହେଲେ ଟଙ୍କା କିଛି ଖର୍ଚ୍ଚ ହୋଇପାରେ ! ଆମ ତରଫରୁ ଯେତେବେଳେ ତାଙ୍କୁ କହିବାକୁ ଯାଉଛେ ସେ ହୁଏତ କିଛି ଟଙ୍କା ମାଗିପାରେ ତେଣୁ ତୁମେ ଅନ୍ତତଃ ଟଙ୍କା ଆଠଶହ ବା ହଜାରେ ବ୍ୟବସ୍ଥା କଲେ ଶୀଘ୍ର କାମଟା ହୋଇଯିବ ।' ତାଙ୍କ  କଥାଶୁଣି ଶ୍ୟାମା ଟଙ୍କା ଯୋଗାଡ କରି ଆଣିବାପାଇଁ ତାଙ୍କୁ ପ୍ରତିଶ୍ରୁତି ଦେଲା ଆଉ ଯେମିତି ଶୀଘ୍ର କାମ ସଂପନ୍ନହେବ ସେଥିପାଇଁ ଚେଷ୍ଟା କରିବା ପାଇଁ ଅନୁରୋଧ କରେ । କିଛିଦିନ ଅନ୍ତରରେ ପ୍ରାୟ ଏକ ଏକର ଜମି  ନ'ଶହ ଟଙ୍କାରେ ମାତ୍ର ବିକ୍ରିକରି ସେଇ ଟଙ୍କା

ନେଇ ନରହରିକୁ ଦେଇ ଆସିବା ପାଇଁ ବଡ଼ଭଉଣୀ ଘରକୁ ଶ୍ୟାମା ଗଲା । ସେଠାରେ ତା ବଡ଼ଭଉଣୀ ଭିଣୋଇଙ୍କୁ ସାକ୍ଷାତକରି ଜମି ବିକ୍ରୀ କଥା କହି ସେହି ଟଙ୍କା ଭିଣୋଇଙ୍କ ହାତରେ ଦେଇ ଛାଡ଼ପତ୍ର କାଗଜଟି ଯେମିତି ଚଞ୍ଚଳ ମିଳିବ ସେ ଦିଗରେ ଚେଷ୍ଟା କରିବା ପାଇଁ ଅନୁରୋଧ କରେ । ଶ୍ୟାମା ସେଠାକୁ ଯିବା ଭିତରେ ନବୀନ ନନ୍ଦିନୀର ପ୍ରଥମ ସ୍ୱାମୀ ସହ କଥାବାର୍ତ୍ତା କରି ଛାଡ଼ପତ୍ର ଲେଖିଦେବା ପାଇଁ  ପ୍ରତିଶ୍ରୁତି ପାଇବା ପରେ ସେଠାରେ ରହୁଥିବା ଷ୍ଟାମ୍ପ ରାଇଟର ନରସିଂହଙ୍କ ହାତରେ ଛାଡ଼ପତ୍ର କାଗଜଟି ଲେଖାଇ ଆଣି ନିଜପାଖରେ ରଖିଛନ୍ତି ଓ ଟଙ୍କା ପାଇଁ ସେ ଶ୍ୟାମାକୁ ଅପେକ୍ଷା କରିଛନ୍ତି । ହେଲେ ଶ୍ୟାମା ବଡ଼ଭଉଣୀ ଘରକୁ ଯିବା ଦିନ ନବୀନ ନଥିବା ହେତୁ ଭିଣୋଇଙ୍କ ହାତରେ ଟଙ୍କା ଦେଇ ସେ ଘରକୁ ଫେରିଆସିଥିଲା ।

ଶ୍ୟାମା ଫେରିଆସିବା କିଛିଦିନ ପରେ ନବୀନ ବାରମ୍ବାର ନନ୍ଦିନୀର ପ୍ରଥମ ଶ୍ୱଶୁର ଘରୁ ଫେରିସାରିଥାଏ ହେଲେ ନରହରି ସହ ସାକ୍ଷାତ ହୋଇପାରୁନଥିଲା । ଶେଷରେ ଦିନେ ଦୃଢ଼ ସଂକଳ୍ପ କରି ଘରୁ ବାହାରି ବହୁ ସ୍ଥାନରେ ଖୋଜାଲୋଡ଼ା ପରେ ମଧ୍ୟ ରାତିରେ ନରହରିର ସନ୍ଧାନ ମିଳିଲା ଗୋଟିଏ ବେଶ୍ୟାଳୟରେ । ସେଇଠାରେ ହିଁ ତାକୁ କହି ତାର ଦସ୍ତଖତ ଅଣାଗଲା । ଦସ୍ତଖତ ହୋଇସାରିଥିବା ଖବର ପାଇ ଶ୍ୟାମା ସିଧା ଗାଁଆକୁ ଫେରି ବଡ଼ ପିଉସୀ ଘରକୁ ଯାଇ ଉକ୍ତ ଲେଖାଟି ବଡ଼ ପିଇସାଙ୍କ ହାତରେ ଦିଏ । ସେ ସେଇଟିକୁ ଆମୂଳ ଚୂଳ ପାଠ କରିବା ପରେ ପୁଣି ଗୋଟିଏ ଅଡୁଆକଥା କହନ୍ତି, 'ଏଇ ଦସ୍ତଖତ ନରହରିରତ, ଏଥିରେ କିଛି ସନ୍ଦେହ ନାହିଁ ତ ?' ତାଙ୍କ କଥା ଶୁଣି ଶ୍ୟାମାର ମୁଣ୍ଡ ଚକର ଖାଇଗଲା । ମନୁଷ୍ୟ ଏତେ ଶ୍ରମ ସ୍ୱୀକାର ସହ ଅର୍ଥ ଖର୍ଚ୍ଚ ପୁଣି ସେମାନଙ୍କ ଲାଗି ଜଣେ ଭଦ୍ରଲୋକ ହଇରାଣ ହୋଇ ବହୁବାର ବୁଲି ଦସ୍ତଖତ କରାଇ ଆଣିଥିବା କାଗଜକୁ ତାଙ୍କ ବିଶ୍ୱାସ ଆସୁନଥିବା କଥା ଶ୍ୟାମାକୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । ତା' ସହ ଶ୍ୟାମା ମନରେ ସେଇ ପିଉସା, ପିଉସୀଙ୍କ ପ୍ରତି ଘୃଣା ଜାତହେଲା । ତଥାପି ମନରେ ମନ କଥା ଚାପିରଖି ଶ୍ୟାମା କହେ, 'ହଁ  ପିଉସା ସେଇ ଦସ୍ତଖତ କିଛି ଜାଲ ହୋଇନାହିଁ । ନରହରିର ସେଇଟା ନିଜ ଦସ୍ତଖତ, ଯଦି ତମର ଅବିଶ୍ୱାସ ହେଉଛି ତା' ହେଲେ ତା'ର କେତୋଟି ଚିଠି ଆମ ଘରେ ଅଛି ଆପଣଙ୍କୁ ଆଣି ଦେବି । ସେ ସବୁଚିଠି ଦେଖିଲେ ସେଥିରେ ଥିବା ଦସ୍ତଖତ ସହ ଏଇ ଦସ୍ତଖତ ମିଶୁଛି କି ନାହିଁ ଆପଣ ଜାଣିପାରିବେ । ଦସ୍ତଖତ ନେଇ ଆପଣଙ୍କ ସନ୍ଦେହ ଦୂର ହୋଇଯିବ ।'

ଶ୍ୟାମା କଥାଶୁଣି ସେ ସଙ୍ଗେ ସଙ୍ଗେ କହିଲେ 'ନା ସେମିତି କିଛି ନାହିଁ ଯେ ହଉ ଆଗରୁ ସିଏ ପଠାଇଥିବା ଚିଠି ଯଦି ତମ ଘରେ ଅଛି ତାହା ଆଣିଲେ ଦେଖିବା, ମନରେ ମଧ୍ୟ ସନ୍ଦେହ ରହିବ ନାହିଁ ।' ମନରେ ଯାହା ଥିଲେ ବି ସେ କଥା ମନରେ

ଚାପି ରଖି ଛାଡ଼ପତ୍ର ଲେଖାଟି ଦେଇ ସଙ୍ଗେ ସଙ୍ଗେ ତାଙ୍କ ଘରୁ ଫେରିଆସି ଶ୍ୟାମା ଖୋଜା ଲୋଡ଼ା ଆରମ୍ଭ କରିଦିଏ । ନରହରିର ହାତଲେଖା ଚିଠି ଦୁଇଟି ଧରି ପରଦିନ ପୁଣି ପିଉସୀଙ୍କ ଘରେ ଯାଇ ଉକ୍ତ ଚିଠି ଦୁଇଟି ପିଉସାଙ୍କୁ ଦିଏ । ସେ ଚିଠି ଦୁଇଟିର ଲେଖା ଶେଷରେ ଥିବା ନରହରିର ଦସ୍ତଖତ ଦେଖି ଛାଡ଼ପତ୍ରରେ କରିଥିବା ଦସ୍ତଖତ ସହ ସେ  ମିଳାଇ ଦେଖିଲେ । ଏଥକୁ କିଛି ନକହି ମଉନ ହୋଇ ସେ ରହିଲେ । ଶ୍ୟାମା ମନରେ କ୍ରୋଧ ଜାତ ହୁଏ । କ୍ରୋଧକୁ ଆୟତ୍ତ କରି କିଛି ସମୟ ପରେ ଶ୍ୟାମା ନିଜ ତରଫରୁ  ପଚାରିଲା, 'ପିଉସା ଦସ୍ତଖତ ଠିକ୍ ଅଛି ତ ?'

'ହଁ, ହଁ ଠିକ୍ ଅଛି ।'

'ଚିଠି ଦୁଇଟା ଆପଣ ରଖିବେ ନା ମୋତେ ଫେରାଇ ଦେବେ ?'

'ନାଇଁ ବାପା ମୋ ପାଖରେ ଚିଠି ଦୁଇଟା ଥାଉ ।' ଶ୍ୟାମା ମନରେ ଭାବୁଥିଲା ଆହୁରି ମନରେ ବିଶ୍ୱାସ ଆସିନି । ସେ ବୋଧେ ଘରକୁ ଫେରିବା ପରେ ହୁଏତ ପୁଣି ଦସ୍ତଖତ  ମିଳାଇବେ ।

କିଛିଦିନ ପରେ ନନ୍ଦିନୀର ବିବାହ ତାରିଖ ସ୍ଥିର ହେଲା । ବିନା ଆଡ଼ମ୍ବରରେ ଶଙ୍ଖ, ହୁଳହୁଳିର ଧ୍ୱନୀରେ ନନ୍ଦିନୀ ଦ୍ୱିତୀୟ ଶାଶୁଘରକୁ ଗଲା ।

ଝିଅଟିଏ ଯେଉଁଠି ଜନ୍ମହୁଏ, ଯେଉଁ ମାଟିରେ ବଢ଼େ, ଯେଉଁମାନଙ୍କୁ ନିଜର ବୋଲି ଏତେ ଆପଣାର କରିଥାଏ । ସେଇଠୁ ସତ ସମ୍ମାନରେ ତାକୁ ଦେଖେଇ ଦିଆଯାଏ ଆଉ ଗୋଟିଏ ଘର, ଆଉ ଗୋଟିଏ ପରିବେଶ ଏବଂ ନୂଆ ମଣିଷମାନଙ୍କୁ । ଯେଉଁଠି ତାକୁ ସମସ୍ତଙ୍କୁ ଆପଣାର କରିବାକୁ, ସଭିଙ୍କ ସହ ନିମଗ୍ନ ହେବାକୁ ପଡ଼େ । ଝିଅଟିଏ କେତେ ସହଜରେ ଆଉ ଖୁବ୍‌ଶୀଘ୍ର  ମଧ୍ୟ ନୂଆ ଘର ପରିବେଶ ଓ ଲୋକଙ୍କୁ ନିଜର ଭାବରେ ଅନୁଭବିପାରେ । ଏ ଅନୁଭବଟି ତା' ଭିତରେ କିଏ ସେ ଭରିଦିଏ ଆଉ ତାକୁ ଶକ୍ତ ବଳିଷ୍ଠ କରିଦିଏ ସୃଷ୍ଟିକୁ ଆଗେଇ ନେବାପାଇଁ । ଯାହା ନନ୍ଦିନୀକୁ ମଧ ଦ୍ୱିତୀୟ ବର ଗ୍ରହଣ ପରେ ପ୍ରକୃତିର ଏହି ନିୟମରେ ବନ୍ଧା ହେବାକୁ ପଡିଥିଲା ।



*(ଅପୂର୍ବା)*

# ଗପ୍‌ସପ୍‌

'ମାନସିକ ଭାରସାମ୍ୟ ହରାଇ ମହିଳାଙ୍କ ଆତ୍ମହତ୍ୟା' ଖବରକାଗଜରୁ ବିଷୟଟି ପଢ଼ି ବନ୍ଦିତାକୁ ଯେତିକି ସାଧାରଣ ଲାଗିଲା ସେତିକି ଅସ୍ତବ୍ୟସ୍ତ ମଧ୍ୟ ଲାଗିଲା । ଆମ ସମାଜରେ ନାରୀଟିଏ ମାନସିକ ନିର୍ଯାତନା ପ୍ରତିମୁହୂର୍ତ୍ତରେ ପରିବାରରୁ ଏବଂ ତା' ରହୁଥିବା ସମାଜରୁ ପାଇଆସିଛି ଏବଂ ପାଉଛି ମଧ୍ୟ । ଊଣା ଅଧିକ ରହିଥିବା ଏହି ନିର୍ଯାତନା ନାରୀଟିଏ ପାଇଁ ଯେଉଁଠି ଅସହ୍ୟ ହୁଏ ସେଠି ସେ ନିର୍ଯାତନା ଏବଂ ମାନସିକ ସ୍ଥିତିକୁ ସଜାଡିବାକୁ କୌଣସି ବାଟ ନପାଇ ଆତ୍ମହତ୍ୟାର ରାସ୍ତା ବାଛିନିଏ ଏବଂ ଏହା ହିଁ ଏକମାତ୍ର ମାଧ୍ୟମବୋଲି ଭାବିନିଏ ଆଉ ଏହି ମାଧ୍ୟମକୁ ହିଁ ଶ୍ରେୟ ମଣେ । କିନ୍ତୁ ସମଦଶା ଭୋଗୁଥିବା ପୁରୁଷଟିଏ ପାଇଁ ଆତ୍ମହତ୍ୟା ପୂର୍ବରୁ ରହିଥାଏ ନିଜ ସ୍ଥିତିକୁ ସଜାଡିବାକୁ ମଦ୍ୟପାନ କିମ୍ବା ସୁଯୋଗ ମିଳିଲେ ଅନ୍ୟ ନାରୀର ଦେହ । ଏହି ଦୁଇଟି ମାଧ୍ୟମରେ ପୁରୁଷ ନିଜର ମାନସିକ ସ୍ଥିତିକୁ ଫେରାଇ ଆଣିବାକୁ ପ୍ରୟତ୍ନ କରିଥାଏ । ବନ୍ଦିତା ଭାବୁଥିଲା ବ୍ୟକ୍ତି ଦିନକୁ ଦିନ ସତରେ କେତେ ଅସହାୟ ହୋଇପଡୁଛି । ନିଃସଙ୍ଗ ଜୀବନଯାପନ ସତରେ ଖୁବ୍ କଷ୍ଟଦାୟକ । ଏତେବେଳକୁ ସେଠି ପହଞ୍ଚିଲେ କଇଳାସବାବୁ । କଇଳାସବାବୁ ବନ୍ଦିତାର ପାରିବାରିକବନ୍ଧୁ । ଯଦିଓ ବେଶୀ ପୁରୁଣା ନୁହେଁ ତେବେ ଅଳ୍ପ ଦିନର ବନ୍ଧୁତାରେ ମଧ୍ୟ ସେମାନେ ବେଶ୍ ପରସ୍ପରକୁ ବୁଝିବାକୁ ଚେଷ୍ଟା କରନ୍ତି । ପରସ୍ପରର ମାନସିକତାକୁ ଜାଣିବା ବୁଝିବାର କ୍ଷମତା ରଖନ୍ତି ।

'ନାରୀମାନଙ୍କୁ ସବୁପ୍ରକାର ସୁବିଧା ସ୍ୱାଧୀନତା ମିଳିବା କଥା କୁହାଯାଉଛି, ଆପଣ କେବେ ଦେଖିଛନ୍ତି କୌଣସି ମଦ ଦୋକାନରେ ମହିଳାଟିଏ ମଦ କିଣିବା ?' ବନ୍ଦିତାର ଏପରି ପ୍ରଶ୍ନରେ କଇଳାଶବାବୁ କିଛି ସମୟ ସ୍ଥିତପ୍ରଜ୍ଞ ହୋଇ କହନ୍ତି, 'ନା, ତାହା କ'ଣ ସମ୍ଭବ ?'

ବନ୍ଦିତା ପୁଣି ପ୍ରଶ୍ନ କରେ, 'କାହିଁକି ଅସମ୍ଭବ ? ତେବେ ନାରୀକୁ ସବୁ ସ୍ୱାଧୀନତା ଦିଆଯାଇଛି କହୁଛନ୍ତି କାହିଁକି ?' ଏଏକ ତର୍କର ବିଷୟ । ଯାହାକି ସେଦିନ ବନ୍ଦିତା ଏବଂ କଇଳାଶବାବୁଙ୍କ ମଧ୍ୟରେ ସଂଗଠିତ ହୋଇଥିଲା ।

ଦୀର୍ଘ ସମୟ ଧରି ବନ୍ଦିତା ଏବଂ କଇଳାଶବାବୁଙ୍କ ମଧ୍ୟରେ ଏହି ଆଲୋଚନା, ତର୍କ ଚାଲିଥାଏ, କଇଳାଶବାବୁ ନିଜର ଉତ୍ତର ବୟସରେ ମଧ୍ୟ ବନ୍ଦିତାର କଥାକୁ ଗ୍ରହଣ କରୁଥାନ୍ତି । କଇଳାଶବାବୁଙ୍କ ସଂପର୍କରେ ଏତକ କୁହାଯାଇପାରେ ଯେ ସେ ସମୟାନୁଯାୟୀ ନିଜର ମାନସିକତାକୁ ବଜାୟ ରଖିପାରୁଥିବା ଜଣେ ସଫଳ ବ୍ୟକ୍ତିତ୍ୱ ।

'ବନ୍ଦିତା ତୁମେ ଡ୍ରିଂକ୍ କର ?'

'ହଁ, ବେଳେବେଳେ ?'

'କେଉଁ ସମୟରେ ଆଉ ପରିସ୍ଥିତିରେ ଡିଂକ୍‌କର ?'

'ଆଜିଯାଏଁ ଯେତେବେଳେ ମୁଁ ଖୁସୀରେ ଥାଏ ଡ୍ରିଂକ କରିଛି ।'

'କେବଳ ଖୁସୀବେଳରେ ଡ୍ରିଂକ କରିବାର କାରଣ ?'

'ଖୁସିକୁ ଦ୍ୱିଗୁଣିତ କରିବାକୁ ଯେଉଁଥିରେ ଦୁଃଖକୁ ଭୁଲିହୁଏ କିମ୍ବା ଆସୁଥିବା ଦୁଃଖକୁ ସାମ୍‌ନା କରିବାକୁ ଶକ୍ତି ମିଳେ, ଆଉ ଏହା ଅନୁଭୂତ ହୁଏ ମଦ ମୁଁ ପିଏ ମଦ ମୋତେ ନୁହେଁ ।'

'ଆରେ ବାଃ ୟୁ ଆର ଏ ଗ୍ରେଟ ଫିଲୋସଫର୍ ।'

'ଥେଙ୍କ୍‌ୟୁ ଫରୟୋର କମ୍ପ୍ଲିମେଣ୍ଟ୍‌ସ ।'

'କ'ଣ କୌଣସି ବନ୍ଧୁ କି ବାନ୍ଧବି ସହିତ ନା ଏକା ବସି ଡ୍ରିଂକ୍ କର ।'

'ଆପଣଙ୍କର ସବୁ କଥା ଭୁଲ୍ ।'

'ମାନେ ?'

'ମାନେ ଏୟା, ମୋ ସ୍ୱାମୀଙ୍କ ସହ ମିଶି ଡ୍ରିଂକ୍ କରେ। ଆମ ସମାଜରେ ଯଦି କୌଣସି ମହିଳା ମଦ୍ୟପାନ କରୁ ବି ଥାନ୍ତି ତେବେ ତାକୁ ଖୋଲାଖୋଲି ଗ୍ରହଣ କରିବାକୁ ସେମାନଙ୍କ ଭିତରେ ନଥାଏ ।'

'ତମେ ତ କହିଦେଲ ।'

'ହଁ ମୁଁ କହିଲି ଏଇଥିପାଇଁ ଯେ ମୁଁ ମଦକୁ ପିଏ ମଦ ମୋତେ କେବେ ପିଇ ନାହିଁ କି ପିଇବ ନାହିଁ ।'

'ତମ ଆତ୍ମ ବିଶ୍ୱାସ ପ୍ରବଳ ।'

'ନିଶ୍ଚୟ, ନଚେତ୍ ମୁଁ ଆପଣଙ୍କ ସହ ଏପରି ବସି କଥା ହେଉନଥାଆନ୍ତି ।'

'ଆଚ୍ଛା ବନ୍ଦିତା ବାନ୍ଧବୀ କଥା ତ କହିଲ, ତେବେ ତମର ଏମିତି ପୁରୁଷ ବନ୍ଧୁ ଥିବେ ଯିଏ ଡ୍ରିଂକ୍ କରୁଥିବେ ।'

'ହଁ, ଅଛନ୍ତି ।'

'ସେମାନଙ୍କ ସହ ପିଇବାରେ କ'ଣ କିଛି ଅସୁବିଧା ଅଛି ?'

'ନା ଅସୁବିଧା ନାହିଁ ।'

'ତେବେ ଆଜି ମୋ ସହିତ ଡ୍ରିଂକ୍ କରିବ ?'

'ହଁ କରିପାରେ । କିଂତୁ ଗୋଟିଏ କଥା ମନେ ରଖନ୍ତୁ ମୁଁ ପୁରୁଷ ବନ୍ଧୁଙ୍କ ସହ ଗୋଟିଏ ଲିମିଟ୍ ପର୍ଯ୍ୟନ୍ତ ବନ୍ଧୁତା ରଖେ ।'

'ତମ ଭଳି ଜଣେ ବୋଲ୍ଡ ଲେଡି ପୁଣି ଲିମିଟେସନ୍; ଠିକ୍ ଅଛି ମୋତେ ସେହି ଲିମିଟ କହିଦିଅ ।'

'ଆପଣ କେଉଁ ଡ୍ରିଂକ୍ ପସନ୍ଦ କରନ୍ତି ?'

'ନା ମୋର ସେମିତି କିଛି ରେଗୁଲାର ନେବା ଅଭ୍ୟାସ ନାହିଁ । ତେବେ ସାଙ୍ଗ ସାଥିଙ୍କ ସହ ମିଶିଗଲେ ଟିକେ ମଜା ହୋଇଯାଏ । ଆଚ୍ଛା ତମର କ'ଣ ପସନ୍ଦ ?'

'ସମରରେ ପ୍ରାୟତଃ ବିଅର ଆଉ ଅନ୍ୟ ଦିନରେ ହେଲେ ଭୋଦ୍‌କା ସହ ଅରେଞ୍ଜଜୁସ୍, ଜିନ୍ ସହ ଟନିକ, ହ୍ୱିସ୍‌କି ସହ ସୋଡା, ଓ୍ୱାଇନ୍‌ରେ ରୋଜେକ୍, ରମରେ କୋକ୍, ବୋକାଡି ସହ ସ୍ପ୍ରାଇଟ୍ କିମ୍ବା ବୋକାଡିର ଷ୍ଟ୍ରବେରି ଫ୍ଲେବର, କୋନିଆକ୍ ଆଉ ସ୍ପେସିଆଲ୍ ଦିନରେ ସାମ୍ପିଏନ୍ ।'

କଥା କହୁ କହୁ ବନ୍ଦିତା ନିଜ ଘରୋଇ ବାର୍ ଆଡକୁ ଆଗଭର ହେଲା ଏବଂ ହାତରେ ଇଙ୍ଗିତ କରି କଇଳାସବାବୁଙ୍କୁ ଅଫର କଲା ଯଦି ଆପଣଙ୍କର ଏ ଭିତରୁ କିଛି ପସନ୍ଦ ଥାଏ ନେଇପାରନ୍ତି । କହି ବନ୍ଦିତା ନିଜ ରୋଷେଇ ଘର ଆଡକୁ ଆଗଭର ହେଲା । ବନ୍ଦିତା ଏବଂ କଇଳାଶବାବୁ ଖୁବ୍ ସାଧାରଣ ଭାବରେ କଥାବାର୍ତ୍ତା କରୁଥାନ୍ତି । ସେମାନଙ୍କ କଥାବାର୍ତ୍ତା ଖୁବ୍ ସ୍ୱଚ୍ଛ ଥିଲା, ସେଥିରେ ନଥିଲା ଆବିଳତା କି ପରସ୍ପରକୁ ଠକିଯିବାର କୌଣସି ଭୟ । ବନ୍ଦିତା ଏହାରି ଭିତରେ ଦୁଇକପ୍ ଚା' କରି ନେଇଆସିଛି । ଗୋଟିଏ କପ୍ ଚା' କଇଳାଶବାବୁଙ୍କ ଆଡକୁ ବଢାଇ ଦେଇ ନିଜେ ଅନ୍ୟ କପେ ଚା' ଧରି ନିଜ ପୂର୍ବ ବସିଥିବା ସ୍ଥାନରେ ବସିଯାଏ ।

'ଡ୍ରିଂକ୍ କରିବା କଥା କହି ପୁଣି ଚା' ?'

'ହଁ, ମୁଁ ମୋ ପାଇଁ ଚା' କଲି, ଆପଣ ନିଜ ପସନ୍ଦରେ ନିଅନ୍ତୁ କ'ଣ ନେବେ ?' କଇଳାଶବାବୁ ଚା'କପ୍‌କୁ ଧରି ପୂର୍ବର ଅଧା କଥାକୁ ପୂରଣ କରିବାକୁ ପୁଣି ସେଇଠୁ କଥା ଆରମ୍ଭ କଲେ–

'ମୋତେ ମୋ ଲିମିଟ୍ କହିଲ ନାହିଁ ଯେ ।'

'ତାହା ଜାଣିବା ଆପଣଙ୍କର କ'ଣ ନିହାତି ଦରକାର ।'

'ହଁ, ଦରକାର ।'

'କ'ଣ ନିଜ ଉପରେ ବିଶ୍ୱାସ ରଖିପାରୁନାହାନ୍ତି ।'

'ସେ କଥା ନୁହେଁ ତୁମ ସହ ବନ୍ଧୁତାକୁ ବଜାୟ ରଖିବାକୁ ଚାହେଁ ।'

'ବେଶ୍ ଭଲ କଥା ।'

'ମୁଁ ବି ଆଜି ଯାଏଁ ଭଲ ବନ୍ଧୁଟିଏ ପାଇପାରି ନାହିଁ ।'

'ଭଲବନ୍ଧୁ !'

'ହଁ ଭଲ ବନ୍ଧୁ ।'

'ତମ ହିସାବରେ ଭଲ ବନ୍ଧୁ କିଏ ?'

'ଯିଏ ବନ୍ଧୁର ମନ କଥା ବୁଝିପାରୁଥିବ, ପରସ୍ପରକୁ ହର୍ଟ୍ ନକରି କଥାବାର୍ତ୍ତା ଏବଂ କାର୍ଯ୍ୟ କରୁଥିବ ।'

'ଜଣେ କେଉଁ କଥାରେ ହର୍ଟ୍ ହୋଇପାରେ ?'

'ତା' ଇଚ୍ଛା ବିରୁଦ୍ଧ କଥା ବା କାର୍ଯ୍ୟରେ ।'

'ତେବେ ଜଣକର ଇଚ୍ଛାରେ ଅନ୍ୟଜଣକର ଇଚ୍ଛା ବିରୁଦ୍ଧ, କଥାଟି ସ୍ପଷ୍ଟ ବୁଝିହେଉନି ।'

'ଏଇଥିପାଇଁ ତ ଭଲ ବନ୍ଧୁ ଦ୍ୱୟ ମିଶିବା କଷ୍ଟକର ।'

'ସୃଷ୍ଟିରେ ପ୍ରତିଟି ମଣିଷର ଭିନ୍ନ ଭିନ୍ନ ଚିନ୍ତା ଚେତନା ଥାଏ, ଆଉ ଯାହା ସହିତ ଯାହାର ମାନସିକତା ମିଶିଯାଏ ସେମାନେ ବୋଧହୁଏ ଭଲ ବନ୍ଧୁ ବା ମଣିଷ ଗଢା ଯେକୌଣସି ଗୋଟିଏ ସଂପର୍କରେ ଆବଦ୍ଧ ହୋଇ ଦୀର୍ଘଦିନ ରହିପାରନ୍ତି ।'

କଇଳାଶବାବୁ ଓଠ ଉପରୁ ଚା'କପ ହଟାଇ ସାମ୍ନା ଟିପୟ ଉପରେ ରଖିଲେ । ବନ୍ଦିତା ନିଜ ଚା'କପକୁ ଶେଷ ସ୍ପର୍ଶ ଦେଉଥିଲା ।

'ବନ୍ଦିତା ତମ ସହ ଡ୍ରିଂକ୍ କରିବା ପ୍ରସ୍ତାବ ମୁଁ ଦେଲି ; କିନ୍ତୁ ତମେ ଯେ ମୋତେ ହର୍ଟ୍ ଡ୍ରିଂକ୍ କରାଇଦେଲ ।'

'ଆରେ ନା, ନା...' ଦୁହେଁ ଠୋ ଠୋ ହୋଇ ହସିଲେ । ବନ୍ଦିତା ମଧ୍ୟ ନିଜ ଚା'କପ୍‌କୁ ଟିପୟ ଉପରେ ରଖିଲା ।

'ଆପଣ ଜାଣନ୍ତି କଇଳାଶବାବୁ ଆମ ସମାଜରେ ଯେତେବେଳେ ବି ଦୁଇ ଜଣ ବିପରୀତ ଲିଙ୍ଗି ସାକ୍ଷାତ କରନ୍ତି ସେମାନଙ୍କ ଭିତରେ ଏପରି ଲିମିଟେସନ୍‌ର ଚିନ୍ତା ଆଉ ଗୋଟିଏ ଚେତନା ସେମାନଙ୍କୁ ଉକ୍‌ସାଏ ।'

'ମୁଁ ଭାବୁଛି ଏସବୁ ଭାବନା କେବଳ ମିଡିଲକ୍ଲାସ୍‌ରେ ହିଁ ରହିଥାଏ ।'

'ହଁ, ସେହିମାନଙ୍କୁ ନେଇ ତ ସୋସାଇଟି, ଆଇନ୍‌କାନୁନ୍ , କୋର୍ଟକଚେରୀ, ସାମାଜିକ ରୀତିନୀତି ଆଦି ମଧ୍ୟବିତ୍ତଟିଏ ପାଇଁ ହିଁ ସତେ ଅବା ଲାଗୁ ହୁଏ । ଅନ୍ୟ କେହି ଏସବୁ କେଆର କରନ୍ତିନି ।'

'ତେବେ ତ କିଛିକୁ କେୟାର ନକରିବା ବ୍ୟକ୍ତି ପାଇଁ ଉତ୍କୃଷ୍ଟ ।'

'ନା ଆକ୍‌ଜେକ୍‌ଟ୍‌ଲି ତାହା ନୁହେଁ ।'

'ଦେଖନ୍ତୁ, ବ୍ୟକ୍ତି ଯେତେବେଳେ କିଛିକୁ କେୟାର ନକରେ ସେତେବେଳେ ସେ ସଂପୂର୍ଣ୍ଣ ଏକୁଟିଆ ହୋଇଯାଏ । ଆଉ ଯେତେବେଳେ ସବୁକୁ କେୟାର କରେ ସମାଜ ତାକୁ ଏପରି ଚିପୁଡ଼ି ଦିଏ ଯେ, ସେ ଆଉ କିଛି ଚିନ୍ତା କରିବାର ସମୟ କି ବାଟ ପାଏନା ଯାହା ତାକୁ ଅଣନିଶ୍ୱାସୀ ଲାଗେ । ଏଣୁ ମୁଁ କହୁଥିଲି ସବୁଥିରେ ଗୋଟିଏ ଲିମିଟେସନ ରଖିବା କଥା । ଯେଯାଏଁ ଆମେ ସମସ୍ତେ ନିଜନିଜ ସୀମା ମାପି ପାରିବାନି ସେଯାଏ ସବୁ କିଛି ଅନ୍ଧାରରେ ବାଟବଣା ପରି ଲାଗୁଥିବ ।'

ବନ୍ଦିତା ଏବଂ କଇଳାଶବାବୁଙ୍କ କଥାବାର୍ତ୍ତା ଚାଲିଥାଏ ସେଠାରେ ସାମିଲ ହେଲେ ବନ୍ଦିତାର ସ୍ୱାମୀ ଦେବବ୍ରତବାବୁ । ଦେବବ୍ରତବାବୁଙ୍କୁ ଦେଖି କଇଳାଶବାବୁ ନିଜ ସିଟ୍‌ରୁ ଉଠି ତାଙ୍କ ସହ ହାତ ମିଶାନ୍ତି ଏବଂ ସେମାନଙ୍କ ଗପସପ୍ ଆହୁରି ଜମିବାରେ ଲାଗେ । ଏତେବେଳକୁ ରାତ୍ରି ଭୋଜନ ପ୍ରସ୍ତୁତ କରିବାକୁ ବନ୍ଦିତାର କୁକ୍ ଆସିଯାଇଥିଲା । କୁକ୍‌କୁ ତିନିକପ୍ କଫି କରିବା ଅର୍ଡର କଲା ବନ୍ଦିତା । ଦେବବ୍ରତବାବୁ ସଙ୍ଗେ ସଙ୍ଗେ ମନା କଲେ, ତାଙ୍କର କଫି ଦରକାର ନାହିଁ ସେ ଡ୍ରିଂକ ନେବେ । ଏତେ ବେଳକୁ ସଞ୍ଜ ନଇ ସାରିଥାଏ । ରାତି ଆସିବାକୁ ଆହୁରି ବାକି ୱାଇନ୍‌ଗ୍ଲାସ୍ ଆଣିବାକୁ କୁକ୍‌କୁ କହି ଦେବବ୍ରତବାବୁ ବାର ଆଡ଼କୁ ମୁହାଁଇଲେ । କଇଳାସବାବୁଙ୍କୁ ଡାକି ତାଙ୍କ ପସନ୍ଦରେ ଡ୍ରିଂକ୍ ନେବାକୁ ଅନୁରୋଧ କଲେ । 'ବନ୍ଦିତା ତମ ପାଇଁ କେଉଁ ପେଗ୍ ବନାଇବି ?'

'ଆଜି ତମ ପସନ୍ଦରେ ମୁଁ ନେବି ।'

'ଓକେ ଡିଅର୍ ।'

'ଜାଣ ଦେବ୍ ତମେ ଆସିବା ପୂର୍ବରୁ କଇଳାସ୍‌ବାବୁ ଆଉ ମୁଁ ମହିଳାଙ୍କ ଆତ୍ମହତ୍ୟା ଖବରକୁ ନେଇ ଆଲୋଚନା କରୁଥିଲୁ ।'

'ମୁଁ ଜାଣେ ତମେ ନିଶ୍ଚୟ ଭଲ ମତାମତ ଦେଇଥିବ । ନା କ'ଣ କହୁଛନ୍ତି କଇଳାସବାବୁ ?'

'ହଁ ହଁ, ବନ୍ଦିତାଙ୍କର ମାନସିକତା ଆମ ସମୟର ମହିଳାଙ୍କଠାରୁ ନିଶ୍ଚୟ ସ୍ୱତନ୍ତ୍ର ।'

ଆଜି ସକାଳୁ ବନ୍ଦିତା ଖବରକାଗଜ ପୃଷ୍ଠାରେ ପଢ଼ିଥିବା ମାନସିକ ଭାରସାମ୍ୟ ହରାଇ ମହିଳାଙ୍କ ଆତ୍ମହତ୍ୟା ଖବରଟି ତା' ମାନସ ପଟକୁ ଯେତିକି ଭାରାକ୍ରାନ୍ତ କରିଥିଲା କଇଳାଶବାବୁ ଏବଂ ଦେବବ୍ରତବାବୁଙ୍କ ସହ ଖୋଲା ଆଲୋଚନାରେ ସେ ଏବେ ଖୁବ୍ ରିଲାକ୍ସ ଫିଲ୍ କରୁଥିଲା ।



*(ପକ୍ଷୀଘର)*

# ଭଣ୍ଡ ମହାରାଜ୍

ସୋହାର ନୂଆ ନୂଆ ସ୍ଥାନ ବୁଲିବା ଝୁଙ୍କ ପିଲାଟି ଦିନରୁ । ପରିବାରର ଅନ୍ୟ ଭାଇ ଭଉଣୀମାନଙ୍କଠାରୁ ସେ ହିଁ ବେଶୀ ସ୍ଥାନ ବୁଲିବା ସୁଯୋଗ ପାଇଛି । ବାପାମାଆ ଭାଇ ଭଉଣୀ ମିଶି ଦଶ ଜଣିଆ ପରିବାରରେ ସୋହା ଥିଲା ସାନଝିଅ । ପାଠପଢାକୁ ନେଇ କେବେ ଜିଲ୍ଲା ବାହାରକୁ ପଢିବାକୁ ଯିବା ସୁଯୋଗ ପାଇନି, ଯଦିଓ ଅନ୍ୟ ଭାଇ ଭଉଣୀ ଭିନ୍ନ ଭିନ୍ନ ସ୍ଥାନରେ ପଢ଼ିବାପାଇ ବାହାରକୁ ଯାଇଛନ୍ତି । କିନ୍ତୁ ସ୍କୁଲ ତରଫରୁ ହେଉ କି ଘର ତରଫରୁ ହେଉ ରାଜ୍ୟ ବାହାରକୁ ଯିବା ସୁଯୋଗ ଜୁଟିଛି ପ୍ରାୟତଃ ତା'କପାଳକୁ ।

ନୂଆ ନୂଆ ଜାଗା ବୁଲିବା ଝୁଙ୍କ ତା'ପାଠପଢା ସରିବା ପରେ ଅଧିକ ବଢ଼ିବାରେ ଲାଗିଲା । ଏମିତି ବୁଲିବା ଝୁଙ୍କକୁ ନେଇ ଥରେ ବୃନ୍ଦାବନ ବୁଲିଆସିବାକୁ ମନ କଲା । ସେତିକିବେଳେ ଗୋଟିଏ ଆଧ୍ୟାତ୍ମିକ ସଂଗଠନ ନିଜ ଗୁରୁଙ୍କ ଦର୍ଶନରେ ଯାଉଥାନ୍ତି । ବାପା ମାଆ ପ୍ରବଚନ ଶୁଣିବାକୁ ବିଭିନ୍ନ ସ୍ଥାନରୁ ଆସିଥିବା ମହାମନିଷୀଙ୍କ ପାଖକୁ ଯାଉଥିବାବେଳେ ସେ ବି ସେମାନଙ୍କ ସହ ଯାଏ ।

ମୋର ଠିକ୍ ମନେ ଅଛି ଥରେ ସେ କହୁଥିଲା ତାକୁ ଦଶବର୍ଷ ବୟସରୁ ସେ ସେଠାକାର ରାଜଉଆଁସ ପରିସରରେ ଆୟୋଜିତ ହେଉଥିବା ପ୍ରବଚନ ଶୁଣିବାକୁ ଯାଇଥିଲା । ତା'ଭିତରେ ଜୀବନ, ଦର୍ଶନ, ଭଗବାନ କ'ଣ ଏସବୁ ଜାଣିବା ଜିଜ୍ଞାସା ଉତ୍ପନ୍ନ ହେଲା । କେଡେ କେଡେ ମହାରଥି ରାମାୟଣ, ମହାଭାରତ, ଗୀତା, ନାନା ପୁରାଣରୁ କେତେ ବଡ ବଡ କଥା କହୁଥିଲେ । ସେସବୁ ଶୁଣି ତା' ମନରେ ଯାହା ପ୍ରଶ୍ନ

ଆସୁଥିଲା ସଙ୍ଗେ ସଙ୍ଗେ କାହାକୁ ହେଲେ ପ୍ରଶ୍ନ କରି ଉତ୍ତର ଆଶା ରଖୁଥିଲା । ଯେତେ ଉତ୍ତର ପାଉଥିଲା ସେତେସେତେ ପ୍ରଶ୍ନ ବଢୁଥିଲା, ଜିଜ୍ଞାସା ବଳବତ୍ତର ହେଉଥାଏ । ସାନପିଲା ମୁହଁରୁ ଏଭଳି ପ୍ରଶ୍ନ ଶୁଣି ଅନେକେ ଆଶ୍ଚର୍ଯ୍ୟ ହେଉଥିଲେ ।

ବୃନ୍ଦାବନ ଅଭିମୁଖେ ବାହାରିବା ବେଳକୁ ସୋହା ବେଶ ତେଇଶି ବର୍ଷର ଯୁବତୀ । ଆଉ ଦୁଇଦିନ ପରେ ବୃନ୍ଦାବନ ଯାତ୍ରା କରିବାକୁ ହେବ ତାକୁ। ଏଥର ସେ ନିଜ ଲଗେଜ୍ ପ୍ରସ୍ତୁତ କରିନେଲା, ତା'ପରିବାର ଭିତରୁ ସେ ଏକୁଟିଆ ଯାଉଥିଲା । ଯଦିଓ ସେଠାକାର ଆଉ ବାର ଜଣ ସତ୍‌ସଙ୍ଗୀ ଗୁରୁପୂଜାପାଇଁ ବୃନ୍ଦାବନ ଯାଉଥିଲେ । ସୋହା ସହ ମିଶି ତେର ଜଣ ସଦସ୍ୟ, ରାସ୍ତା ଅନେକ । ସତ୍‌ସଙ୍ଗୀମାନେ ରାସ୍ତାସାରା ବସ ଓ ଟ୍ରେନ୍‌ରେ ଭଜନ ବୋଲି ଯାଉଥିଲେ । ଭଜନଗୁଡ଼ିକ ମଧ୍ୟ ଖୁବ୍ ଶ୍ରୁତିମଧୁର, ସେଥିରେ ପୁଣି ଅଧିକାଂଶ ସତ୍‌ସଙ୍ଗୀ ଝିଅପିଲା ଥିଲେ । ସୋହା ସମସ୍ତଙ୍କ ପାଇଁ ନୂଆ ଥିଲା । କମ୍ ଦିନର ପରିଚୟ ତେବେ ସେମାନଙ୍କ ସହ ଯିବା ଆସିବା ଏବଂ ସାଙ୍ଗହୋଇ ଏକାଠି ରହିବାଦ୍ୱାରା ଧିରେ ଧିରେ ପରିଚୟ ବଢୁଥିଲା। ସେମାନଙ୍କ ମଧ୍ୟରେ ସୋହାର ପରିଚିତ ଜଣେ ଗୌରୀନାନୀ ମଧ୍ୟ ଥିଲେ । ଯାହାଙ୍କ ସହିତ ସୋହାର କିଛିଟା ଅଧିକ ପରିଚୟ ଥିଲା । ଏହି ଯାତ୍ରା ସେମାନଙ୍କ ମଧ୍ୟରେ ଥିବା ସଂପର୍କକୁ ଘନିଷ୍ଠ କରିଥିଲା । ବୟସରେ ଗୌରୀନାନୀ ସୋହାଠାରୁ ଦଶ ବର୍ଷ ବଡ; ସେ ଅବିବାହିତ ହୋଇଥିବାରୁ ତାଙ୍କ ମନରେ ଏହି ଦୁଃଖ ଗୋଟିଏ ଘା' କରିଯାଇଥିଲା । କାଳେ ଗୁରୁଜୀଙ୍କ ସରଣ ଗଲେ ବିବାହ ହୋଇଯିବା ବିଶ୍ୱାସରେ ସେ ମନ ପ୍ରାଣ ଲଗାଇ ଗୁରୁଜୀଙ୍କୁ ସ୍ମରଣ କରନ୍ତି । ତାଙ୍କୁ ମନେ ପକାଇ ନିଜ ମନର ଦୁଃଖ କହନ୍ତି । ସ୍ୱଭାବରେ ଖୁବ୍ ଭଲ, ପରିଶ୍ରମି, ଦେଖିବାରେ ବିଶେଷ ଆକର୍ଷଣୀୟା ନହେଲେ ବି ଅସୁନ୍ଦରରେ ଗଣା ହେବେନି ।

'ନାନୀ, ବାହା ହେବା କ'ଣ ଜରୁରୀ ?'

'ତୁ ଜାଣିନୁ ସୋହା ଆମ ସମାଜରେ ଅବିବାହିତ ଝିଅ ପ୍ରତି ଲୋକଙ୍କର ଭଲ ଦୃଷ୍ଟି ନଥାଏ । କେତେ ନିନ୍ଦା, ଦୋଷ ଲଦି ଝିଅଟିର ଖୁଣ କାଢିବାରେ ସମସ୍ତେ ଆଗଭର ।'

ତାଙ୍କ ଦୁଃଖକୁ ସୋହା ବୁଝିପାରୁଥିଲା ହେଲେ ଆଉ କ'ଣ ଅବା କରାଯାଇ ପାରେ । କାହାରି ଦୁଃଖ ଶୁଣିଲେ ସୋହା ସଙ୍ଗେ ସଙ୍ଗେ ମୋତେ ଜଣାଉଥିଲା । ସେ ଅନ୍ୟର ଦୁଃଖରେ ଖୁବ୍ କଳବଲ୍ ହୁଏ, ଦୁଃଖୀ ହୁଏ, ମ୍ରିୟମାଣ ହୁଏ । ଦୁଇ ଦିନର ଯାତ୍ରା ଶେଷ ହେଲା ବୃନ୍ଦାବନରେ ଟ୍ରେନ ପହଞ୍ଚିଲା ବେଳକୁ ସଂଜ ବୁଡ଼ି ସାରିଥିଲା ।

ସୋହା ସଙ୍ଗୀମାନଙ୍କ ସହ ହସୁଥିଲା, କଥା ହେଉଥିଲା ହଠାତ୍ ତା' ଭିତରେ ଗୋଟିଏ ଭୟ ପଶିଲା, "ମନଷା ଗୋଟିଏ ଭୟଂକର ଅଂଧାର ମୋ ଆଡକୁ ମାଡି ଆସିବା ପରି ଲାଗୁଛି ।"

ମୁଁ ସୋହାକୁ ଆଶ୍ୱସ୍ତ କଲି, "ଭୟଂକର ଅଂଧାର ନୁହେଁ ଗୋଟିଏ ଭୟଂକର ଆଲୁଅ ତୋ ଆଡକୁ ଆସୁଛି ।"

ଆଲୁଅ ପୁଣି ଭୟଂକର ସୋହା କିଛି କ୍ଷଣ ପରେ ସାଧାରଣ ଭାବ ଭଙ୍ଗୀକୁ ଫେରିଆସିଲା । ବେଳେବେଳେ ସୋହା ନିଜ ଅବଚେତନ ଅବସ୍ଥାକୁ ଯାଇ ପୁଣି ଫେରିଆସେ ନିଜ ସାଧାରଣ ଦୈନିକ ଜୀବନଯାପନକୁ । ଆଉ ଯେତେବେଳେ ସେ ନିଜ ଅବଚେତନ ଅବସ୍ଥାକୁ ଯାଏ ସେ ମୋ ସହ ତା' ଅନ୍ତରର ସବୁ କଥା ଖୋଲି କହେ । ଯାହାକୁ ବୁଝିବାର କ୍ଷମତା ଆଉ କାହା ପାଖରେ ନଥାଏ । ସେମାନେ ସମସ୍ତେ ବୃନ୍ଦାବନର ସେହି ଧାମରେ ପହଞ୍ଚିଲାବେଳକୁ ପ୍ରାୟତଃ ଅଂଧାର ମାଡିସାରିଥାଏ । ଧଳା ପଥର ଖଚିତ ମୁଖ୍ୟ ଫାଟକ କାରୁକାର୍ଯ୍ୟରେ ଖୁବ୍ ଆକର୍ଷଣୀୟ, ଝାପ୍‌ସା ଅଂଧାର ଭିତରେ ଧଳା ଫାଟକ ବେଶ୍ ଚମକୁଥିଲା । ଧାଡି ବାନ୍ଧି ସମସ୍ତେ ଗେଟ୍ ଭିତରକୁ ପ୍ରବେଶ କରୁଥାନ୍ତି । ସୋହା ଖୁବ୍ ଈଶ୍ୱର ବିଶ୍ୱାସୀ । ହେଲେ ଅନ୍ଧ ଭାବରେ ନୁହେଁ । ସୋହା ମୋତେ ଯେତେ ଅଧିକ ଭଲପାଏ ମୁଁ ତାକୁ ସେତେ ଅଧିକ ଭଲ ଭାବରେ ଚିହ୍ନେ ଆଉ ଜାଣେ ଏଣୁ ସୋହା ପାଇଁ ମୁଁ ଯାହା କହିଲେ ଭୁଲ୍ ହେବ ନାହିଁ । ସୋହା ଏଥର ମନଷା ଉଦ୍ଦେଶ୍ୟରେ ପ୍ରଶ୍ନ କରେ, "ମନଷା, ଏତେ ସୁନ୍ଦର ଆଶ୍ରମ ପୁଣି ମହାପ୍ରଭୁ ଶ୍ରୀ କୃଷ୍ଣଙ୍କ ସ୍ଥାନ କିନ୍ତୁ ଏହି ଆଶ୍ରମ ଭିତରକୁ ପଶିଆସିବାବେଳେ ମୋ ଭିତରେ ଭକ୍ତି ରସ ଆଦୌ ଝରିପାରୁନାହିଁ, ମୁଁ କ'ଣ ପ୍ରଭୁ ଭକ୍ତିରୁ ଦୂରେଇ ଗଲିକି ?"

ସୋହା ନିଜ ଭିତରୁ ସ୍ୱାଭାବିକ ଭାବରେ ଭକ୍ତି ରସ ଝରି ନପାରିବାର ଅନେକ କାରଣ ଦର୍ଶାଏ । ସ୍ୱାଭାବିକ ଭାବରେ ଭଲମନ୍ଦକୁ ଅନୁଭବ କରିପାରିବାର ଗୋଟିଏ ଭୟଂକର ଉପଲବ୍ଧି ସୋହା ଭିତରେ ଥିଲା । ସେ ନିଜକୁ ଯେଉଁଠି ଏକୁଟିଆ ପାଉଥିଲା ତା'ଭିତର ସେହି ଉପଲବ୍ଧି ଅଧିକ ପ୍ରଗଳ୍ଭ ହୋଇଉଠୁଥିଲା । ଯେଉଁ ସମୟରେ ମୁଁ ସୋହା ସହିତ ଅଧିକ ଅନ୍ତରଙ୍ଗ ହୁଏ, ନିବିଡ ହୁଏ ଏବଂ ତାକୁ ହୃଦୟଙ୍ଗମ କରିପାରେ ।

ବିରାଟ ଆଶ୍ରମ ଭିତରେ ସତ୍‌ସଙ୍ଗୀମାନଙ୍କ ରହିବାକୁ ବଡ ବଡ ହଲ୍ ଏବଂ ଜଣେ ଜଣେ ଦିଦିଙ୍କ ପାଇଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପ୍ରକୋଷ୍ଠର ବ୍ୟବସ୍ଥା ଥାଏ । ବିଭିନ୍ନ ପ୍ରାନ୍ତରରୁ ବହୁ ସତ୍‌ସଙ୍ଗୀ ଆସିଥାନ୍ତି । ସୋହା ନିଜ ଜିନିଷ ପତ୍ର ନିର୍ଦ୍ଦିଷ୍ଟ ସ୍ଥାନରେ ରଖି ଫ୍ରେସ୍ ହୋଇଯାଏ । ପୁରୁଣା ସତ୍‌ସଙ୍ଗୀମାନେ ଗୁରୁଜୀଙ୍କୁ ଦେଖିବାକୁ ବିକଳ ହୋଇ ଧାଇଲେ । ଦିଦି ସେମାନଙ୍କୁ ସାଂତ୍ୱନା ଦିଅନ୍ତି, 'ଗୁରୁଜୀ ଦିଲ୍ଲୀରୁ ଫେରିନାହାନ୍ତି ତମେ ସମସ୍ତେ ଫ୍ରେସ୍ ହୋଇ ସାଧନା ହଲକୁ ଆସ ।'

ଏ ଥିଲେ ବ୍ରଜେଶ୍ୱରୀଦିଦି । ଯାହାଙ୍କ ଦାୟିତ୍ୱ ଥିଲା ବିଭିନ୍ନ ସ୍ଥାନରେ ପ୍ରବଚନ ଦେବା ସତ୍‌ସଙ୍ଗୀମାନଙ୍କୁ ଗୁରୁଜୀଙ୍କ ଦର୍ଶନ କରାଇବାର ବ୍ୟବସ୍ଥା କରିବା ଇତ୍ୟାଦି । ସମସ୍ତେ ଫ୍ରେସ୍ ହୋଇ ଘଣ୍ଟାକ ଭିତରେ ସାଧନା ହଲ୍‌ରେ ପହଞ୍ଚିଗଲେ, କୀର୍ତ୍ତନ

ଚାଲିଥାଏ; ଖୁବ୍ ଶୀତଳ ଅନୁଭବ । ପୁରାଣର ରାଧାଙ୍କ ନାମ ଜପ ଏବଂ ରାଧାଙ୍କ ସ୍ମରଣରେ ଭକ୍ତି ରସଭରା ଭଜନର ସୁର ଝରୁଥାଏ ସେଠାକାର ପୁରାତନ ସାଧ୍ୱୀମାନଙ୍କ କଣ୍ଠରୁ । ଏତେ ସୁନ୍ଦର ଗାନ କରୁଥିବା ଏହି ସଙ୍ଗୀତଶିଳ୍ପୀମାନଙ୍କର ଏପରି ସ୍ଥିତିକୁ ଦେଖି ସୋହା ମନରେ ତୀବ୍ର ପ୍ରତିକ୍ରୀୟା ଏମାନେ ପ୍ରକୃତରେ ଯଦି ସଂସାରୀ ହୋଇଥାନ୍ତେ ଏବଂ ଜଣେ କଣ୍ଠଶିଳ୍ପୀ ତେବେ ହୁଏତ ଏମାନଙ୍କର ଅନେକ ଫ୍ୟାନ୍ ହେବା ସହ ସଂଗୀତ ଦୁନିଆଁରେ ଭଲ ରୋଜଗାର କରୁଥାନ୍ତେ । ଆକର୍ଷଣୀୟ କଣ୍ଠକୁ ସୁନ୍ଦର ଚେହେରା ଲୋକଙ୍କୁ ପ୍ରଭାବିତ କରିବାର ସବୁ କୌଶଳ ଏମାନଙ୍କ ପାଖରେ କହିଲେ କିଛି ଭୁଲ୍ ହେବନାହିଁ । ଓଡିଶାରେ ଯେତେବେଳେ ଧୁ ଧୁ ଖରା ଗରମରେ ଦେହ ଜଳେ ବୃନ୍ଦାବନ ପରିବେଶ କିନ୍ତୁ ଶୀତଳ ପରିବେଶରେ ପୁଣି ରାତିଦିନ ଭଜନ କୀର୍ତ୍ତନ ଆଶ୍ରମ ମଧ୍ୟରେ ଅବ୍ୟାହତ ଚାଲିବା ଦେଖି ସୋହା ସେମାନଙ୍କ ପ୍ରତିନିଧିତ୍ୱ କରୁଥିବା ଦିଦିଙ୍କୁ ପ୍ରଶ୍ନ କରେ, 'ଦିଦି ଏମିତି କ'ଣ ସବୁଦିନ ଏଠାରେ କୀର୍ତ୍ତନ ହୁଏ ?'

'ନା, ବର୍ତ୍ତମାନ ମହାରାଜ ଅସୁସ୍ଥ, ତାଙ୍କ ଶରୀରର ସୁସ୍ଥତା ପାଇଁ ଅଖଣ୍ଡ ଦୀପ ବସିଛି । ଏମିତି ଅଠର ଦିନ ଚାଲିବ ।' ଦିଦି ଏତକ କହି ଅନ୍ୟତ୍ର ଚାଲିଗଲେ ।

'ମହାରାଜ, ଏ ପୁଣି କିଏ ?' ସୋହା ଏହି ସଂଗଠନ ସଂପର୍କରେ ବିଶେଷ ଜାଣି ନଥାଏ ଏଣୁ ତା' ଦୃଷ୍ଟିରେ ଗୁରୁ କିଏ ଶିଷ୍ୟ କିଏ ସମସ୍ତେ ସମାନ । ଦିନେ ପରେ ମହାରାଜ ଫେରିଲେ ଦିଲ୍ଲୀ ଡାକ୍ତରଖାନାରୁ । ମହାରାଜଙ୍କ ଫେରିବା ପରେ ଆଶ୍ରମରେ ଆହୁରୀ ଚହଳ ପ୍ରହଳ, ଗାନା ବାଜଣାରେ କମ୍ପି ଉଠୁଥିଲା ଆଶ୍ରମ । ନିଦରୁ ଉଠି ସୋହା ଆଖି ମଳି ମଳି ସାଧନା କକ୍ଷକୁ ଚାହିଁଲା । କକ୍ଷ ମଧ୍ୟରେ ସଜ୍ଜିତ ଥିବା ସିଂହାସନରେ  ଜଣେ ବୃଦ୍ଧ ବ୍ୟକ୍ତି ବସିଛନ୍ତି । ଦୁଇ ପାର୍ଶ୍ୱରେ ଦୁଇ ଜଣ ପଙ୍ଖା କରୁଛନ୍ତି ଯଦିଓ କକ୍ଷ ମଧ୍ୟରେ ଚାଳିଶ ପଚାଶ ବିଦ୍ୟୁତ୍ ପଙ୍ଖା ଲାଗିଛି ଆଉ ଏକ କଡକୁ ହୁଇଲ୍ ଚେୟାର । ସୋହା ବାଲ୍‌କୋନିର କରିଡରରେ ଠିଆ ହୋଇ ଖାଲି ଦେଖୁଥାଏ । କିଛି ସମୟ ପରେ ହୁଇଲ୍ ଚେୟାରରେ ବସି ମହାରାଜ ନିଜ କକ୍ଷକୁ ଫେରିଗଲେ । ଗୋଡରେ ପ୍ଲାଷ୍ଟର ହେବା ଦେଖି ସୋହା ଜାଣିଲା ମହାରାଜଙ୍କ ଗୋଡ ଭାଙ୍ଗିଛି । ତା'ପରେ ସେ ତାଙ୍କ କକ୍ଷକୁ ବିଶ୍ରାମ ଉଦ୍ଦେଶ୍ୟରେ ଫେରିଗଲେ । ସୋହା ନିଜ ନିତ୍ୟକର୍ମ ସାରି ଆଶ୍ରମ ଚାରିଆଡେ ଥରେ ବୁଲି ଆସିଲା । ଆଶ୍ରମ ମଧ୍ୟରେ ଥିବା ଫୁଲ ବଗିଚାଟି କିନ୍ତୁ ଖୁବ୍ ଆକର୍ଷଣୀୟ । ସୋହା ଅନେକ ସମୟ ସେହି ବଗିଚା ମଧ୍ୟରେ ଫୁଲଙ୍କ ଗହଣରେ ସମୟ ବିତାଉଥିଲା । ଧିରେ ଧିରେ ଆଶ୍ରମରେ ଗହଳି ବଢୁଥାଏ ।

ମହାରାଜ ଡାକ୍ତରଖାନାରୁ ଫେରିଛନ୍ତି ଏଣୁ ତାଙ୍କୁ ଦେଖିବାକୁ ବହୁ ଦୂରଦୂରାନ୍ତରୁ ମଧ୍ୟ ତାଙ୍କ ପ୍ରିୟ ଭକ୍ତମାନେ ତାଙ୍କୁ ଦେଖିବାକୁ ଆସୁଥିଲେ ବିଭିନ୍ନ ସ୍ଥାନରୁ ଆସିଥିବା

ଗ୍ରୁପ୍ ବାରି ବାରି କରି ମହାରାଜଙ୍କ ଦର୍ଶନ ପାଇଁ ଯାଉଥିଲେ । ଏହିକ୍ରମରେ ସେଦିନ ସଂଧ୍ୟା ସମୟରେ ସୋହାଗ୍ରୁପ୍‌କୁ ଦର୍ଶନ ସୁଯୋଗ ମିଳିଲା । ପୁରୁଣା ସତ୍‌ସଙ୍ଗୀମାନେ ମହାରାଜଙ୍କୁ ଦର୍ଶନ କରି ଏକ କଡକୁ ଛିଡା ହେବା ପରେ ସୋହା ଏବଂ ତା'ଦଳର ଅନ୍ୟ ତିନିଜଣ ଯେଉଁମାନେ ନୂଆ ଥିଲେ ଏହି ଚାରିଜଣଙ୍କୁ ପ୍ରତିନିଧିତ୍ୱ କରୁଥିବା ବ୍ରଜେଶ୍ୱରୀଦିଦି ମହାରାଜଙ୍କ ସହ ପରିଚୟ କରେଇ ଦେଲେ ।

ସୋହାକୁ ପରିଚୟ କରାଇବାବେଳକୁ ମହାରାଜଙ୍କ ଦୃଷ୍ଟି କିଛି ସମୟ ସୋହା ଚେହେରା ପାଖରେ ସ୍ଥିର ହୋଇ ରହିଗଲା। ସୋହା ମହାରାଜଙ୍କ ଚରଣ ସ୍ପର୍ଶ କରି ନତମସ୍ତକ ହେବା ବେଳକୁ ମହାରାଜଙ୍କ ପ୍ରଶ୍ନ ବ୍ରଜେଶ୍ୱରୀଦିଦିଙ୍କ ପ୍ରତି ହୁଏ, 'ଏହି ଝିଅର ବିବାହ ହୋଇସାରିଛି ?'

ବ୍ରଜେଶ୍ୱରୀଦିଦି ଧିର କଣ୍ଠରେ କହନ୍ତି, 'ନା ।' ମହାରାଜ ଏଥର ପୁଣି କହିଲେ, 'ତେବେ ଏହି ଝିଅକୁ ଶିଘ୍ର ଭଗବାନ ପ୍ରାପ୍ତି ହେବେ ।'

ସୋହା ମନରେ କଥାଟି ପ୍ରଥମେ କିମ୍ଭୁତକିମ୍ଭାକାର ଲାଗିଲା, ପରବର୍ତ୍ତୀ ସମୟରେ ସେ ହୃଦ୍‌ବୋଧ କରେ ହଁ ବ୍ରହ୍ମଚର୍ଯ୍ୟ ହେତୁ କୌଣସି କାର୍ଯ୍ୟରେ ନିଷ୍ଠା ପ୍ରତିଷ୍ଠା କରିବା ସହଜ, ବୋଧ ହୁଏ ମହାରାଜ ଏହି ଦୃଷ୍ଟିରୁ ଏ କଥାଟି କହିଥାଇପାରନ୍ତି। କିଛି ସମୟ ପରେ ସୋହା ସହଜ ହୁଏ ଏବଂ ମହାରାଜଙ୍କ ଫଟୋ ଉଠାଇବାକୁ ଅନୁମତି ମାଗିଲା । ଦୁଇ ଚାରୋଟି ଫଟୋ ଉଠାଇବା ପରେ ମହାରାଜ ସୋହା ହାତରୁ କ୍ୟାମେରା ଛଡାଇ ନେଇ ସେ ନିଜେ ସୋହାର ଫଟୋ ଉଠାଇବାରେ ଲାଗିଲେ । ଏହା ଦେଖି ଅନ୍ୟ ସତ୍‌ସଙ୍ଗୀମାନେ ପୁଲକିତ ହେଉଥିଲେ ଆଉ ସୋହା ଆଶ୍ଚର୍ଯ୍ୟ । ଅସଂଯତ ସୋହା କ'ଣ କରିବ ସ୍ଥିର କରିପାରୁନଥିଲା ।

ଏଥର ସେମାନେ ସମସ୍ତେ ମହାରାଜଙ୍କ କକ୍ଷରୁ ଫେରିଆସିଲେ । ସ୍ୱାଭାବିକ ଭାବେ ସୋହାକୁ ମହାରାଜ ପ୍ରାଧାନ୍ୟ ଦେଇଥିବାରୁ ଅନ୍ୟ ସତ୍‌ସଙ୍ଗୀମାନେ ତା' ଚାରିଆଡେ ଘେରିଗଲେ । ସୋହା ପ୍ରତିକ୍ରୀୟା ବିହୀନ ହୋଇ ଚାଲିଥାଏ । ସତ୍‌ସଙ୍ଗୀମାନେ ନିଜ ନିଜ ଭିତରେ କଥାବାର୍ତ୍ତା କରୁଥିଲେ, 'ମହାରାଜ ଏମିତି ସେମିତି ମଣିଷ ନୁହନ୍ତି ସେ ସ୍ୱୟଂ ଭଗବାନ । ଶ୍ରୀକୃଷ୍ଣଙ୍କର କଳିଯୁଗୀୟ ଅବତାର' । ସୋହା ସେମାନଙ୍କ କଥାକୁ କାନେଇ ଶୁଣିଲା । ମହାରାଜ ପୁଣି କଳିଯୁଗର କୃଷ୍ଣ ! ସୋହାକୁ ଏକଥା କେମିତି କେମିତି ଲାଗିଲା । ମନଷା ମଧ୍ୟ ଏସବୁ ଶୁଣି ଦେଖି ଖାଲି ହସୁଥିଲା, କିଛି କହିଲାନି ।

ମନରେ କେତେ କଥା ତା'ର ଉମଙ୍ଗ ନେଲା, ଭାବିଲା ମହାରାଜ କୃଷ୍ଣଙ୍କ ଅବତାର ଯେତେବେଳେ ତାଙ୍କୁ ଯାହା ମାଗିଲେ ସେ ତ ଦେଇପାରିବେ । ତେବେ ସେ

ତାଙ୍କୁ ମାଗିବ କ'ଣ ! ଏମିତି କିଛି ମାଗିବ ଯାହା ସେ ତୁରନ୍ତ ଦେଇପାରିବେ ନାହିଁ । ଭଲ ହେବ ଯଦି ସେ ମହାରାଜଙ୍କୁ କହେ ତୁରନ୍ତ ତାକୁ ଗୋଟିଏ ମଣିଷ ଛୁଆ ଦରକାର। ମଣିଷ ଛୁଆ ତିଆର ହେବାକୁ ମାଆ ପେଟ ପୁଣି ଦଶ ମାସର ସମୟ ଦରକାର ନିଶ୍ଚୟ ସେ ମହାରାଜଙ୍କୁ ଏଭଳି କିଛି ମାଗିବ ଯାହା ସେ ତୁରନ୍ତ ଦେଇପାରିବେ ନାହିଁ । ପରମୁହୂର୍ତ୍ତରେ ସୋହାକୁ ମହାଭାରତର କୁନ୍ତୀ ମନେ ପଡିଯାଇଛନ୍ତି । ଏମିତି ଖେଳ ଖେଳରେ ତାଙ୍କୁ ସୂର୍ଯ୍ୟଦେବଙ୍କଠାରୁ କର୍ଣ୍ଣ ମିଳିଯାଇଥିଲେ, କୁମାରୀ ଝିଅ ଏଣୁ ଛୁଆଟାକୁ ନଦୀନାଳ ଦେଖି ବିଷର୍ଜନ କରିବାକୁ ପଡିଥିଲା । ତେବେ ସୋହା ଆଉ ଗୋଟିଏ କର୍ଣ୍ଣକୁ ଧରା ପୃଷ୍ଠକୁ ଆଣିବା ଉଦ୍ୟମ କରୁନାହିଁ ତ! ଯଦି ସତରେ ଏସବୁ ସଙ୍ଗଠିତ ହୋଇଯାଏ ତେବେ କ'ଣ କରିବ ସେ ? ଏଭଳିଗୁଡାଏ ଚିନ୍ତନରେ ବସି ଥାଏ ସୋହା ଭଜନ ହେଉଥିବା ହଲ ଭିତରେ। ତା'ବାମ କଡରୁ କିଛି ଦୂରକୁ ଗୌରୀ ଯୋରରେ ଏକ ନିଶ୍ୱାସରେ ଧାଇଁବା ଦେଖିଲା । କ'ଣ ହେଇଛି ନାନୀଙ୍କର କହି ସୋହା ନିଜ ବସିଥିବା ସ୍ଥାନରୁ ଉଠିଆସିଲା। ଦେଖିଲା ନାନୀଙ୍କ ଦେହ ଭୟରେ କମ୍ପୁଛି । ସେ କିଛି କହିବାକୁ ଚାହୁଁଛନ୍ତି ସୋହାକୁ; କିନ୍ତୁ ଭୟରେ କହିପାରୁନାହାନ୍ତି । ସୋହା ଗୌରୀ ପାଇଁ ଗିଲାସେ ପାଣି ଆଣି ପିଇବାକୁ ଦେଲା ।

'ସୋହା ଚାଲ୍ ଘରକୁ ଆଜି ହିଁ ପଳେଇବା ।' ଗୌରୀଠାରୁ ଏହା ଶୁଣି ସୋହା ବେଶ ଠଉରେଇ ନେଲା କିଛି ଭୟଂକର ଅଘଟଣ ଘଟିଛି ନାନୀଙ୍କ ସହ। ତେବେ ଆଉ ଦୁଇ ଦିନ ପରେ ସେମାନଙ୍କର ଟ୍ରେନ ଟିକେଟ ହୋଇଛି ତୁରନ୍ତ ଟିକେଟ ମିଳିବ ନାହିଁ କେଉଁ ପାଖ ବାଟ ଯେ ସେମାନେ ବୃନ୍ଦାବନରୁ ଓଡିଶା ଚାହୁଁ ଚାହୁଁ ଚାଲିଆସିବେ।

ସୋହା ଗୌରୀକୁ ଆଶ୍ରମ ପଛ ପାଖକୁ ଗୋଟିଏ ନିରୋଳା ସ୍ଥାନକୁ ନେଇ ଗଲା ସେଠାରେ ସେ ଗୌରୀକୁ ଆଶ୍ୱସ୍ତ କଲା । ଏବଂ କ'ଣ ହୋଇଛି ଆରାମରେ କହିବାକୁ କହିଲା । ଗୌରୀଠାରୁ ସୋହା ଯାହା ଶୁଣିଲା ତା'ପାଦ ତଳୁ ମାଟି ଖସିଗଲା ଏବଂ ମୁଣ୍ଡ ଉପରୁ ଆକାଶ ଛିଣ୍ଡି ପଡିଲା ପରି ତାକୁ ଅନୁଭୂତ ହେଲା ।

ଗୌରୀର ଅବସ୍ଥା କହୁଥିଲା ଦୁର୍ଘଟଣାଟି ଭୟଂକର ଗୋଟିଏ ମାନସିକ ଆଘାତ ଦେଇଛି ଗୌରୀକୁ । ଏଥର ଗୌରୀ ଥଙ୍ଗେଇ ଥଙ୍ଗେଇ କହିବାରେ ଲାଗିଲା, 'ମହାରାଜ ମୋତେ ତାଙ୍କ କକ୍ଷକୁ ଡକାଇଲେ । ଦିଦି ଆସି ମୋତେ ଏକଥା କହିବା ପରେ ମହାରାଜ ମୋତେ ଡାକିବା ଶୁଣି ମୁଁ ଖୁସୀରେ ବିଭୋର ହୋଇଗଲି । ସେଠିକୁ ଗଲା ପରେ ଦିଦି ବାହାରକୁ ଚାଲିଆସିଲେ, କବାଟ ବନ୍ଦ ହୋଇଗଲା । ଆପେ ଆପେ କୋଠରୀର ତେଜ ଆଲୁଅ ଲିଭି କ୍ଷୀଣ ହୋଇଗଲା । କୋଠରୀଟି ଆମୋଦ ଦେଲା ପରି ସୁବାସିତ ହେଉଥାଏ । ମହାରାଜ ମୋତେ ପାଖକୁ ଡାକିଲେ... ।' ଏତକ କହି ସେ

କାନ୍ଦିବାରେ ଲାଗିଲେ । ସୋହା ପୁଣି ତାଙ୍କୁ ଆଶ୍ୱସ୍ତ କଲା ଏବଂ ଆଗକୁ କ'ଣ ହୋଇଛି ଜାଣିବା ଜିଜ୍ଞାସା କଲା ।

ଗୌରୀନାନୀ ଏଥର କାନ୍ଦି କାନ୍ଦି ପୁଣି କହିବାକୁ ଲାଗିଲେ, 'ମୋ ମୁଣ୍ଡରେ ହାତ ଆଉଁସି କହିଲେ, "ତୋର ବହୁତ ଦୁଃଖ; ଆଜିଠାରୁ ତୋର ସବୁ ଦୁଃଖ ଚାଲିଯିବ । ଆ... ମୋ ପାଖକୁ ଆ... ।" ସ୍ୱାଭାବିକ ଭାବରେ ମୁଁ ଭାବିଲି ମହାରାଜ କିଛି ଗୋଟିଏ ମନ୍ତ୍ର ଯନ୍ତ୍ର କରିବେ ମୋ ଦୁଃଖ ଚାଲିଯିବା ପାଇଁ । କିନ୍ତୁ ସେଭଳି କିଛି ହେଲା ନାହିଁ ସେ ମୋତେ ନିର୍ଦ୍ଦେଶ ଦେଲେ ମୋର ପିନ୍ଧିଥିବା ଶାଢୀ କାଢିବାକୁ । ମୁଁ ଡରି ଚୁପ୍ ହୋଇ ଗୋଟିଏ କଡକୁ ଛିଡା ହେଲି । ସେ ମୋତେ ପୁଣି କହିଲେ, "ଡରନା ତୋ ଦେହରେ ମୋ ହାତ ଥରେ ବୁଲି ଆସିଲେ ତୋ ଦେହର ପାପ ଚାଲିଯିବ ତୁ ମୁକ୍ତ ହୋଇ ଯିବୁ ଆଉ ଶୁଖି ଜୀବନଟିଏ ତୋତେ ପ୍ରାପ୍ତ ହେବ ।" ମୁଁ ବିଭିନ୍ନ ଆଶଙ୍କା ଭିତରେ ଭୟରେ ଥରି ଥରି ତାଙ୍କ ପାଖକୁ ଗଲି।' ଗୌରୀଠାରୁ ଏକଥା ଶୁଣି ସୋହାକୁ ପୁରାଣ ପୃଷ୍ଠାର ଅହଲ୍ୟା ମନେ ପଡିଛନ୍ତି କ'ଣ ତେବେ ରାମ ପଥର ପାଲଟିଥିବା ଅହଲ୍ୟାକୁ ଛୁଇଁବା ପରେ ଅହଲ୍ୟା ପୂର୍ବ ରୂପକୁ ଫେରିବା ଭଳି ବିଷୟ । ନା ନା ସେଭଳି ହୋଇନଥିବ ନାନୀଙ୍କ ଅବସ୍ଥା ଯାହା କହୁଛି ଏଠି ଆଉ କିଛି ଘଟିଛି, 'ହଁ କୁହ, କୁହ ନାନୀ କ'ଣ ହେଲା ତା'ପରେ ?'

'ତାଙ୍କ ଉପରେ ମୁଁ ଭରସା କରି ପୁଣି ତାଙ୍କ ପାଖକୁ ଗଲି ହେଲେ ସେ... ।' ଭୋ ଭୋ ହୋଇ ଗୌରୀ କାନ୍ଦିବାରେ ଲାଗିଲା । ଏଥର ସୋହାକୁ ଘଟଣା ସମ୍ପର୍କରେ ବୁଝିବାକୁ ଆଉ କିଛି ଅଛପା ନଥିଲା ।

ଓଃ ଆମ ଦେଶରେ ଆଉ କେତେ ଦିନ ଏମିତି ଧର୍ମ ନାମରେ ଲୋକଙ୍କ ବିଶ୍ୱାସ ସହିତ ଖେଳ ଚାଲିଥିବ ? ସୋହା ଜୀବନର ପ୍ରତି କୋଣରେ ମଣିଷର ମିଥ୍ୟା ପ୍ରବଞ୍ଚନାକୁ ଦେଖୁଥିଲା, ସାମ୍ନା କରୁଥିଲା, ତା' ସାମ୍ନାରେ କୌଣସି ବ୍ୟକ୍ତିକୁ ଆଉ ଭରସା କରିବା ପରି ଆଗ୍ରହ ଜନ୍ମି ପାରୁନଥିଲା । କିନ୍ତୁ  ମଣିଷକୁ ସାମ୍ନା କରିବା ହୁଏ ମିଥ୍ୟାକୁ ଦେଖିବା ସହିବା ହୁଏ ଏବଂ ସେଥିରେ କିଛି କ୍ଷଣ ଆଉଟୁ ପାଉଟୁ ହେବାକୁ ବି ହୁଏ । ଏସବୁ ଜୀବନର ଗୋଟିଏ ଗୋଟିଏ ଅଭିନୟ । ସୋହାକୁ ମନଷା କହିଥିବା ଆଲୋକ ଆଡକୁ ଆଗାଉଥିବା କଥା ମନେପଡିଛି ।



*(ଶତଦ୍ରୁ)*

# ଭଙ୍ଗା ଦର୍ପଣ

"ମ୍ୟାଡମ୍ ମୋର ଗୋଟିଏ ସିମ୍ପଲ୍ ଥିଓରି ମୁଁ ଯଦି ଆଜି ଆପଣଙ୍କୁ ଭଲ ଦୁଇପଦ କଥା କହିଥିବି ତେବେ କାଲି ମୋ ସ୍ତ୍ରୀ ଏବଂ ଝିଅକୁ ଅନ୍ୟ କିଏ ଭଲ ଦୁଇପଦ କଥା କହିବେ ।" ମଦନବାବୁଙ୍କଠାରୁ ଏହା ଶୁଣି କାକଳି ଭାବପ୍ରବଣ ହୋଇଯାଏ । ନିଜ ଅତୀତକୁ ମନେପକାଏ । ଗତ ପନ୍ଦର ବର୍ଷର ବୈବାହିକ ଜୀବନରେ କେବେ ଦିନେ ସେ ତା' ସ୍ୱାମୀଠାରୁ ଏଭଳି ଆନ୍ତରିକତା ପାଇନାହିଁ ।

କାକଳି କେଶବକୁ ବିବାହ କରିବା ପୂର୍ବରୁ ଆଉ ବିବାହର ପରେ ବି ସ୍ୱାମୀମାନେ ସ୍ତ୍ରୀମାନଙ୍କୁ ଭଲପାଇବାକୁ ଖୁବ୍ ନିକଟରୁ ଦେଖିଛି । ସେହି ସ୍ୱାମୀମାନଙ୍କର ସ୍ତ୍ରୀମାନଙ୍କୁ ଭଲପାଇବା ଦେଖି କାକଳି ନିଜ ସ୍ୱାମୀର ଭଲପାଇବାକୁ ଆଜି ମାପିବାବେଳେ ସେ ଶୂନ୍ୟ ହୋଇପଡୁଥାଏ । କେବେ କାକଳି ତା'ସ୍ୱାମୀ ପାଖରେ କୌଣସି ଅଳିଅର୍ଦ୍ଦଳି କରିନି କେବେ ଜବରଦସ୍ତି କହିନି ନିଜ ପାଇଁ କିଛି ଘେନି ଆଣିବାକୁ । କେଶବର ରୋଜଗାର ଅନୁଯାୟୀ ସେ ନିଜ ସଂସାରକୁ ଚଳାଇଛି । ଯେତେବେଳେ ପରିବାରର କିଛି ଆବଶ୍ୟକ ମନେ କରିଛି ନିଜେ ନୂଆ ନୂଆ ଯୋଜନାରେ ତାକୁ ପୂରଣ କରିପକାଇଛି ସିନା କେବେ କେଶବକୁ ବାଧ କରିନି କି ଆର୍ଥିକ ଚାପ ତା' ଉପରେ ଲଦିଦେଇନି ।

ପଡିଶା ଘର ସ୍ତ୍ରୀ ଲୋକ କେତେଥର ସ୍ୱାମୀ ଆଣିଥିବା ଶାଢ଼ୀ କି ଗହଣାକୁ ଦେଖାଇ କାକଳି ପାଖରେ କହିଛି, ଉପହାର ଦେଖାଇଛି କିନ୍ତୁ କାକଳି ମନରେ କେବେ କ୍ଷୋଭ ଆସିନାହିଁ କେଶବ ତା'ପାଇଁ କେବେ କିଛି ଶ୍ରଦ୍ଧାରେ କିଣି ଆଣିନାହିଁବୋଲି । କେତେ ଥର ଏଭଳି ହୋଇଛି କାକଳିର ଦିଅର, ତା'ସ୍ତ୍ରୀର ମନ ପସନ୍ଦ ଖାଦ୍ୟ ଆଣିବା କିନ୍ତୁ କାକଳି ପାଇଁ କେଶବ କେବେ ବି କିଛି ମନ ପସନ୍ଦ ଖାଇବା ଆଣିନି । ହୁଏତ ବିବାହର

ପନ୍ଦର ବର୍ଷ ପରେ ଯଦି ଆଜି ତାକୁ ପ୍ରଶ୍ନ କରାଯାଏ କାକଳିର ମନ ପସନ୍ଦର ଖାଦ୍ୟ କି ଦ୍ରବ୍ୟ ବିଷୟରେ ତେବେ ସେ ଦ୍ୱନ୍ଦ୍ୱରେ ରହିବ। କେବେ ବି କେଶବ କାକଳିର ମନ ଜାଣିବାକୁ ଚାହିଁ ନଥିଲା କି ଜାଣିବାକୁ ଚେଷ୍ଟା ବି କରି ନଥିଲା । କାକଳି ନିଜ କର୍ତ୍ତବ୍ୟ ଜାଣି ବିବାହ ପରେ ଜଣେ ସ୍ତ୍ରୀର ସମସ୍ତ ଧର୍ମ ତୁଲାଇଛି । କିନ୍ତୁ ଅନେକ ଦିନ ସଂସାର ଜଞ୍ଜାଳରେ ଛନ୍ଦି ହେବା ପରେ ଆଜି କାକଳି ଏସବୁକୁ ନିରୀକ୍ଷଣ କଲାବେଳକୁ କେଶବ ତା'ଠାରୁ ଅନେକ ଦୂରରେ । ସେ କେତେ ମନେ ପକାଏ କେଶବ କେବେ ତାକୁ ଭଲ ଦୁଇପଦ କଥା କହିଛି, କେବେ ଆନ୍ତରିକତାର ନିବିଡତାର ମୁହୂର୍ତ୍ତ ବିତାଇଛି ?

ଆଜି ନିଜ ବିବାହର ସମୀକ୍ଷା କଲାବେଳକୁ କାକଳି ଠିକ୍ ବୁଝିପାରୁଥିଲା କେଶବକୁ ପ୍ରଥମ ଦେଖାରେ ସେ ଭଲପାଇଯାଇଥିଲା ସତ; କିନ୍ତୁ କେଶବ କେବେ ତାକୁ ହୃଦୟତାର ସହ ଭଲପାଇପାରିନି । ସେମାନଙ୍କ ବିବାହ ସଂଗଠିତର ବିଶେଷତା କ'ଣ ଚିନ୍ତା କଲାବେଳକୁ କେଶବର ବିବାହ ବୟସ ହୋଇଯିବା ଏବଂ ତା' ପାଇଁ କନ୍ୟା ଦେଖାବେଳେ କାକଳି ସହ ତା'ର ଦେଖା ହୋଇଥିଲା। ସ୍ୱାଭାବିକ ଭାବରେ ଅବିବାହିତ ଝିଅ ପୁଅର ମିଳନ ଘଟିବା ଏବଂ ଦୁଇପରିବାରର ସ୍ୱିକୃତିରେ ବିବାହ ସଂଗଠିତ ହୋଇଯାଏ । ଯାହାକି କାକଳି ଓ କେଶବ କ୍ଷେତ୍ରରେ ବି ହୋଇଥିଲା । କିନ୍ତୁ ଆଜି କାକଳି ଠିକ୍ ବୁଝିପାରୁଛି ଦୁଇଟି ହୃଦୟର ମିଳନ ନ ଘଟିବାଯାଏଁ ବିବାହ ଏକ ବାଧ୍ୟବାଧକତା ଛଡା ଆଉ କିଛି ନୁହେଁ । ତେବେ ଆମ ସମାଜରେ ଆମ ଘରମାନଙ୍କରେ ଏମିତି ବାଧ୍ୟବାଧକତାରେ ବିବାହ କାର୍ଯ୍ୟ ସମାପନ ହୋଇଥାଏ ଏବଂ ତାକୁ ତୁଲାଇବାକୁ ବାଧ୍ୟ କରାଯାଏ । କାକଳି ଅଣନିଶ୍ୱାସବୋଧ କରେ । କେଶବକୁ ଖୁସି କରିବାକୁ ଯାଇ ସେ କେତେ ନୂଆ ନୂଆ କୌଶଳ କରିଛି, ତା' ମନକୁ ଚାହିଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରେ କେଶବକୁ ଜୀବନର ସବୁ ସୁଖ ଦେବାକୁ। ତଥାପି ବି କେଶବ କାକଳି ପାଖରେ କିଛି ଗୋଟିଏ ଅଭାବ ବାରମ୍ବାର ଦେଖୁଥାଏ।

କେଶବକୁ ସବୁପ୍ରକାର ସନ୍ତୁଷ୍ଟି କରିବା ଚେଷ୍ଟାରେ କାକଳି ନିଜଠାରୁ ନିଜେ ଦୂରେଇ ଯାଉଥିଲା । ଏପରିକି ନିଜର ବାସ୍ତବ ସତ୍ତାକୁ ମଧ୍ୟ ପାଶୋରିବାକୁ ଲାଗିଲା । କାକଳି ବିଶ୍ୱାସ କରେ ମନର ମିଳନ ଏବଂ ଆକର୍ଷଣରେ ହିଁ ସଂପର୍କ ବଞ୍ଚି ରହେ। କିନ୍ତୁ କେଶବ ପାରସ୍ପରିକ ବୁଝାମଣାକୁ ଗୁରୁତ୍ୱ ଦିଏ । କାକଳି କେତେ କହେ ଖାଲି ପାରସ୍ପରିକ ବୁଝାମଣାରେ ସଂପର୍କ ତିଷ୍ଠେସିନା କିନ୍ତୁ ସେଥିରେ ଆନ୍ତରିକତା ନଥାଏ କି ଆକର୍ଷଣ ନଥାଏ । ଜଣେ ଭଲ ବୁଝାମଣା ରଖିବାର ଅଭିନୟ ମଧ୍ୟ କରିପାରିବ କିନ୍ତୁ ଆନ୍ତରିକତାରେ କୌଣସି ଅଭିନୟ ନଥାଏ। ଏଣୁ ସର୍ବଦା ହୃଦୟକୁ ଗୁରୁତ୍ୱ ଦେବା ଉଚିତ୍ । କାକଳିର ଏସବୁ କଥା କିନ୍ତୁ ଯିଦ୍ ଖୋର ମନୋବୃତ୍ତି ରଖୁଥିବା କେଶବ ପାଖରେ ପହଞ୍ଚି ପାରେ ନାହିଁ। ସେ ଯାହା ବୁଝିଥିବ ସେୟା। ସେହି ବୁଝିବାରେ କାହାରି କ'ଣ କ୍ଷତି ହେଇଯାଉ

ପଛେ ନିଜ ପୁରୁଷପଣିଆକୁ ଓଜନଦାର ବୋଲି ଦେଖାଇବାକୁ ଯାଇ କେଶବ ସବୁବେଳେ କାକଳିକୁ ନ୍ୟୁନ କରି ଦେଖେ।

କାକଳି ଆଉ ସହ୍ୟ କରିପାରୁ ନଥିଲା ନିଜ ମନ ଭିତରର ବେଦନାକୁ । କେତେ ସ୍ୱପ୍ନ ଦେଖିଥିଲା ବିବାହ କରି ସୁଖୀ ସଂସାର କରିବାର କିନ୍ତୁ ବିବାହ କଲା ନାହିଁ ତ ସନ୍ଦେହ ଆଉ ଅପମାନର ଜାଲ ଭିତରେ ଛନ୍ଦି ହୋଇଗଲା ସେ। ପ୍ରେମର ଅଶେଷ ଶକ୍ତି ଥିବାର କୁହାଯାଏ କିନ୍ତୁ ସେହି ଶକ୍ତିରେ ବଳିୟାନ ହେବାର ଅନୁଭବ ଦିନେ ବି କରିନାହିଁ କାକଳି। ଦୁଇଟି ବିପରୀତ ଲିଙ୍ଗର ମିଳନରେ କେବେ ସୁଖୀ ଜୀବନ ବା ସଂସାର ହୋଇଯାଏନା ଏଥିପାଇଁ ସହୃଦୟ ମନ ଏବଂ ପ୍ରାଣର ଆବଶ୍ୟତା ରହିଥାଏ; ଏକଥା ଆଜି କାକଳି ନିଜେ ଅଙ୍ଗେ ନିଭାଉଛି । କେଶବ ନିଜେ ଜୀବନ ଜୀଇଁବାରେ ଅନଭିଜ୍ଞ । ସେ କିନ୍ତୁ କାକଳିକୁ ଶିକ୍ଷା ଦିଏ, ଜୀବନର ଚଳଣି କିପରି ହେବାକଥା ଯାହାସବୁ କାକଳିକୁ ଅବାନ୍ତର ଏବଂ ଅଯୌକ୍ତିକ ଲାଗେ। ଆମ ଭାରତୀୟ ସମାଜରେ ଏବଂ ପରିବାରମାନଙ୍କରେ କେଉଁ ଅନାଦି କାଳରୁ ଗୋଟିଏ ବଡ ଭ୍ରମ ରହିଆସିଛି ଯେ ପୁରୁଷ ସବୁବେଳେ ଉଚିତ କଥା କୁହେ ଏବଂ ନାରୀ ତାହା ସବୁ ନତମସ୍ତକ ହୋଇ ମାନିଗଲେ ସଂସାରର ରଥ ଠିକ୍ ଗଡିଚାଲେ । କିନ୍ତୁ ସମ୍ପର୍କ ତାହା ପୁଣି ଦାମ୍ପତ୍ୟ ସମ୍ପର୍କ ବିନା ସମର୍ପଣ ଏବଂ ସହଯୋଗରେ ଯେ କାଣିଚାଏ ଆଗକୁ ଗଡିପାରେନାହିଁ ତାହା କାକଳି ଠିକ୍ ଭାବରେ ଜାଣିଥିଲା କିନ୍ତୁ ସେ ତର୍କ ନକରି ଚୁପ୍ ରହିବାକୁ ପସନ୍ଦ କଲା।

ଆଜି କାକଳିର ଅତୀତର ଗୋଟିଗୋଟି କରି ସବୁକଥା ମନେ ପଡିଯାଏ, ପଡିଶାର ରିମା ବୋଉ ଯେତେବେଳେ କଥା କଥାରେ କହେ ଯେ ତା' ସ୍ୱାମୀ ତା' ନାଁରେ ଘରଟିଏ କିଣିଛନ୍ତି କି ମିଶ୍ରବାବୁଙ୍କ ସ୍ତ୍ରୀ କଥା ବାଣ୍ଟିଲାବେଳେ କୁହନ୍ତି ମିଶ୍ରବାବୁ ପ୍ରତି ଦୁଇ ମାସରେ ତା'ପାଇଁ ସୁନା ଗହଣା କିଣି ଦିଅନ୍ତି ଏ କଥାଗୁଡ଼ିକ କାକଳିକୁ କେମିତି ଗୋଟିଏ ଅଡୁଆ ଲାଗେ। ଘର, ଗହଣାର ଆଶା କରିବା ତ ଦୂରେ ଥାଉ କାକଳିର ମନ ଜାଣି ଖାଇବା କଥା କେବେ ପଚାରି ନଥିବ କେଶବ। ସ୍ୱାମୀ ସ୍ତ୍ରୀର ସମ୍ପର୍କରେ ଭାବ ଦିଆନିଆ ଗୋଟିଏ ମହତ୍ୱପୂର୍ଣ୍ଣ ଭୂମିକା ନିଭାଇଥାଏ । ଯେଉଁଠି ଭାବର ଆଦାନପ୍ରଦାନ ନାହିଁ ସେଠି ସମ୍ପର୍କ କୃତ୍ରିମ ଲାଗେ। ମନ ପୋଡିଯାଏ ହୃଦୟ ଖଣ୍ଡବିଖଣ୍ଡିତ ହୋଇଯାଏ। ତଥାପି ଭଙ୍ଗା ହୃଦୟକୁ ଭଙ୍ଗା ଦର୍ପଣ ଭଳି ଯୋଡିବାର ପ୍ରୟାସ ଜାରୀ ରୁହେ। ଭଙ୍ଗା ହୃଦୟରେ କେତେ ଦିନ ବା ସଂସାର ଗଢ଼ିବ ?



(ଭୂଲଗ୍ନା)

# ଠକି ହୁଏନା

**ଘ**ର ତା'ର ପୁରୀରେ। ବାପା ମାଆ ନାଁ ଦେଇଥିଲେ ସରସ୍ୱତୀ । ନବମ ଶ୍ରେଣୀରେ ପଢୁଥିଲା ବୋଉ ତା'ର ଆର ପାରିକୁ ଚାଲିଗଲେ । ବାପା ଏକ ବେସରକାରୀ ସଂସ୍ଥାରେ ଛୋଟିଆ ଚାକିରୀ କରିଥିଲେ। ରୋଜଗାର ସେମିତି ଆଖିଦୃଶିଆ ନୁହେଁ। ସିଆଡେ ଚାରି ଭଉଣୀରେ ଦୁଇ ଭାଇ। କଷ୍ଟେମଷ୍ଟେ ସଂସାରଟା ଚଳିଯାଉଥିଲା। ଏତେ ଦୁଃଖରେ ବି ବାପା ଜାଣୁଥିଲେ ପିଲାମାନେ ପାଠପଢ଼ି ବଡ ମଣିଷ ହୁଅନ୍ତୁ। ବଡ ଭଉଣୀ ମାଉସୀ ଘରକୁ ଚାଲିଗଲା। ତା'ତଳ ଭଉଣୀ ଘରର ଦାୟିତ୍ୱ ବୁଝିଲା। ସରସ୍ୱତୀର ବାପା ଆଗରୁ ସେନା ବିଭାଗରେ ଚାକିରୀ କରୁଥିଲେ । କିଛି ଗୋଟାଏ ବିବାଦ ଉପୁଜିବାରୁ ସେ ଚାକିରୀ ଛାଡି ଆସି ଘରେ ରହିଲେ। ଚାକିରୀରେ ଥିଲାବେଳେ ଘରଟିକେ ଭଲରେ ଚଳୁଥିଲା। ଘର ପାଖ ବେସରକାରୀ ସଂସ୍ଥାରେ କାମ କରି ସେମିତି କିନ୍ତୁ ଚଳେଇ ପାରୁନାହାନ୍ତି ସେ ଘରକୁ।

ସରସ୍ୱତୀର ଗାଆଁରେ କିଛି ଜମିବାଡି ଥିଲା। ତା' ଦାଦା ସେସବୁର ବୁଝାବୁଝି କରୁଥିଲେ। ସେସବୁରୁ ଯାହା କିଛି ଆସୁଥିଲା ସେମାନଙ୍କ ପରିବାରର କାମରେ ଲାଗିଯାଉଥିଲା। ଠିକ୍ ସେତିକି ବେଳକୁ ଭଗବାନଙ୍କ ଆଶୀର୍ବାଦ ଭଳି ସରସ୍ୱତୀର ବଡ ଭଉଣୀ ନୀରୁ ପାଇଁ ଗୋଟିଏ ସରକାରୀ ଚାକିରୀ କରୁଥିବା ବ୍ୟକ୍ତିର ବିବାହ ପ୍ରସ୍ତାବ ଆସିଲା। ପ୍ରସ୍ତାବ ପଡୁ ପଡୁ ବାହାଘର ବି ଠିକ୍ ହୋଇଗଲା । ନୀରୁର ଶାଶୁଘରେ ସବୁଠିକ୍‌ଠାକ୍ ଥିଲା ଯାହା ପରିବାରଟା ଟିକେ ବଡଥିଲା। ପରିବାରରେ ଛୋଟବଡଙ୍କୁ ମିଶାଇ ମୋଟ ବାଇଶୀ ଜଣ ସଦସ୍ୟ। ନୀରୁ ବି ସମସ୍ତଙ୍କୁ ସ୍ନେହ ଶ୍ରଦ୍ଧାରେ ବାନ୍ଧି ରଖିବା

ସହ କେବେ ତା' ଦାୟିତ୍ୱରେ ଅବହେଳା କରୁନଥିଲା। ଏହାର କିଛି ଦିନ ପରେ ଜଣେ ସାନିଟାରୀ ଇନ୍ସପେକ୍ଟରଙ୍କ ସହ ବିବାହ ପ୍ରସ୍ତାବ ଆସିଲା ସରସ୍ୱତୀ ପାଇଁ। ବିବାହ ପ୍ରସ୍ତାବ ନେଇ କଥାବାର୍ତ୍ତା ଚାଲିଛି ଠିକ୍ ସେତିକି ବେଳକୁ ପେଟରେ ଯନ୍ତ୍ରଣା ଅନୁଭବ କଲା ସରସ୍ୱତୀ। ସଙ୍ଗେ ସଙ୍ଗେ ପରିବାର ଲୋକ ତାକୁ ନେଇ ଡାକ୍ତରଖାନାରେ ଭର୍ତ୍ତୀ କଲେ। ଡାକ୍ତର କହିଲେ ୟୁଟ୍ରେସ ନକାଢ଼ିଲେ ଏ ରୋଗରୁ ନିସ୍ତାର ନାହିଁ। ଅପରେଶନ୍ କରି ୟୁଟ୍ରେସ୍ କାଢ଼ିବାକୁ ପଡିଲା। ଡାକ୍ତର କହିଦେଲେ ସରସ୍ୱତୀ କେବେ ବି ଆଉ ମାଆ ହୋଇ ପାରିବନାହିଁ। ନିଜ ଶରୀରର ଏତେ ବଡ ବ୍ୟତିକ୍ରମ ଥିବାରୁ ବିବାହ କଥାରୁ ଓହରିଗଲା ସରସ୍ୱତୀ। କିଛି ଦିନ ପରେ ଷ୍ଟାଫ୍ନର୍ସର ଟ୍ରେନିଂ ନେଇ ସେ କ୍ଲିନିକାଲ ଇନ୍ସପେକ୍ଟର ଚାକିରୀରେ ଯୋଗ ଦେଲା । ଚାକିରୀରୁ ଯାହା ଦରମା ପାଉଥିଲା ଖୁସୀରେ ଚଳିଯାଉଥିଲା । ତାର ପିଲାପିଲି ହେବ ନାହିଁ ଏକଥା ଜାଣି ମଧ୍ୟ ବହୁ ପରିବାର ତାକୁ ବୋହୂ କରିବାର ଆଗ୍ରହ ଦେଖାଇଥିଲେ । କିନ୍ତୁ ସରସ୍ୱତୀ ବିବାହ କରିବାକୁ ଆଦୌ ଚାହୁଁନଥିଲା। ଖାଲି ବିବାହ କରିଦେଲେ ତ ହେବ ନାହିଁ ସେ ଯେତେବେଳେ ଜାଣିସାରିଛି ତା'ଦ୍ୱାରା ଆଉ ବଂଶ ରକ୍ଷା ସମ୍ଭବ ନୁହେଁ ସେ ବିବାହ କରି ଲାଭ ବା କ'ଣ ? ତେଣୁ ସେ ବାରମ୍ବାର ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଚାଲେ। ଏହି ସମୟରେ ବିକାଶ ବୋଲି ଜଣେ ଯୁବକର ବିବାହ ପ୍ରସ୍ତାବ ଖାଲି ଆସିଲାନାହିଁ ତ ସେମାନେ ଗୋଟିଏ ରକମର ବାଧ୍ୟ କଲେ ସରସ୍ୱତୀକୁ ବୋହୂ କରିବା ପାଇଁ। ଏପରି ବାଧ୍ୟବାଧକତା ସରସ୍ୱତୀକୁ କଷ୍ଟ ଦେଲା ।

କିନ୍ତୁ ବିକାଶର ପରିବାର ସରସ୍ୱତୀକୁ ବୋହୂ କରିବାକୁ ଦୀର୍ଘ ପାଞ୍ଚବର୍ଷ କାଳ ଅପେକ୍ଷା କଲେ କାଳେ ସରସ୍ୱତୀ କେତେବେଳେ ମଙ୍ଗିଯିବ । କିନ୍ତୁ ସରସ୍ୱତୀ ଜାଣିପାରିଲା ତାକୁ ବିବାହ କରିବା ପାଇଁ ବିକାଶ ଯେତିକି ଆଗ୍ରହ ନାହିଁ ତା'ର ସରକାରୀ ଚାକିରୀ ଥିଲା ବିକାଶର ମୁଖ୍ୟ ଆକର୍ଷଣ। ସେତେବେଳକୁ ସରସ୍ୱତୀ ଢେଙ୍କାନାଳରେ ଚାକିରୀ କରୁଥିଲା । ତା'ଜୀବନ ସେଠାରେ ଖୁବ୍ ଶାନ୍ତିରେ ଚାଲିଥିଲା । କିନ୍ତୁ ଠିକ୍ ସେତିକିବେଳକୁ ବିବାହର ଚାପ ଏପରି ବଢ଼ି ବଢ଼ି ଚାଲିଲା ଯେ ସେ ସେଠାରୁ ବଦଳି ହୋଇ ସୁନ୍ଦରଗଡ ଚାଲିଗଲା । ଢେଙ୍କାନାଳ ଭଳି ସ୍ଥାନରେ ସରସ୍ୱତୀ ଅଧିକ ଦିନ ରହିବାକୁ ଚାହିଁ ମଧ୍ୟ ରହିପାରିନଥିଲା । ଏତେବେଳକୁ ସରସ୍ୱତୀର ବଡ ଭାଉଜଙ୍କର ମୃତ୍ୟୁ ଘଟେ। ତାଙ୍କର ତିନି ଛୋଟ ଛୋଟ ପିଲା । ଦୁଇ ପୁତୁରା ଏବଂ ଗୋଟିଏ ଝିଆରୀ। ଝିଆରିକୁ ସରସ୍ୱତୀ ନିଜ ପାଖକୁ ନେଇଆସିଲା, ତା' ପଛକୁ ଦୁଇ ପୁତୁରା ମଧ୍ୟ ପିଉସୀ ପାଖକୁ ଆସିବାକୁ ଇଚ୍ଛା କଲେ । ସରସ୍ୱତୀ ମଧ୍ୟ ଖୁବ୍ ଆଦରରେ ପିଲାମାନଙ୍କୁ ଗଢିଲା । ବଡ ଭାଇରର ମଧ୍ୟ ଆଉ ଗୋଟିଏ ଜାଗାରେ ବିବାହ ସମ୍ପନ୍ନ ହୋଇଗଲା।

ସରସ୍ୱତୀ ପିଲାମାନଙ୍କୁ ମଝିରେ ମଝିରେ ସେମାନଙ୍କର ନୂଆ ମାଆ ପାଖରେ ଛାଡି ଆସେ । ଆଉ ତାଗିଦ୍ କରି କୁହେ ସେ ତୁମକୁ ଜନ୍ମ ନଦେଇଥିଲେ ମଧ୍ୟ ତାର ଆଦର ଆଉ ସମ୍ମାନରେ କେବେ ଆଞ୍ଚ ଆଣିବନାହିଁ। ବାପା ସହିତ ମାଆର ସ୍ନେହ ପିଲାମାନଙ୍କ ପାଇଁ ଯେ ନିତାନ୍ତ ଆବଶ୍ୟକ ତାହା ସରସ୍ୱତୀ ଭଲ ଭାବରେ ବୁଝିଥିଲା । ତେଣୁ ସେ ଚାହୁଁଥିଲା ମାଆ ଏବଂ ପିଲାମାନଙ୍କ ଭିତରେ କୌଣସି ଅଯଥା ଭୁଲ୍ ବୁଝାମଣା ନଘଟି ଅଶାନ୍ତିର ଉତ୍ପନ୍ନ ନହେଉ ।

ସୁନ୍ଦରଗଡରେ କିଛି ଦିନ କାମ କଲା ପରେ ସରସ୍ୱତୀର ଯାଜପୁରକୁ ବଦଳି ହୋଇଗଲା । ଯାଜପୁର ସହର ପ୍ରତି ସରସ୍ୱତୀ ମନରେ କେମିତି ଗୋଟିଏ ଅଜଣା ଭୟ ଥିଲା । ଚାକିରୀ କରିଛି ଯେତେବେଳେ ସବୁକୁ ପଛ କରି ସେଠାକୁ ତ ଯିବାକୁ ପଡିବ ତାକୁ । ଆଉ କିଛି ଚିନ୍ତା ନକରି ସେ ଯାଜପୁର ବାହାରିଗଲା ।

ଯାଜପୁରରେ ସରସ୍ୱତୀର ଘର ସାମ୍ନାରେ ପ୍ରାୟ ନଅ କି ଦଶ ବର୍ଷର ପିଲାଟିଏ ନିୟମିତ ଭାବରେ ଆସି ନଡିଆ ଲଡୁ ବିକୁଥିଲା । ତାକୁ ଦିନେ ସରସ୍ୱତୀ ପଚାରିଲା, 'କିରେ ଏ ପାଠପଢ଼ା ବୟସରେ ପାଠସାଠ ନ ପଢି ଏମିତି ନଡିଆ ଲଡୁ ବିକିଲେ କି ଲାଭ ପାଇବୁ ?' ସରସ୍ୱତୀର କଥା ଶୁଣି ପିଲାଟି କହିଲା, 'ମୋ ବାପା ପାଖରେ ପଇସା ନାହିଁ ମୋତେ ପାଠ ପଢାଇବାକୁ । ତାରିଣୀଙ୍କ ପାଖକୁ ଆସୁଥିବା ନଡିଆରୁ ତେଲ କାଢିବା ପରେ ସେହି ନଡିଆର ଖଦଡ଼ାକୁ ଲଡୁ କରି ମୁଁ ବିକିଲେ ଦିନକୁ ତିରିଶ ଟଙ୍କା ପାଉଛି ।' ପିଲାଟିର କଥା ଶୁଣି ସରସ୍ୱତୀ ମନରେ ଦୟା ଜାତ ହେଲା । ତା'ପରେ ସରସ୍ୱତୀ ପିଲାଟିକୁ ସାହାଯ୍ୟ ହେବାକୁ ଯାଇ ନିୟମିତ ତା'ଠାରୁ ସବୁତକ ଲଡୁ କିଣି ପିଲାଙ୍କୁ ବାଣ୍ଟିଦେଉଥିଲା । ଦିନେ ସରସ୍ୱତୀ ଆଉ ଲଡୁ କିଣିଲା ନାହିଁ । ପିଲାଟି ସରସ୍ୱତୀକୁ ପ୍ରଶ୍ନ କଲା, 'ମାଆ ଆଜି କ'ଣ ଲଡୁ କିଣିବନି ?' ସରସ୍ୱତୀ ମନା କରି କହିଲା, 'କିଏ ଖାଇବ ଯେ କିଣିବି ?'

'କାଇଁ ଆଜିଯାଏଁ କ'ଣ ତମେ ଖାଉନଥିଲ ?'

'ନା ତୋତେ ସାହାଯ୍ୟ କରିବାକୁ ଯାଇ ତୋଠାରୁ କିଣି ପିଲାମାନଙ୍କୁ ବାଣ୍ଟି ଦେଉଥିଲି । ଆଜି ପିଲାମାନେ ନାହାନ୍ତି । ଏମିତି ବି ଏଇଟା ତାରିଣୀଙ୍କ ଭୋଗ ଲଗା ନଡିଆ। ଏହାକୁ କିଣି ତାକୁ ଫିଙ୍ଗିଲେ ମାଆଙ୍କର ଅପମାନ ହେବ । ପିଲାମାନେ ଆସନ୍ତୁ କିଣିବି । ତୁ ଏଇ କେଇଟା ଦିନ ଅନ୍ୟ ଆଡେ ଯାଇ ବିକି ଦେ ।'

'ନା ତମେ ହିଁ କିଣିବ । ନିଅ ଏଇ ନିଅ ।'

'ଆରେ କହିଲିପରା ଖାଇବା ପିଲା କେହିନାହାନ୍ତି ।' ପିଲାଟା କିନ୍ତୁ ଏକା ଯିଦ୍ କଲା । ତା' ଯିଦ୍ ଦେଖି ସରସ୍ୱତୀ ତା'ଠାରୁ ଲଡୁ ନ ରଖି ସେତକ ପଇସା ଦେଇଦିଏ ।

ପିଲାଟି ସରସ୍ୱତୀର ଦାଣ୍ଡପିଣ୍ଡାରେ ଲଡ଼ୁ ଟାଙ୍ଗୁଡି ରଖି ଦେଇ ଦଉଡି ପଳାଇଲା । ସରସ୍ୱତୀ କେତେ ଡାକିଲେ ବି ଆଉ ଶୁଣିଲା ନାହିଁ । ତା' ପରଦିନ ପୁଣି ଠିକ୍ ସେମିତି ବାଧ କଲା। ସେ ଦିନ କିନ୍ତୁ ସରସ୍ୱତୀ ସ୍ଥିର କଲା ପିଲାଟି ପଇସା ନେଇ କୁଆଡେ ଯାଉଛି ତା'ଜାଣିବା ପାଇ ସେ ତାର ପିଛା କରିବ। ପଇସା ନେବା ପରେ ପିଲାଟି ସାଙ୍ଗେ ସାଙ୍ଗେ ଦଉଡି ପଳାଇଲା କିଛି ଦୂରରେ ଥିବା ବରଗଛ ମୂଳକୁ। ସେଠି ପଞ୍ଚାଏ ଟୋକା ଥିଲେ । ସରସ୍ୱତୀ ଆସି ସେଠାରେ ପହଞ୍ଚିଲା ବେଳକୁ ଦେଖିଲା ସାତ ଆଠ ପିଲାମିଶି ଗଛ ମୂଳରେ ଜୁଆ ଖେଳୁଛନ୍ତି । ସରସ୍ୱତୀ ଲଡ଼ୁ ବିକାଳି ପିଲାକୁ ତାଗିଦ୍ କରି କହିଲା, 'କିରେ ତୁ ତ କହୁଥିଲୁ ତୋର ପାଠ ପଢିବାକୁ ପଇସା ନାହିଁ ଘରକୁ ତିରିଶି ଟଙ୍କା ନେଲେ ତୋ ଘର ଚଳିବ, ଆଉ ଏସବୁ କ'ଣ ?'

'ହଁ ସେକଥା ସତ ଯେ ତିରିଶିଟା ଟଙ୍କାରେ ମୋର କ'ଣ ହେବ। ଏଇ ତିରିଶ ଟଙ୍କାକୁ ମୁଁ ତିନିଶହ ଟଙ୍କା କରିଦେବି, ତେବେ ସିନା ଘର ଚଳିବ ।'

ସରସ୍ୱତୀ ମୂର୍ତ୍ତିଟିଏ ପରି ସେଠି ପିଲାଟାର କଥା ଶୁଣୁଥିଲା; ପିଲାଟି ଲୋଭରେ ଯେ ନଷ୍ଟ ହୋଇଯାଉଛି ତାହା ଜାଣି ସୁଦ୍ଧା ତାକୁ କିପରି ଠିକ୍ ରାସ୍ତାକୁ ଆଣିବ ତାହା ସେ ବୁଝିପାରୁନଥିଲା । ଯାଜପୁର ଆସିବା ଆଗରୁ ତା'ମନରେ ଯେଉଁ ଭୟ ଆଉ ଶଙ୍କା ଥିଲା ତାହା ସତ୍ୟରେ ପରିଣତ ହେବାକୁ ଲାଗିଲା । ଏହାର କିଛି ଦିନ ପରେ ଯାଜପୁରରୁ ବଦଳି ହୋଇଗଲା । ନିଜ ଚାକିରୀ ଜୀବନକୁ ନେଇ ସେ ବିଭିନ୍ନ ସହର ବୁଲି ଚାଲିଥାଏ ଏବଂ ବହୁପ୍ରକାର ଲୋକଙ୍କୁ ବି ଏମିତି ଭେଟିଚାଲୁଥିଲା । ଚାକିରୀର ଶେଷ ବେଳକୁ ତାକୁ କଳାହାଣ୍ଡିକୁ ବଦଳି ହେଲା। କଳାହାଣ୍ଡିରେ ସେ ଯୋଗ ଦେଲା ବେଳକୁ ତା'ର ପଦୋନ୍ନତି ହୋଇସାରିଥାଏ।

ସରକାରୀ କର୍ମଜୀବି ମହିଳା ହଷ୍ଟେଲରେ ରହିବା ସହ ହଷ୍ଟେଲରେ ରହୁଥିବା ଅନ୍ୟ ପଚାଶ ଜଣ କର୍ମଜୀବି ଝିଅଙ୍କର ଦାୟିତ୍ୱ ସରସ୍ୱତୀ ଉପରେ ନ୍ୟସ୍ତ କରାଗଲା । ସେତେବେଳକୁ ଚାକିରୀ ନିଯୁକ୍ତିର ଧାରା ବଦଳି ସାରିଲାଣି । ସ୍କ୍ରୁଟିନି ସିଷ୍ଟମ୍ କାଉନ୍‌ସେଲିଙ୍ଗ୍‌ରେ ରୂପାନ୍ତରିତ ହୋଇସାରିଥିଲା । କାଉନ୍‌ସେଲିଙ୍ଗ ହେବା ଫଳରେ କର୍ମସଂସ୍ଥାନକୁ ଅଧିକ ଶିକ୍ଷିତ ଝିଅ ଆସିଲେ । ଏକପ୍ରକାର ସେମାନେ କାହା କଥା ଶୁଣିବାକୁ ଯେମିତି ପ୍ରସ୍ତୁତ ହିଁ ନଥାନ୍ତି । ଏଣୁ ଏମାନଙ୍କୁ ଟିକେ ଜଗିରଖି କଥା କହିବାକୁ ପଡୁଥିଲା ସରସ୍ୱତୀକୁ । ସରସ୍ୱତୀର ଚାକିରୀ ସରିବାକୁ ଆଉ ମାତ୍ର ଗୋଟିଏ ବର୍ଷ ବାକି ଥାଏ। ସେହି ସମୟରେ ସରକାରଙ୍କ ତରଫରୁ ତା'ପାଖକୁ ଏକ ଗୁପ୍ତ ଚିଠି ଆସିଲା। ଚିଠି ଖୋଲି ଜାଣିଲା ଗୋଟିଏ ଝିଅ ଫଲ୍‌ସ ସାର୍ଟିଫିକେଟ୍ ଦେଇ ଚାକିରୀ କରିଛି। ସେଥିରେ ନିର୍ଦ୍ଦେଶ ଥିଲା ଯେତେ ଶୀଘ୍ର ପୋଲିସ୍‌କୁ ଏଇ ସତ୍ୟତା ଜଣାଇବା ପାଇଁ । ସରସ୍ୱତୀ କିନ୍ତୁ

ସେପରି କରିନଥିଲା । ସେ ସେହି ଝିଅଟିକୁ ପାଖକୁ ଡାକି ସେ କେଉଁ ପରିସ୍ଥିତିରେ ଏଭଳି ପଦକ୍ଷେପ ନେଲା ଜାଣିବାକୁ ଚାହିଁଲା। ଏବଂ ତାକୁ ଉପଦେଶ ଦେଲା ଯେତେ ଶୀଘ୍ର ସମ୍ଭବ ସେ ଚାକିରୀରୁ ଇସ୍ତଫା ଦେଇ ଚାଲିଯିବା ଉଚିତ୍ ହେବ। ସେ ଝିଅଟି ମଧ୍ଯ ସେୟା କଲା । ପୋଲିସ୍‌ର ଅନୁସନ୍ଧାନ ବେଳକୁ ସେ ଝିଅଟି ତା ଗାଁକୁ ଯାଇ ସାରିଥିଲା । ଦୁର୍ଭାଗ୍ୟ ଯେତେବେଳେ ଆସେ ସାଙ୍ଗସାଥି ନେଇ ଆସିଲା ଭଳି ଗାଁକୁ ଗଲା ପରେ ସେ ଝିଅଟି ବ୍ରେନ୍ ମ୍ୟାଲେରିଆରେ ପିଡୀତ ହେଲା ।

ଏହାର କିଛି ଦିନ ପରେ ସରସ୍ୱତୀ ତା'ର ଅଫିସ୍‌ର ଅନ୍ୟ ସହଯୋଗୀମାନଙ୍କ ସହିତ ଚିଲିକା ବୁଲିବା ପାଇଁ ଯାଇଥିଲା ଡଙ୍ଗାରେ ବସି କାଳିଯାଇ ଯିବା ରାସ୍ତାରେ ହଠାତ୍ ଡଙ୍ଗାରୁ ଭାରସାମ୍ୟ ହରାଇ ପାଣିକୁ ଖସିଗଲା ସରସ୍ୱତୀ । ଭଗବାନଙ୍କ ଆଶୀର୍ବାଦରୁ ଅଫିସ୍‌ର ଦୁଇଜଣ କର୍ମଚାରୀ ପହଁରା ଜାଣିଥିଲେ। ପାଣିକୁ ଡେଇଁପଡି ସରସ୍ୱତୀକୁ ଉଦ୍ଧାର କଲେ । ସରସ୍ୱତୀ ପାଣି ଭିତରୁ ଉଦ୍ଧାର ପାଇ ଗୋଟିଏ ନୂଆ ଜୀବନ ପାଇବାର ଅନୁଭବ କଲା । ହଷ୍ଟେଲରୁ ଫେରିବା ପରେ ସରସ୍ୱତୀ ଖବର ପାଇଲା ଫଲ୍‌ସ୍ ସାର୍ଟିଫିକେଟ ଦେଇ ଚାକିରୀ କରିଥିବା ସେଇ ଝିଅଟିର ବ୍ରେନ୍ ମ୍ୟାଲେରିଆରେ ମୃତ୍ୟୁ ଘଟିଛି।

ସରସ୍ୱତୀ ହୃଦୟଙ୍ଗମ କରିପାରୁଥିଲା ପ୍ରକୃତରେ କିଏ କାହାକୁ ଠକି କେବେ ମୁକୁଳି ଯାଏନା। ପ୍ରତିଟି ମିଥ୍ୟା ପାଇଁ ରହିଛି ଦଣ୍ଡ ଯାହା କେତେବେଳେ କେଉଁ ରୂପରେ ମଣିଷ ସାମ୍ନାକୁ ଆପେ ଆପେ ଆସିଯାଏ । ତାକୁ ଚହ୍ନିବା ବୁଝିବାର ସାମର୍ଥ୍ୟ ଥିଲେ ମୁକ୍ତି ନଚେତ ଅବକ୍ଷୟ ନିଶ୍ଚିତ।



*(ଲେଖାଲେଖି)*

# ମୋହ

ହାଟ । ଯୁଆଡେ ଚାହିଁଲେ ମଣିଷ ସାଙ୍ଗକୁ ବେପାରୀ ଆଉ ଗାରଖଙ୍କ ଭୀଡ । ସୁଦେଷ୍ଣା ତା'ର ନଅ ବର୍ଷର ଶିଶୁପୁତ୍ର ସିପୁନ୍‌କୁ ସାଙ୍ଗରେ ଘେନି ଆସିଛି ପନିପରିବା କିଣିବାକୁ । ହାଟ ମଝିରେ ପିଲାଟି ମନରେ କି ଭାବନା ଆସିଲା କେଜାଣି ସେ ପଚାରି ବସିଲା, 'ମାଆ ମୋତେ ଛାଡିଦେବ ?' ନଅ ବର୍ଷର ସିପୁନ୍ ମୁହଁରୁ ଏଭଳି ପ୍ରଶ୍ନ ଶୁଣି ସୁଦେଷ୍ଣା ରାଗିଯାଇ, 'ଚୁପ୍ କର ।' କହି ଠୋ କରି ତା' ପିଠିରେ ବସାଇଦେଲା ଗୋଟିଏ ବିଧା । ସିପୁନ୍ କିଛି ବୁଝିପାରିଲା ନାହିଁ ମାଆ କାହିଁକି ତାକୁ ବାଡେଇଲା । ଏମିତି ତ କିଛି ଭୁଲ ପ୍ରଶ୍ନ କରିନି ବୋଲି ସିପୁନ୍ ମନେ ମନେ ଭାବିଲା ।

ଆଗରୁ ଅନେକ ଥର ସିପୁନ ଏପରି ତା'ମାଆଠାରୁ ବିନା କାରଣରେ ମାଡ ଖାଇଛି । ପାଖରେ ଠିଆହୋଇଥିଲା ମମତା । ପିଲାଟିକୁ ଏମିତି ଯୋର କରି ବାଡେଇବା ମମତା ସହିପାରିଲାନାହିଁ । ସଙ୍ଗେ ସଙ୍ଗେ କହିପକାଇଲା, 'ପିଲାଟାକୁ ଏମିତି ବାଡେଇବା କ'ଣ ଦରକାର ତାକୁ କ'ଣ ବୁଝେଇ ଦେଇଥିଲେ ହୋଇ ନଥାଆନ୍ତା ?'

ସୁଦେଷ୍ଣା ରାଗିଯାଇ କହେ, 'ବେଶୀ ତ ସୁଆଗ ଦେଖଉଛ ଏ ପିଲାକୁ ଦିନେ ଯଦି ସମ୍ଭାଳିଦେବ ମୁଁ ଜାଣିବି ତମେ ଠିକ୍ କଥା କହୁଛ ।'

ମମତା ପିଲାଟିକୁ ଆଦରି ନେଲା କହିଲା, 'କ'ଣ ମୋତେ ଏ ପିଲାଟିକୁ ଦେଇଦେବେ ? ମୋର ପିଲାପିଲି ନାହାନ୍ତି ମୁଁ କେତେ ଆଶା ରଖିଥିଲି ମୋର ପିଲାଟିଏ ହେବ । ମୁଁ କଥା ଦେଉଛି ଖୁବ୍ ଆଦର ଯତ୍ନ କରି ପିଲାଟିକୁ ପାଳିବି । ବିବାହର ବର୍ଷେ ଭିତରେ ସ୍ୱାମୀ ମୋତେ ଛାଡି ଆର ପାରିକି ଚାଲିଗଲେ । ତାଙ୍କ ଚିହ୍ନବର୍ଣ୍ଣଟିଏ ମୋ ପାଖରେ ଥିଲେ ମୋ ବାକି ଜୀବନ ତାକୁ ଦେଖି ଜୀବନ କଟାଇ ଦେଇଥାନ୍ତି ।'

ସୁଦେଷ୍ଣା ସତେ ଯେମିତି ଏମିତି ଏକ ସୁଯୋଗ ଖୋଜୁଥିଲା। 'ମୋର ବି ସ୍ୱାମୀ ନାହାନ୍ତି ଗତ ତିନି ବର୍ଷ ହେଲା। ସେ ଚାଲିଗଲେ ତେବେ ଏ ପିଲାଟିକୁ ମୋ ଦାୟିତ୍ୱରେ ଛାଡିଗଲେନି ତ ମୋତେ ଖାଲି ହନ୍ତସନ୍ତ କଲେ । ପ୍ରେମ ବିବାହ କରିଥିଲି ବୋଲି ଘରଲୋକ ବି ଏ ଅବେଳରେ ସାଥ ଦେଉନାହାନ୍ତି। ଅଳ୍ପ ପାଠକୁ ରୋଜଗାର ବୋଲି କିଛିନାହିଁ । ନିଜ ପେଟ କଥା ତ ଦୂରେ ଥାଉ ପିଲାଟାକୁ ଓଳିଏ ଖାଇବା ଥିଲେ ଓଳିଏ ନାହିଁ। ବାପର ଆଶ୍ରା କି ସମ୍ପତ୍ତି କିଛି ଥିଲେ ହୁଏତ ପିଲାଟାକୁ ପାଳିପୋଷି ବଡ କରିବା ମୋ ପାଇଁ ସହଜ ହୁଅନ୍ତା । ତା'ଉପରେ ପୁଣି ଗରିବ ଏକୁଟିଆ ସ୍ତ୍ରୀଲୋକ ଦେଖି ଲୋକଙ୍କର କେତେ କ'ଣ ଦୃଷ୍ଟି। ପୁଅ ପିଲାଟା ଜନମ କରିଛି ବୋଲି ଆଉ କିଏ ମୋ ହାତ ଧରିବାକୁ ରାଜି ହେଉନାହାନ୍ତି । ନା ପିଲାକୁ ପୋଷିପାରୁଛି ନା ନିଜ କଥା ଦେଖିପାରୁଛି ? ସମୟ ମୋତେ ଟାଣ କରିଦେଲାଣି । କଉଁଥିରେ ଆଉ ରୁଚି ଲାଗୁନି। ତମ ପାଖରେ ଯଦି ପିଲାଟି ମଣିଷ ହୋଇଯିବ ଆଉ ବା ମୋର କ'ଣ ଦୁଃଖ ।'

ପିଲାଟା ଏସବୁ ଶୁଣୁଥିଲା । ନଅ ବର୍ଷର ପିଲା ହେଲେବି ସେ ମାଆକୁ ଅନେକ ବେଳରେ ଏମିତି କଥା କହିବା ଏବଂ ଚିଡିବା ଦେଖିଛି । ମାଆ ବି କୌଣସି ଚାକିରୀ କରିପାରୁନାହିଁ ଅଳ୍ପ ଶିକ୍ଷା ହେତୁ। ତାକୁ ପାଳିବା ଖୁବ୍ କଷ୍ଟ ହେଉଛି ତା'ମାଆ ସକାଶେ । ହଠାତ୍ ମମତା କହିଉଠିଲା, 'ଦେଖ ମୋର ଆଉ ବିବାହ କରି ଘର ସଂସାର କରିବା ମୋହ ନାହିଁ । ଯଦି ମୋତେ ଏ ପିଲାଟିକୁ ଦେଇ ଦେବ ତେବେ ମୁଁ ତୁମ ପାଖରେ ସାରା ଜୀବନ କୃତଜ୍ଞ ରହିବି। ଆଉ ଏମିତି ତ ତୁମେ ଠିକ୍ କରି ସାରିଛ ତୁମେ ଅନ୍ୟତ୍ର ବିବାହ କରିନେବ ବୋଲି। ସେ ନୂଆ ବିବାହରୁ ତୁମେ ମଧ୍ୟ ଆଉ ଥରେ ମାଆ ହୋଇ ପାରିବ। ସୁଦେଷ୍ଣା ମମତାକୁ ତାଗିଦ୍ କରି କହିଲା, 'ପୁଅଟା ଭାରି ଦୁଷ୍ଟ। ତାର ହାବ ଭାବରେ ତୁମେ ଚିଡି ଯିବ।'

'ହଉ ମୋ' ପିଲାଟା ତ ଦୁଷ୍ଟ ହେଲେ ହେଲା ।'

ପିଲାଟା ମମତାର କଥା ଶୁଣି ଖୁସୀ ହୋଇଗଲା। ଯା ହେଉ ତାକୁ ମମତା ପରି ମମତାମୟୀ ମାଆଟିଏ ଏବେ ମିଳିଯିବ ।

ହାଟର ଗୋଟିଏ ପଟକୁ ସୁଦେଷ୍ଣା ଏବଂ ଆରପଟକୁ ମମତା ଓ ସିପୁନ୍ ବାହାରିଗଲେ।

ସୁଦେଷ୍ଣା ଖୁବ୍ ଖୁସୀ ଥିଲା । ସେ ବନ୍ଧନରୁ ମୁକ୍ତ ହୋଇଗଲା ଏବେ ତା' ପାଇଁ ପୁନଃ ବିବାହର ଆଉ ପ୍ରତିବନ୍ଧକ କରିବାକୁ କେହିନାହାନ୍ତି । କି ଏ ସମାଜର ପୁରୁଷମାନଙ୍କର କୁଦୃଷ୍ଟି ଆଉ ତାକୁ ଖିନ୍‌ଭିନ୍ କରିବ ନାହିଁ ।

ମମତା ମଧ୍ୟ ସିପୁନ୍‌କୁ ପାଇ ବହୁତ ଖୁସୀ ଥିଲା । ତାକୁ ଏଥର ମାଆ ବୋଲି ଡାକିବାକୁ କେହି ଜଣେ ଆସିଯାଇଛି । ତା' ଜୀବନର ଗୋଟିଏ ବଡ ଅଭାବକୁ ସିପୁନ୍

ପୁରଣ କରିଛି ।  ସିପୁନ୍‌କୁ ଘରକୁ ନେଇଯାଇ ମମତା ତା'ର ପସନ୍ଦ ନାପସନ୍ଦ ଖାଇବା ପିନ୍ଧିବା ବୁଝିନେଲା । ସିପୁନ୍‌ର ମନ ଜାଣି ସବୁ କିଛି ତା'ପାଇଁ ଯୋଗାଇ ଦେଲା । ସିପୁନ୍ ମଧ୍ୟ ଖୁସୀ ଥିଲା । ତା'ର ଜାଣିବା ବୁଝିବା ହେଲା ଦିନରୁ କେବେ ମାଆର ସ୍ନେହକୁ ଅନୁଭବ କରିପାରିନଥିଲା । ସୁଦେଷ୍ଣା ତାକୁ ଜନ୍ମ ଦେଇଥିଲା ସତ ସେ କିନ୍ତୁ ମାଆର ସ୍ନେହ ପାଉଥିଲା ମମତା ପାଖରୁ ।

ସିପୁନ୍‌କୁ ପାଇବାର ତିନି ବର୍ଷ ପରେ ମମତା ଜୀବନରେ ସନ୍ଦିପ୍ ଆସିଛି । ମମତା ସହ କିଛି ଦିନ ପରିଚୟ ପରେ ସେମାନଙ୍କ ଭିତରେ ସଂପର୍କର ନିବିଡତା ବଢିବାକୁ ଲାଗିଲା । ସନ୍ଦିପ୍ ଅବିବାହିତ ଏବଂ ପେଶାରେ ଆଇଟି ଇଞ୍ଜିନୟର । ମମତା ଜନ୍ମ ନକରିଥିଲେ ବି ଗୋଟିଏ ସନ୍ତାନର ଜନନୀ । ମାଆ ଓ ଛୁଆ ଚଳିବା ପାଇଁ ଯେତିକି ଆବଶ୍ୟକ ମମତାର ସ୍ୱାମୀ ସେତିକି ଛାଡିଯାଇଛନ୍ତି । ଦେଖିବାକୁ ଗଲେ କୌଣସି ପ୍ରକାର ଆର୍ଥୀକ ଚିନ୍ତା ମମତା ପାଖରେ ନଥିଲା । ତେବେ ସନ୍ଦିପ୍‌କୁ ଭେଟିବା ପରଠାରୁ ତା' ଦେହରେ ଭିନ୍ନ ସ୍ଫୁରଣ । ନିଜ ଦେହରେ କାହାରି ବିନା ଉପସ୍ଥିତିରେ କୌତୁହଳର ଆନନ୍ଦକୁ ସେ ବେଶ୍ ଆଜିକାଲି ବାରିପାରୁଛି । ଏହି ଆକର୍ଷଣ ତା' ଭିତରେ ରୋପି ଦେଇଛି ସନ୍ଦିପ୍ ।

ସ୍ୱାମୀର ଚାଲିଯିବା ପରେ ତା'ଭିତରେ ଗୋଟିଏ ଅଭାବକୁ ପୁରଣ କରିଥିଲା ସିପୁନ୍ ଆଉ ଏବେ ତାକୁ ପୂର୍ଣ୍ଣ କରିବାକୁ ଆସିଛି ସନ୍ଦିପ୍ । ମମତା ଆଜିକାଲି ବେଶ ନିଜକୁ ପୂରିଲା ପୂରିଲା ଅନୁଭବ କରୁଛି ।

ସନ୍ଦିପ ଏଥର ମମତାକୁ ସବୁଦିନ ପାଇଁ ପାଖକୁ ନେବାର ବ୍ୟବସ୍ଥା କରିବା ଯୋଜନା କରେ, 'ମମତା, ତୁମକୁ ମୁଁ ସବୁ ଦିନ ପାଖରେ ପାଇବାକୁ ଚାହେଁ ।'

'କେମିତି ?'

'ମୁଁ ତୁମକୁ ବିବାହ କରିବାକୁ ଚାହେଁ, ତୁମେ କ'ଣ ରାଜି ?'

'ମୋର ଅରାଜି ହେବାର କିଛି କାରଣ ନାହିଁ, ହେଲେ ତୁମ ପରିବାର ଲୋକେ ମାନିଲେ ହେଲା । ମୁଁ ଜଣେ ବିଧବା । ସମସ୍ତେ ଚାହାନ୍ତି ଜଣେ ଅବିବାହିତ ଗୋଟିଏ କୁମାରୀ ଝିଅକୁ ବିବାହ କରିବାକୁ ।'

'ସେ କଥା ତୁମେ ମୋ ଉପରେ ଛାଡି ଦିଅ ।'

ସନ୍ଦିପ୍ ଏଥର ତା' ଘର ଲୋକଙ୍କୁ ସବୁ କଥା କହିଲା । ସନ୍ଦିପ୍ ପରିବାର ପୁଅର ଖୁସୀରେ ଖୁସୀ କିନ୍ତୁ ସେମାନେ ରଖିଲେ ଗୋଟିଏ ସର୍ତ୍ତ । ସେମାନେ ମମତାକୁ ବୋହୂ କରିବାକୁ ରାଜି ହୋଇଗଲେ କିନ୍ତୁ ସିପୁନ୍‌କୁ ଗ୍ରହଣ କରିପାରିବେନାହିଁ ବୋଲି ସିଧାସଳଖ କହିଦେଲେ । ବୋହୂ ସହିତ ପୁଅ ଘରକୁ ଆସିଲେ ସାହି ପଡିଶା ସଂପର୍କୀୟ କ'ଣ କହିବେ ?

ସନ୍ଦିପ୍ ମମତା ସାମ୍ନାରେ ତା'ପରିବାରର ମତାମତକୁ ରଖିଲା । ମମତାକୁ

ଅନୁରୋଧ କଲା ସିପୁନ୍‌କୁ ଗୋଟିଏ ଭଲ ବୋର୍ଡିଂରେ ଛାଡିଦେବାକୁ ଏବଂ ନିୟମିତ ସେମାନେ ଯାଇ ତା'ର ଦେଖାରେଖା କରିବାର କଥାଦେଲା।

ମମତା କିଛି ଚିନ୍ତା କରିପାରୁ ନଥାଏ । ତେବେ ସିପୁନ୍‌କୁ ଛାଡିବା କଥାରେ ରାଜି ହେବା ବି ତା' ପାଇଁ ସହଜ ନଥିଲା । ସେ ସିପୁନ୍‌କୁ ଜନ୍ମ କରିନି ସତ କିନ୍ତୁ ପିଲାଟାକୁ ତା'ମାଆ ପାଖରୁ ସେ ପ୍ରତିଶ୍ରୁତି ଦେଇ ଆଣିଥିଲା ଭଲରେ ରଖିବ ବୋଲି । ମମତା ସନ୍ଦିପ୍ ପରିବାରର କଥାରେ ରାଜି ନହେବା ପର୍ଯ୍ୟନ୍ତ ସନ୍ଦିପ୍ ମଧ୍ୟ ମମତା ସହ ଆଉ ଦେଖା କଲା ନାହିଁ । ଶେଷଥର ମମତା ସହ ସାକ୍ଷାତରେ କହିଦେଇଯାଇଥିଲା, 'ଯେଉଁ ଦିନ ରାଜି ହେବ ମୋ ପରିବାରର ପ୍ରସ୍ତାବରେ ମୋତେ ଶୀଘ୍ର ଜଣାଇବ । ମୁଁ କିନ୍ତୁ ତୁମକୁ ପାଖରେ ଖୁବ୍ ଶୀଘ୍ର ପାଇବାକୁ ଚାହେଁ । ତୁମ ବିନା ବଞ୍ଚିବା ମୋ ପକ୍ଷରେ ଖୁବ୍ କଷ୍ଟ ହେଉଛି । ମୋ ପରିବାର ଲୋକେ ଗୋଟିଏ ସନ୍ତାନ ଥିବା ବିଧବା ସ୍ତ୍ରୀକୁ ବୋହୂ କରିବାକୁ ରାଜି ହୋଇଛନ୍ତି ଯେତେବେଳେ ମୋତେ ତାଙ୍କ କଥା ବି ବୁଝିବାକୁ ପଡିବ। ସେମାନଙ୍କ ସମ୍ମାନ ଦେଖିବାକୁ ପଡିବ। ଆଉ ମୁଁ ଚାହେଁ ମୋ ପରିବାର ଆମ ବିବାହ ପରେ ତୁମ ପ୍ରତି ସବୁବେଳେ ଯେମିତି ଖୁସୀରେ ରୁହନ୍ତୁ । ଏଣୁ ମୋ ପରିସ୍ଥିତି ବୁଝିପାରୁଥିବ ମମତା । ଏବେ ଯାହା ନିଷ୍ପତ୍ତି ତୁମ ହାତରେ ।'

ମମତା ସନ୍ଦିପ୍‌କୁ ଭେଟି ସାତଦିନ ଗଡିଗଲାଣି । ସେ କିଛି ନିଷ୍ପତ୍ତି ନେଇପାରୁନଥିଲା। କ'ଣ ଯେ କରିବ, କେମିତି କରିବ? କିଛି ବୁଦ୍ଧିବାଟ ତାକୁ ଦିଶୁନଥିଲା। ସନ୍ଦିପକୁ ଅନେକ ଦିନ ହେଲା ନଦେଖି ମମତାର ଦିନଗୁଡିକ ସରୁ ହିଁ ନଥିଲା ଯେମିତି ।

ସିପୁନ୍ ଏବେ ମାଆକୁ ଦେଖୁଚି ସେ ଆଉ ପୂର୍ବ ପରି ଖୁସି ରହିପାରୁ ନାହିଁ । ଦୀର୍ଘ ରାତି ପର୍ଯ୍ୟନ୍ତ ସେ ଶୋଉନାହିଁ । ଦିନେ ବହୁତ ରାତିରେ ସିପୁନ୍ ଉଠି ଦେଖିଛି ମାଆ ତାର ବସି କ'ଣ ଭାବୁଛି, ବେଳେ ବେଳେ ହସୁଛି । ବେଡ୍ ଉପରେ ଗଡିଯାଉଛି । ଛାଟିପିଟି ହେଉଛି । ହଠାତ୍ କାନ୍ଦି ବି ପକାଉଛି । ମାଆର କ'ଣ ହୋଇଛି ? ଯଦିଓ ସିପୁନ୍ ଏବେ ବାର ବର୍ଷର ତେବେ ବି ସେ ଛୋଟ ପିଲା ତା' ଭିତରେ ସେତିକି ବୁଝିବା ଜାଣିବାର ଜ୍ଞାନ ହୋଇନାହିଁ ଯେ ମାଆ ଶରୀରର ଭୋକକୁ ସେ ବୁଝିପାରିବ।

ଦିନେ ମନସ୍ତାପରେ ବସିଥିଲା ମମତା, ସିପୁନ୍ ଆସି ପଚାରିଲା ମାଆକୁ ତା'ର କ'ଣ ହୋଇଛି ? ମମତା କିଛି କହିଲା ନାହିଁ ଯୋର କରି ଦୂରକୁ ଛାଟିଦେଲା ସିପୁନ୍‌କୁ। ସିପୁନ୍‌କୁ ତା' ଜନ୍ମିତ ମାଆ ମନେ ପଡିଯାଇଛି । ତା' ଜନ୍ମିତ ମାଆର ଦିନେ ସିପୁନ୍ ପ୍ରତି ଏଭଳି ବ୍ୟବହାର ଥିଲା । ତେବେ ମୋର ଏଇ ମମତାମୟୀ ମାଆ ମୋର ପୂର୍ବ ମାଆ ପରି ହୋଇଯାଇନି ତ! ସିପୁନ୍ ମନେ ମନେ ଭାବିଲା, ହୋଇପାରେ । ଗତ

ତିନି ବର୍ଷରେ ଥରେ ବି ସେ ମମତାକୁ ତା'ପ୍ରତି ଏଭଳି ବ୍ୟବହାର କରିବା କେବେ ଦେଖି ନଥିଲା । ସିପୁନ୍ ମନରେ ଭୟ ପଶିଲା ତା'ର ଏଇ ମମତାମୟୀ ମାଆ ତାକୁ ପୂର୍ବ ମାଆ ପରି ଛାଡି ଯିବନି ତ? ଏବେ ସେ ଯିବ କୁଆଡେ ? ଏତେ ବେଳକୁ ସନ୍ଦିପ୍‌ର ଫୋନ୍ ଆସିଛି, 'ମମତା ତୁମେ କ'ଣ ନିଷ୍ପତ୍ତି ନେଲ ?'

'ତୁମେ ବହୁତ ମନେ ପଡୁଛ, ତୁମ ବିନା କ୍ଷଣେ ବଞ୍ଚିବା କଷ୍ଟ ହେଉଛି ।'

'ସେଥିପାଇଁ ତ କହୁଛି ଶୀଘ୍ର ନିଷ୍ପତ୍ତି ନିଅ ।'

ସନ୍ଦିପ୍‌ର ଫୋନ ରଖି ମମତା ଗଭୀର ଚିନ୍ତାରେ ବସିଥାଏ ସିପୁନ୍ ପୁଣି ତା'ପାଖକୁ ଆସି ପଚାରିଛି, 'ମାଆ ମୋତେ ଛାଡି ଦେବ ?'

ସିପୁନ୍‌ର ପ୍ରଶ୍ନରେ ମମତା ନିଜ ଗମ୍ଭୀର ମୁଦ୍ରାରୁ ଫେରିଆସିଲା । ସଙ୍ଗେ ସଙ୍ଗେ ତାକୁ ମନେ ପଡିଗଲା ହାଟରେ ସୁଦେଷ୍ଣାର ପ୍ରତିକ୍ରିୟାର କଥା ।

'ଓଃ, ମୁଁ ଏ କ'ଣ ଚିନ୍ତା କରୁଥିଲି । ତେବେ ସୁଦେଷ୍ଣା ଆଉ ମୋ ଭିତରେ ତଫାତ୍ କ'ଣ ରହିଲା । ସୁଦେଷ୍ଣାକୁ ମୁଁ ସେଦିନ କେତେ ଭୁଲ୍ ବୁଝିଥିଲି । ପେଟ ଆଉ ଦେହର ଭୋକକୁ ମେଣ୍ଟାଇବାକୁ ସେ ବାଧ୍ୟ ହୋଇଥିଲା ଗୋଟିଏ କଠୋର ନିଷ୍ପତ୍ତି ନେବାକୁ । ତା' ପାଖରେ ତ ପେଟ ପୋଷିବାକୁ ବି ବଳ ନଥିଲା ତେବେ ମୋର ତ ସେଭଳି କିଛି ଅଭାବ ନାହିଁ ତେବେ ପିଲାଟାକୁ ଛାଡିଦେବା ଏ କେଉଁ ନ୍ୟାୟ ? ନା ସିପୁନ୍‌କୁ ଛାଡିବା ମୋ ପାଇଁ ଅପରାଧ ହେବ । ଏତେ ବଡ ଅପରାଧ ମୋ ଦ୍ୱାରା କେମିତି ସମ୍ଭବ । ପିଲାଟାର ଜୀବନ ଛିନ୍‌ଭିନ୍ ହୋଇଯିବ । ତା'ଜୀବନକୁ ନଷ୍ଟ କରିବାର ମୋର କି ଅଧିକାର ଅଛି । ସେ ଦିନ ମୋ ଭିତରେ ବାତ୍ସଲ୍ୟ ପ୍ରୀତିର ଲାଳସା; ଆଉ ଆଜି ମୋତେ ବିକଳ କରିପକାଉଛି ସନ୍ଦିପ୍‌ର ମୋହ। ମୋତେ ବାତ୍ସଲ୍ୟ ପ୍ରୀତିରେ ଅଧିକ ଭିଜାଅ ପ୍ରଭୁ ଭିଜାଅ...।' କହି ମମତା ଭୋ ଭୋ କାନ୍ଦିଉଠିଲା ।



*(ଆଧୁନିକ)*

# ଚିଠି

"........"

ତୁମକୁ ଯାହା ଯାହା ସମ୍ବୋଧନ କରୁଥିଲି ସେଇ ସମସ୍ତ ସମ୍ବୋଧନର ଏକ ଏକ ଶେଷ ସୀମାନ୍ତ ରହିଛି ; ଏଣୁ ଏହି ଶେଷ ସୀମାନ୍ତରେ ପହଞ୍ଚି ଅଣନିଶ୍ୱାସୀ ବୋଧ କରିବା ପୂର୍ବରୁ ତୁମକୁ ମୁଁ ଅନନ୍ତ ରୂପେ ବ୍ୟାଖ୍ୟା କରିସାରିଛି । ତେଣୁ ସେଇ ଜାଗାରେ ଅନନ୍ତର ପୂର୍ଣ୍ଣ ରୂପଟି ଉପସ୍ଥାପିତ କଲି । ତୁମେ ନିଶ୍ଚୟ ଭାବୁଥିବ ସମ୍ବୋଧନଟିଏ କରିଦେବାରେ ଏତେ କୁଣ୍ଠା କାହିଁକି ? କିନ୍ତୁ ସତ କହିବାକୁ ଗଲେ ମୁଁ ଚାହୁଁନି ତୁମ ସହ ମଣିଷ ସଂପର୍କର କୌଣସି ଗୋଟିଏ ସଂପର୍କରେ ଆବଦ୍ଧ ହୋଇଯିବାକୁ ।

ହଁ ଆଜି ମୋତେ ସେହି ଦିନ କଥା ମନେ ପଡିଯାଉଛି; ଅନେକ ସମୟ ତୁମ ସହ ବସି କଥାହେବା ପରେ ମୁଁ ତୁମକୁ ଆମ ସଂପର୍କର ଆଖ୍ୟା କ'ଣ ପ୍ରଶ୍ନ କରିଥିଲି । କିନ୍ତୁ ତୁମେ ଗୋଟିଏ ପରେ ଗୋଟିଏ ମଣିଷ ମନଗଢା ସଂପର୍କମାନଙ୍କୁ ମୋ ସମ୍ମୁଖରେ ଉପସ୍ଥାପିତ କଲ । ସ୍ୱାମୀ, ବନ୍ଧୁ, ପ୍ରେରଣାଦାୟକ, ଜୀବନସାଥୀ, ସେବକ- ଏ ମଧ୍ୟରୁ କୌଣସିଟିକୁ ମଧ୍ୟ ସ୍ୱୀକାର କରି ପାରିଲି ନାହିଁ; ଏତଦ୍ ଭିନ୍ନ ଗୁରୁ କିମ୍ବା ପିତୃସ୍ଥାନୀୟ ସମସ୍ତ ସଂପର୍କ ମଧ୍ୟ ଗୋଟିଏ ପରିସୀମା ମାପୁଛନ୍ତି ଆମ ସଂପର୍କ ମଧ୍ୟରେ । ଭ୍ରାତୃତ୍ୱର ଆଭାରେ ସେଦିନ ରେଶମ ରାକ୍ଷୀ ଖଣ୍ଡିକ ପ୍ରେରିତ ତା'ବି ଅଜାଣତରେ ବାଉଳେଇ ହୋଇ ଫେରିଆସିଥିଲା ମୋ ପାଖକୁ । ମୋର ପ୍ରତିଟି ସମ୍ବୋଧନ ତୁମ ପାଖକୁ ଯାଇ ଲେଉଟି ଆସିଛି ପୁନଶ୍ଚ । ବର୍ତ୍ତମାନ ଯେତେବେଳେ ସମ୍ବୋଧନର ସମୟ ଆସିଛି ତୁମକୁ ମୁଁ ଅନନ୍ତ ରୂପରେ ଦେଖୁଛି । ଯାହାର କୌଣସି ରୂପନାହିଁ ଆକାର ନାହିଁ । ତୁମେ ମୋ' ପାଇଁ ନିରାକାର । ଅତୀତର ସେହି ସମ୍ବୋଧନମାନଙ୍କ ମଧ୍ୟରୁ ଯଦି କୌଣସି

ଗୋଟାଏ ବି ରହିଯାଇ ଥାଆନ୍ତା ତେବେ ଆମ ସଂପର୍କଟି କର୍ତ୍ତବ୍ୟ ଏବଂ ଅଧିକାର ମଧ୍ୟରେ ହୁଏତ ଅବସାନ ହେବାର ସମ୍ଭାବନା ଥାଆନ୍ତା । ଏଣୁ ତୁମେ ମୋ ପାଇଁ ନିରାକାର, ସମ୍ବୋଧନ ବିହୀନ ଶୁଦ୍ଧ ମଣିଷଟିଏ ।

ହଁ ଆଜି ଏକୁଟିଆ ବେଳରେ ତୁମ କଥା ଖୁବ୍ ମନେ ପଡିଯାଉଛି । ମନେପଡୁଛି ସେହି ଦିନ ମୋର ତୁମପ୍ରତି 'ଆପଣ' ସମ୍ବୋଧନକୁ ତୁମେ କେତେ ପ୍ରତିବାଦ କରୁଥିଲ । ଆପଣରୁ ତୁମେକୁ ଆସିବାକୁ ବାରମ୍ବାର କହୁଥିଲ ଆଉ ମୁଁ ସ୍ୱପ୍ନରେ ତୁମକୁ ମୋର ସ୍ୱାମୀ ରୂପରେ ଉଲ୍ଲିଖିତ କରୁଥିଲି ତା' ହୁଏତ ମୋ ଜୀବନର ଏକ ମଧୁର ସମୟ । ମନେ ହେଉଛି ଏବେ ମୁଁ ଗୋଟାଏ ଦୁଃସ୍ୱପ୍ନ ଦେଖୁଛି, ସେଇ ସ୍ୱପ୍ନ ଭାଂଗିଯିବା ପରେ ତୁମେ ପୁଣି ପହଞ୍ଚି ଯିବ ମୋ ପାଖରେ । ତୁମର ସେ ଭୁବନଜିଣା ହସରେ ମୋ ଭିତରର ଦୁଃଖ, ଅବସାଦ ସବୁ ପୋଛି ଦେବ ପଲକ ମାତ୍ରକେ । ସାଉଁଟି ନେବ ମୋତେ ତୁମ ଦୁଇ ହାତର ବନ୍ଧନୀ ଭିତରକୁ । ଏହି ଦିନର ସଂପର୍କ ମଧ୍ୟରେ ମୁଁ କେବେ ମଧ୍ୟ ଭାବିନାହିଁ ତୁମେ ମୋ ଠାରୁ ଭିନ୍ନ ବୋଲି । ତୁମ ସତ୍ତାର ଏକ ଅବିଚ୍ଛେଦ୍ୟ ଅଂଶ ବୋଲି ନିଜକୁ ମଣିଛି ମୁଁ । ପ୍ରତି ମୁହୂର୍ତ୍ତରେ ତେଣୁ ତୁମର ସାନ୍ନିଧ କାମନା କରିଛି । ତୁମ ସହିତ ଏକାତ୍ମ ହୋଇଯିବାର ପ୍ରତ୍ୟୟ ମୋ ଭିତରେ ଏମିତି ସୁଦୃଢ଼ ହୋଇଛି ଯେ ସାମାଜିକ ନୀତି, ନିୟମ, ଶୃଙ୍ଖଳା, ସବୁ ତୁଚ୍ଛ ହୋଇଯାଇଛି ମୋ ପାଖରେ । ବ୍ରାହ୍ମଣର ମନ୍ତ୍ରପାଠ, ହୋମ, ହାତଗଣ୍ଠି କିଛି ନ ହୋଇଥିଲେ ବି ମୁଁ ତ ତୁମର ପରିଣିତା ହୋଇସାରିଥିଲି, ଆଉ ସଧବାର ସମସ୍ତ ଆଚରଣ ପାଳୁଥିଲି । ସ୍ୱପ୍ନରେ ହେଉ ପଛେ ତୁମକୁ ମୁଁ ସ୍ୱାମୀ ରୂପେ ଗ୍ରହଣ କରିଥିଲେ ହେଁ ମୋ ସଂସ୍କାର ମୋତେ ଚେତାଇ ଦେଉଥାଏ । ଏଣୁ ବେଳେ ବେଳେ ତୁମ ପାଗଳାମି ଦେଖି ଆକଟ କରେ । ସେ ଦିନ ମୋ ଗଳାରେ ମଙ୍ଗଳ ସୂତ୍ରଟିଏ ଦେବା ପାଇଁ ତୁମେ କେତେ ଯେ ଚେଷ୍ଟା କରିଥିଲ । କିନ୍ତୁ ମୁଁ ଚାହୁଁ ଥିଲେ ବି ତାକୁ ସ୍ୱିକାର କରିପାରି ନଥିଲି । କାରଣ ବାପା ମାଆଙ୍କ ବିନା ଆଶିର୍ବାଦ ଏବଂ ସମାଜର ବିନା ସ୍ୱିକୃତିରେ ମୁଁ ଏତେ ବଡ ଲୋକଦେଖାଣିଆ ଭାରଟିଏ ସମ୍ଭାଳିବାରେ କଷ୍ଟ ଅନୁଭବ କରୁଥିଲି ।

କିଛି ଦିନ ପରେ ତୁମର ମୋର ସଂପର୍କକୁ ବାପାମାଆ ସ୍ୱୀକୃତି ଦେବା ଅନୁଭବ କରିପାରି ହାତ ବଢାଇଥିଲି ନିଃର୍ଦ୍ୱନ୍ଦରେ ତୁମ ଆଡକୁ । କିନ୍ତୁ ତାର କିଛି ଦିନ ପରେ ବାପା ତୁମ ପାଖରେ କ'ଣ ଦେଖିଲେ କେଜାଣି ତୁମଠୁ ମୋତେ ଦୂରେଇ ରହିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ସେ ଦିନ ମୁଁ ତାହା ବୁଝିପାରି ନଥିଲି କି ବୁଝିବାକୁ ଚେଷ୍ଟା ବି କରି ନଥିଲି । ବାପାଙ୍କ କଥାକୁ କେବେ ମଧ୍ୟ ଅବମାନନା କରି ନାହିଁ ତେବେ ପ୍ରଥମ କରି ସେଦିନ ତୁମରି ପାଇଁ ବେଖାତିର କରିଥିଲି । ବେଳେବେଳେ ତୁମର ପାଗଳାମି ଦେଖି ମୋତେ ହସ ଲାଗୁଥାଏ । ଏବଂ ଆକଟ କରୁଥାଏ ତୁମକୁ ଅନ୍ୟମାନଙ୍କ ଦୃଷ୍ଟିରେ

ନିଜକୁ ଲୋକହସା ନ କରିବାକୁ । ଲୋକ ଲଜ୍ଜାକୁ ମୁଁ କିନ୍ତୁ ଖୁବ୍ ଭୟ କରୁଥିଲି । ମାତ୍ର ତୁମେ ବେଖାତିର ହେଉଥାଅ । ତୁମର ଭଲ ପାଇବା ମୋ ପାଇଁ ଅନେକ ଗର୍ବ ଓ ଗୌରବର ବିଷୟ ଥିଲା । ତୁମ ସହିତ ମୋର ସଂପର୍କ ସାରା ସଂସାରକୁ ଜଣାଇ ଦେବାକୁ ମୁଁ ଚାହୁଁଥିଲି । ଏଣୁ ବାପା ମାଆଙ୍କ ପ୍ରଥମ ସ୍ୱିକୃତିକୁ ଦୃଷ୍ଟିରେ ରଖି ତୁମକୁ ଶୀଘ୍ର ବିବାହ ପାଇଁ କହିଥିଲି । କିନ୍ତୁ ତୁମେ ମୋ କହିଥିବା ପୂର୍ବ କଥାକୁ ଦୋହରାଇଥିଲ, 'ମୁଁ ସଂକଳ୍ପ ବଦ୍ଧ ଯେ ତୁମକୁ ସେହି ଉଚ୍ଚସ୍ଥାନରେ ନେଇ ପହଞ୍ଚାଇବି, ଯାହାକି ତୁମର ସ୍ୱପ୍ନ ଥିଲା । ଯଦି ତୁମର ଏହି ସ୍ୱପ୍ନଟିକୁ ମୁଁ ସାର୍ଥକ କରି ନପାରେ ତେବେ ମୁଁ ତୁମର ସ୍ୱାମୀ ହେବାର ମଧ୍ୟ ଯୋଗ୍ୟ ନୁହେଁ । ଏଣୁ ମୋତେ ଭୁଲବୁଝିବନି ।'

ତୁମର ଏହି ପଦିଏ କଥା ମୋ ଭିତରେ ପୁନଶ୍ଚ ରକ୍ତସଞ୍ଚାରଣ କଲା ଏବଂ ମୋ ପ୍ରତିଭାର ଶକ୍ତି ଦ୍ୱିଗୁଣିତ ବଢିଲା । ପିଲାଟି ଦିନରୁ ଗୀତ ବୋଲୁଥିଲି କିନ୍ତୁ ଏହାକୁ ନେଇ ଦିନେ ତୁମ ସହ ପରିଚୟ ହେବ କେବେ ସ୍ୱପ୍ନରେ ବି ଭାବି ନଥିଲି । ଏତଦ୍ ଭିନ୍ନ ଅନ୍ୟାନ୍ୟ କଳାପ୍ରତି ବି ମୋର ଖୁବ୍ ଝୁଙ୍କ ଥିଲା, ସ୍ୱପ୍ନଟି ନିଶ୍ଚୟ ଥିଲା ଦିନେ ପରିଚିତ ନାମଟିଏ ହେବି । କିନ୍ତୁ ଏହି ଦିଗରେ ଆଗେଇଯିବି କେବେ କଳ୍ପନା ବି କରିନଥିଲି । ଅକଳ୍ପିତ ଥରିଲା ହାତକୁ ଥାମି କିଛି ଦୂର ମୋତେ ତୁମେ ହିଁ ତ ଆଗେଇନେଲ । ନିଜକୁ କ୍ଷତାକ୍ତ କରିନୁହେଁ ଅନେକ ସ୍ନେହ, ମମତା ଏବଂ ପ୍ରେମରେ ଆଗେଇବାକୁ ଚାହେଁ ଏଣୁ କର୍ତ୍ତବ୍ୟ ପରି ଶବ୍ଦରେ ସ୍ନେହର ପରାକାଷ୍ଠା ଅନୁଭବ କରିଛି ବିଶ୍ୱାସଟି ଏତେ ଦୃଢ ରୂପ ଧରିଲା ଯେ ସ୍ୱାମୀ ପରି ପବିତ୍ର ପଦବୀଟି ଦେବାକୁ ମଧ୍ୟ ଆଉ ପଛଘୁଞ୍ଚା ଦେଲିନାହିଁ । କିନ୍ତୁ ଏହି ସମ୍ବୋଧନଟିକୁ ବର୍ତ୍ତମାନ କିପରି ସ୍ୱାଗତ ଜଣାଇବି ଜାଣିପାରୁନାହିଁ । କାରଣ ଏହି ସଂପର୍କର ବି ଏକ ସୀମାନ୍ତ ରହିଛି । ସ୍ତ୍ରୀ ପ୍ରତି ଥିବା କର୍ତ୍ତବ୍ୟଟି କରିଦେବା ପରେ ଯଦି ତୁମେ ମୋଠାରୁ ବିଦାୟ ନିଅ, କର୍ତ୍ତବ୍ୟଟିର ଆଳ ଦେଖାଇ ଯଦି ମୋଠାରୁ ଦୂରେଇ ଯାଅ ତେବେ ବଞ୍ଚିବା ଖୁବ୍ କଷ୍ଟ ହେବ । ଓଃ, ଏକଥା ଭାବିବାବେଳେ ମୋର ସାରା ସତ୍ତାରେ ଜ୍ୱରର କମ୍ପନ ।

ଜାଣ ଏକଥା ଭାବି ମୁଁ ଖୁବ୍ ଖୁସି ଥିଲି ଯେ ଯାହାକୁ ସ୍ୱାମୀ ରୂପରେ ପାଇବି ସେ ମୋର ପ୍ରତିଟି ଭାବନାକୁ ବୁଝିପାରୁଛି ଏବଂ ମୋ ସ୍ୱପ୍ନ ସହ ତୁମ ସ୍ୱପ୍ନର ସାନ୍ନିଧ୍ୟ ଏକାତ୍ମ ହେବାରେ ମୁଁ ଆଉ ସେହି ଲୋକ ଦେଖାଣିଆ ବିବାହକୁ ଏଡାଇ ଦେଇ ନିଜ କର୍ମରେ ନିଷ୍ଠା ପ୍ରତିଷ୍ଠା କଲି । ସମାଜରେ ତୁମର ଏକ ମର୍ଯ୍ୟାଦାବନ୍ତ ସ୍ଥାନକୁ ଦେଖି ମୁଁ ମଧ୍ୟ ସଂକଳ୍ପବଦ୍ଧ ହୋଇପଡିଲି ତୁମ ସ୍ତରକୁ ଉପନୀତ ହେବାକୁ । ମୋର ବିଶ୍ୱାସ ଥିଲା, ତୁମେ କେବଳ ମୋର ଆଉ କାହାର ଏତେ ଟିକିଏ ମଧ୍ୟ ଅଧିକାର ନାହିଁ ତୁମ ଉପରେ । କିନ୍ତୁ ଆଜି ଯେତେବେଳେ ଏହି ସଂପର୍କକୁ ପରିମାର୍ଜିତ କରୁଛି ମୋ ଭାବନାର ମାପକାଠିରେ ଏହାର ମାପ ଖୁବ୍ ଛୋଟ ହୋଇଯାଉଛି, ଭାବୁଛି ଭଲ ହେଲା ତୁମ ସହ

ମୋର ବିବାହ ହୋଇନାହିଁ, ନଚେତ୍ ପରବର୍ତ୍ତୀ ଅବସ୍ଥା ଯେ କ'ଣ ହୋଇଥାଆନ୍ତା ! ଛାଡ...। କିନ୍ତୁ, ଏକଥା ସତଯେ ଏହି ସଂପର୍କଠୁଁ ମଧ୍ୟ ଅଧିକ ତୁମ ସହ ମୋର ନିବିଡତା, ନହେଲେ ଏହି ଏକୁଟିଆ ବେଳରେ ତୁମେ କ'ଣ ମୋତେ ଏତେ ଏତେ ଅବୋରି ବସନ୍ତ ? ଆମ ସଂପର୍କକୁ କୌଣସି ଆଖ୍ୟା ନଦେବାରେ ବି ଖୁବ୍ ବିବ୍ରତ ଲାଗୁଛି କାରଣ ମୁଁ ଏବଂ ତୁମେ ଆମ ଦୁହିଁଙ୍କୁ ବାଦ ଦେଇ ଯେତେବେଳେ ତୃତୀୟ ଏହି ସମାଜକୁ ଦେଖୁଛି ।

ତୁମର ହୁଏତ ସବୁକଥା ମନେ ନଥିବ । ସେଇଥି ପାଇଁ ମୁଁ ମନେ ପକାଉଛି ଆମ ସଂପର୍କର ପ୍ରଥମ ଦିନର କଥା । ଆତ୍ମ ସମୀକ୍ଷା କରୁଛି କେଉଁଠି ମୋର ଭୁଲ ରହିଗଲା ? କାହିଁକି ଆଜି ମୋତେ ସଂପର୍କମାନଙ୍କର ଅନାହାର ବୋଧ ହୋଇ ଏତେ ବଡ ଶାସ୍ତି ଭୋଗିବାକୁ ପଡୁଛି ? ମୁଁ ତୁମକୁ ଚିହ୍ନିଥିଲି ଯଦିଓ ସେମିତି କୌଣସି ଆକର୍ଷଣ ପ୍ରଥମ ଦେଖାରେ ଅନୁଭବ କରି ନଥିଲି । ଅନ୍ୟାନ୍ୟ ସାଧାରଣ ଲୋକଙ୍କ ଭଳି ତୁମେ ବି ସାଧାରଣ ଥିଲ ମୋ ପାଖରେ । କିନ୍ତୁ ସେ ଦିନର ପ୍ରଥମ ଦେଖାରୁ ହିଁ ତୁମେ ମୋ ପ୍ରତି ଆକର୍ଷିତ ହୋଇସାରିଥିଲ ଏବଂ ଧିରେ ଧିରେ ଦେଖା କରିବାର ଅନେକ ବାହାନା କରି ମୋ ସହ ଦେଖା କଲ ଥରକୁ ଥର । ଥରେ କୌଣସି କାମର ବାହାନାରେ ଆମ ଘରକୁ ଆସିଥିବାବେଳେ ତୁମକୁ ମନା କରିଥିଲି ପରୋକ୍ଷରେ ଆମ ଘରକୁ ନ ଆସିବା ପାଇଁ । ତୁମେ କିଭଳି ବୁଝିଲ କେଜାଣି ତୁମ ଗୋରା ମୁହଁ ନାଲି ପଡି ଯାଇଥିଲା ସେଦିନ । ତୁମେ କିନ୍ତୁ ଚାଲିଆସୁଥିଲ ମୁଁ ଖୁବ୍ ବିରକ୍ତ ହେଉଥିଲି ମନେମନେ । ବାଧହୋଇ ତୁମ ପାଖରେ କିଛି ସମୟ ବସେ । ତା'ର କିଛି ଦିନ ପରେ ଚିଠିଟିଏ ପାଇଲି ତୁମ ପାଖରୁ, ତୁମ ଆସିବାର ପରିଭାଷା ବୁଝିବା ପାଇଁ ଚେଷ୍ଟା କରିବାକୁ । ମୋର କୁମାରୀ ମନ ତୁମର ଏ ଆସ୍ପର୍ଦ୍ଧାରେ କ୍ଷୁବ୍ଧ ହୋଇଥିଲା । ଭାବିଥିଲି ତୁମର ଏ ଚିଠି ମୋ ମାଆ ବାପାଙ୍କୁ ଦେଖାଇ ଆଚ୍ଛାକରି ପାନେ ଦେବି ତୁମକୁ । କିନ୍ତୁ ତା'ମୁଁ କରିପାରିଲି ନାହିଁ । କାରଣ ଯା'ଭିତରେ ତୁମେ ଆମ ପରିବାରର ଜଣେ ସଦସ୍ୟ ପରି ସମସ୍ତଙ୍କ ସହ ମିଶିସାରିଥିଲ । ବଡଭାଇଙ୍କ ମୃତ୍ୟୁ ମାଆଙ୍କୁ ଖୁବ୍ ଘାରୁଥିଲା । ପରମୁହୂର୍ତ୍ତରେ ତୁମକୁ ଦେଖି ନିଜ ବଡପୁଅକୁ ଅନୁଭବ କରି ପୁତ୍ରଆନନ୍ଦ ଉପଭୋଗ କରୁଥିଲେ । ପ୍ରତିଦିନ ତୁମର ଆସିବା ବାଟକୁ କିଛି ନା କିଛି ତିଆର କରି ଅପେକ୍ଷା କରୁଥିଲେ । ତୁମେ ଚିଠିରେ ଉଲ୍ଲିଖିତ କରିଥିବା ପ୍ରସ୍ତାବଟି ଶୁଣି ମୋ ସଞ୍ଚିତ ସମସ୍ତ ସ୍ୱପ୍ନ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ମାସେ କାଳ ତୁମକୁ ଦ୍ୱନ୍ଦ୍ୱ ମଧ୍ୟରେ ରଖିଥିଲି ଅନ୍ୟ ଏକ ସଂପର୍କରେ ଆପଣେଇ ନେବାକୁ । କିନ୍ତୁ ତୁମର ପ୍ରସ୍ତାବଟି ମୋତେ ସଂପୂର୍ଣ୍ଣ ମୌନ କରିଦେଲା । ସେମିତି କରିଥିଲେ ଆଜି ଏ ଅଶ୍ରୁର ଭଉଁରୀରେ ଉବୁଟୁବୁ ହେଉ ନଥାଆନ୍ତି ।

ମୋତେ ପାଇବାକୁ ତୁମେ ରୀତିମତ ସାଧନା କରିବା ଆରମ୍ଭ କରିଦେଇଥିଲ । ସାଧାରଣ ଚେହେରା ଏବଂ ଗୁଣର ଅତି ସାଧାରଣ ମଧ୍ୟବିତ୍ତ ପରିବାରର ଝିଅଟିଏ ଥିଲି । ହଁ, ମୋ ବାପା ଏବଂ ଭାଇମାନେ ଭଲ ରୋଜଗାର କରୁଥିଲେ । ସମସ୍ତଙ୍କର ଖୁବ୍ ଆଦରର ପାତ୍ରୀ ଥିଲି । ମୋର ସମସ୍ତ ଇଚ୍ଛା, ଖୁସୀ ପୂରଣ କରିବା ପାଇଁ ମୋ ପରିବାର ତତ୍ପର ଥିଲେ । ଯାହା ଚାହୁଁଥିଲି ତାହା ଅତି ସହଜରେ ପାଉଥିଲି । ମୋ ଭିତରେ ତୁମେ କ'ଣ ଦେଖିଥିଲ କେଜାଣି ମୋତେ ପାଇବା ପାଇଁ ଆକାଂକ୍ଷିତ ହୋଇଥିଲ, ବ୍ୟଗ୍ର ହୋଇପଡିଥିଲ । ତୁମ ପାଇଁ ମୁଁ ଅତ୍ୟନ୍ତ ଦୁର୍ଲଭ ଥିଲି; ଆକାଶର ତାରା ଭଳି । ତୁମେ  ନିଜକୁ ବାମନ ବୋଲି ବାରମ୍ବାର କହୁଥିଲ । କେମିତି କୋଉ ସୂତ୍ରରୁ ମୋର ରୁଚି, ମୋର ପସନ୍ଦ ଅପସନ୍ଦର ଖବର ସଂଗ୍ରହ କରି ସେଇଭଳି ହେବା ପାଇଁ ଅପ୍ରାଣ ଉଦ୍ୟମ କରୁଥିଲ । ଯେମିତି ମୋ ପସନ୍ଦର କଥାମାନ କହୁଥିଲ, କେତେ କୌଶଳରେ ବହି କିଣି ମୋ ପାଖକୁ ପଠାଉଥିଲ । ପୁଣି ଫଟୋଗ୍ରାଫି ପ୍ରତି ମଧ୍ୟ ଖୁବ୍ ଝୁଙ୍କଥିଲା ତୁମର ମୋ ଫଟୋ ଉଠାଇବା ଆଗ୍ରହକୁ ଦେଖି ସେଦିନ ଗୋଟାଏ ପରେ ଗୋଟାଏ ଅନେକ ଫଟୋ ଉଠାଇନେଲ ।

ମୁଁ  ତ ଦେବୀ କି ମହାମାନବୀ ନଥିଲି । ଖୋସାମତରେ କୁଆଡେ ଭଗବାନ ବି ଟଳନ୍ତି ମୋ ପରି ରକ୍ତ ମାଂସରେ ଗଢ଼ା ସାଧାରଣ ଝିଅଟିଏ କେତେଦିନ ଦମ୍ଭ ଧରି ଥାଆନ୍ତା । ଆସ୍ତେ ଆସ୍ତେ ମୁଁ ବି ତୁମ ପ୍ରତି ଆକୃଷ୍ଟ ହେଉଥିଲି ମୋ ଅଜାଣତରେ । ସେହି ସମୟରେ ହଠାତ୍ ତୁମେ ମୋ ଦୃଷ୍ଟି ଗୋଚର ହେଲ ନାହିଁ । ତୁମେ ଦୀର୍ଘ ସତେଇଶ ଦିନ ଏକ ଜରୁରୀ କାମରେ ସୁଇଜରଲ୍ୟାଣ୍ଡ ଚାଲିଯାଇଥିଲ । ଦୀର୍ଘଦିନ ତୁମକୁ ନଦେଖି ମୁଁ  ବ୍ୟାକୁଳ ହୋଇପଡିଲି । ତୁମ ସହ ଏତେ ଦିନର ସଂପର୍କ ଥିଲେ ମଧ୍ୟ ସେପରି କିଛି ପ୍ରତିକ୍ରୀୟା ମୋ ଭିତରେ ହୋଇ ନଥିଲା । କିନ୍ତୁ ତୁମର ଏହି ଅନୁପସ୍ଥିତି ମୋତେ ସୁଚାଇ ଦେଇଥିଲା ଯେ ମୁଁ ମଧ୍ୟ ତୁମ ପ୍ରତି ଥିବା ଦୁର୍ବଳତାକୁ ପ୍ରକାଶ କରିଦେଇଥିଲି, ତୁମେ ଫେରିବା ପରେ । ଦୀର୍ଘ ଦିନର ଦୂରତା ସାଥେ ତୁମ ଦେହ ଖରାପ ଦେଖି ମୁଁ ଆହୁରୀ ଆକର୍ଷିତ ହୋଇପଡିଥିଲି ତୁମ ପ୍ରତି । ତୁମ କପାଳରେ ମୁଁ ମୋର ହାତ ରଖିବା ମାତ୍ରକେ ତୁମର ଜ୍ୱରତପ୍ତ ହାତରେ ଚାପି ଧରିଲ ମୋର ହାତ । ମୋ ପାପୁଲିରେ ଓଠ ରଖିଲ । ମୋର ସମଗ୍ର ସତ୍ତା କମ୍ପିଉଠିଲା । ଭୟରେ ହାତ ଛଡାଇ ନେଇ ତୁମଠାରୁ ଦୂରକୁ ଯାଇ ବସିଲି । ମୋ ମନ କିନ୍ତୁ ମୋ ଆୟତ୍ତରେ ନଥିଲା ଆଉ । ଦିନ ଭିତରେ ତୁମକୁ ଥରଟିଏ ନଦେଖିଲା ଯାଏଁ ଥୟଧରି ରହିପାରୁ ନଥିଲି । ଏଣୁ ଆମ ସାକ୍ଷାତ ଧିରେ ଧିରେ ବଢ଼ିବାକୁ ଲାଗିଲା । ସତରେ ମୋ ପରି ତୁମେ ମଧ୍ୟ କେତେ ବ୍ୟାକୁଳ ହୋଇପଡୁଥିଲ ଦୀର୍ଘଦିନର ଦୂରତାପରେ । ପ୍ରତିଦିନ ଫୋନ ନମ୍ବର ମିଶାଇବା ଏବଂ ନିରୁତା ହାତରେ ଫେରିବା ନିଶ୍ଚୟ ତୁମକୁ ଖୁବ୍ କଷ୍ଟ

ହୋଇଥିବ ସେହି ସମୟରେ । ତୁମଠାରୁ ପଦେ ଶୁଣିବା ପାଇଁ ମୁଁ ମଧ୍ୟ ଖୁବ୍ ବିଚଳିତ ହୋଇପଡୁଥିଲି । ଯେଉଁଠିକୁ ଶବ୍ଦଟିକେ ପହଞ୍ଚି ପାରେ ନା ସେଇଠି ପଡିରହି ଯନ୍ତ୍ରଣା ଅନୁଭବ କରୁଥିଲି । ଯାହାକି ଦୀର୍ଘ ଦିନ ପରେ ତୁମକୁ ପାଖରେ ପାଇ ଅବିଳମ୍ବେ ପ୍ରକାଶ କରିଦେଇଥିଲି । ତା'ପରେ ରୀତିମତ ଦେଖା କରିବା ଏବଂ କିଛି ସମୟ ପରସ୍ପର ବାର୍ତ୍ତା ବିନିମୟ ଜାରି ରହିଲା । ବେଳେବେଳେ ମୁଁ ତୁମ ଉପରେ ବିରକ୍ତ ମଧ୍ୟ ହେଉଥିଲି ଏପରି ବାରମ୍ବାର ଦେଖା କରିବାକୁ । କାରଣ ଆମ ସମାଜ ଏହାକୁ ପସନ୍ଦ କରେନା ଏହାକୁ ଦୃଷ୍ଟିରେ ରଖି କିଛିଟା ଦୂରତ୍ୱ ଅବଲମ୍ବନ କଲି । ଏଥିରେ ଯନ୍ତ୍ରଣା ଅନୁଭବ କରୁଥିଲି ନିଶ୍ଚୟ କିନ୍ତୁ ପରିସ୍ଥିତି ମୋତେ ବାଧ୍ୟ କରୁଥିଲା । ତୁମେ କ'ଣ ଭାବୁଥିଲ କେଜାଣି କିନ୍ତୁ ମୋର ବିଶ୍ୱାସ ତୁମେ ମୋତେ ଭୁଲ ବୁଝି ନଥିବ ? ତୁମେ ଖୁବ୍ ଚାଲାକି କରି ମୋ' ମନ ପସନ୍ଦର ରାଜକୁମାର ବିଷୟରେ ସବୁତକ ତଥ୍ୟ ସଂଗ୍ରହ କରିନେଲ । ଆଉ ଠିକ୍ ସେହି ଛାଞ୍ଚରେ ନିଜକୁ ମୋ ସମ୍ମୁଖରେ ଉପସ୍ଥାପନ କଲ । ମୁଁ ଯାହା ଯାହା ଯେପରି ପୁରୁଷଟିଏ ଚାହୁଥିଲି ଠିକ୍ ସେସବୁ ତୁମ ଭିତରେ ପାଇଯିବାରୁ ତୁମକୁ ଅନ୍ତରରେ ସ୍ୱିକାର କରିନେବାକୁ ମୁଁ ଚେଷ୍ଟା କରିନେଲି । ତୁମର ମୋ ପ୍ରତି ଦୁର୍ବଳତା ହେତୁ ମୋତେ ଯେକୌଣସି ମାଧ୍ୟମରେ ବି ହାତଛଡା ନ କରିବାକୁ ତୁମେ ମୋ ପାଇଁ କେତେ କଷ୍ଟ ସହିଛ, କେତେ ପରିଶ୍ରମ କରିଛ । ତୁମକୁ ଏପରି ନକରିବାକୁ ବହୁବାର କହିଛି । ବେଳେବେଳେ ଛୋଟ ଛୋଟ ମିଛର ଆଶ୍ରୟ ନେଇଛ କିନ୍ତୁ ଏଥିପାଇଁ ମୋର ତୁମକୁ ସତର୍କତାରେ ତୁମେ ମୋ ଉପରେ ଖରାପ ଭାବି ନଥିଲ କି ରାଗି ମଧ୍ୟ ନଥିଲ । ଏପରିକି ବହୁବାର ଅନେକ ଅସହ୍ୟ କଥା ମାନ ମଧ୍ୟ କହିଦେଉଥିଲି ତୁମକୁ ଟିକେ ଦୂରେଇ ରଖିବାକୁ । କାରଣ ମୁଁ ଖୁବ୍ ଭୟ କରୁଥିଲି ଏହି ସମାଜକୁ । ଆଉ ସଂପର୍କରେ କୁତ୍ସାରଟନା ନ ହେଉ ଯେମିତି ତା'ପ୍ରତି ଖୁବ୍ ସଜାଗ ଥିଲି । ମାତ୍ର ତୁମେ ପ୍ରତିଟି ଅସହ୍ୟକୁ ସହିନେଇଛ । ମୁଁ ତୁମ ପାଖରେ ସବୁବେଳେ ଯେତେ ଅପ୍ରୀୟ ହେଉ ପଛେ ସତ୍ୟ ହିଁ କହିବାକୁ ତୁମେ ପସନ୍ଦ କରିଥିବାରୁ ଆଉ ଭାବେନି କି ବିଚାର କରେନି କେଉଁ କଥା ତୁମକୁ କଷ୍ଟ ଦେବ ବା ଖରାପ ଲାଗିବ । ମୋର ଏହି ପାଗଳାମିକୁ ତୁମେ ହସି ହସି ନେଇଯାଅ ଯାହା ମୋତେ ତୁମ ପାଖରେ ସଂପର୍କର ଋଣୀ କରିଯାଇଛି । ତୁମର ମୋ ପ୍ରତି ଏହି ନିଃସ୍ୱାର୍ଥ ସ୍ନେହ ତଥା ପ୍ରେମକୁ ମୁଁ କେତେ ବୋକିଟେ ଥିଲି ଦେଖ ତାକୁ ସଂପର୍କର ସେତୁ ମଧ୍ୟରେ ଆବଦ୍ଧ କରିନେବାକୁ ବ୍ୟାକୁଳ ହୋଇଉଠୁଥିଲି, ତୁମେ ଯାହା ହେଲେ ବି ତୁମର ସହଧର୍ମିଣୀ ହେବାରେ ମୋର ଆପତ୍ତି ନଥିଲା ।

ଟୁର୍‌ରେ ଯିବାର ଥିଲେ ପୂର୍ବରୁ କହିଥାଅ । ତୁମର ଦିନକର ଅନୁପସ୍ଥିତି ମୋତେ ଯୁଗଟିଏ ପରି ମନେ ହୁଏ । ତୁମ ସହିତ ମୋର ସମସ୍ତ ପ୍ରାଣ ଶକ୍ତି ମଧ୍ୟ ଚାଲି ଯାଇଥାଏ ଯେମିତି । ନିର୍ଜିବ ମନେ ହୁଏ ନିଜକୁ । ତୁମକୁ ଦେଖିଲେ ମୋ ଦେହରେ ଜୀବନ

ପଶେ । ତୁମେ କୁହ, ତୁମର ବଡ ପରିବାର । ସେଠି ଯଦି ମୁଁ ବଡବୋହୂ ହୁଏ, ଅନେକ ଜଞ୍ଜାଳ ମୁଣ୍ଡେଇବାକୁ ପଡିବ । ରାତି ପାହାନ୍ତାରୁ ଉଠି ଗାଧୋଇ ପାଧୋଇ ରୋଷେଇ ଘରେ ପଶିବାକୁ ହେବ । ସମସ୍ତଙ୍କର ଖବର ଅନ୍ତର ବୁଝି ତୁମ ପାଖକୁ ଆସିବାକୁ ହୁଏତ ସମୟ ପାଇବିନି ମୁଁ । ତୁମେ କିନ୍ତୁ ମୋତେ ସବୁବେଳେ ପାଖରେ ପାଇବାକୁ ତତ୍ପର । ଏଣୁ ସଙ୍ଗେ ସଙ୍ଗେ କହିଉଠିଥିଲ ବାହାଘର ପରେ ମୋତେ ଶୀଘ୍ର ଅନ୍ୟତ୍ର ନେଇଯିବ । ମୁଁ ତାହା ମନା କରିଥିଲି । କାରଣ ମୁଁ ଚାହୁଁଥିଲି ଶାଶୁ, ଶ୍ୱଶୁର, ନଣନ୍ଦ, ଦିଅର ସମସ୍ତଙ୍କ ଗହଣରେ ରହିବାକୁ । ସମସ୍ତଙ୍କର ସ୍ନେହ, ମମତାର ପାତ୍ରୀଟିଏ ହେବାକୁ । ଏବଂ ସମସ୍ତଙ୍କୁ ଏକା ବେଳକେ ନିଜର କରିନେବାକୁ । ବଡବୋହୂର ବେଶୀ ଦାୟିତ୍ୱ କହି ତୁମେ ମୋତେ ବେଳେବେଳେ ଡରାଉଥିଲ, ଭୟ ଦେଖାଉଥିଲ । ତୁମ କଥା ଶୁଣି ମୁଁ ଦମ୍ଭର ସହିତ କୁହେ, "ତୁମ ପାଇଁ ମୁଁ ସବୁ କରିପାରିବି । ଦରକାର ପଡିଲେ ନିଆଁରେ ପଶିଯିବି । ତୁମେ ଖାଲି ମୋତେ ଟିକେ ଭଲ ପାଉଥିବ । ତୁମ ସ୍ନେହ, ମମତା ଟିକକ ପାଇ ମୁଁ ସ୍ୱର୍ଗସୁଖ ଅନୁଭବ କରିବି ।"

ମୁଁ ଯେମିତି ସ୍ୱପ୍ନରେ ବଞ୍ଚୁଥିଲି ସେଇସବୁ ଦିନ । ତୁମର ସ୍ତ୍ରୀ ହେବା ପରେ କ'ଣ କ'ଣ କରିବି ସେଇସବୁ କଳ୍ପନା ଜଳ୍ପନା କରୁଥିଲି । ମୋର ସୁଖୀ ଦାମ୍ପତ୍ୟ ଜୀବନର ସ୍ୱପ୍ନ ମୋତେ ଆନନ୍ଦରେ ବିଭୋର କରୁଥିଲା । ଶିହରଣର ଢେଉରେ ଅନବରତ ପ୍ଳାବିତ କରୁଥିଲା ।

ସେଦିନ ତୁମେ ଖୁବ୍ ଖୁସିରେ ଥିଲ । ତୁମ ସହିତ ଦେଖାହେବା ମାତ୍ରେ ମୋ ହାତକୁ ବଢାଇ ଦେଲ ଲମ୍ବା ଲଫାପାଟିଏ । ତୁମ ଚାକିରୀର ପଦୋନ୍ନତି ପତ୍ର । ତୁମ ପଦୋନ୍ନତି ଖୁସୀରେ ତୁମେ ମୋତେ କହିଥିଲ, "କ'ଣ ତୁମର ଦରକାର ?"

"କେବଳ ତୁମର ବିଶ୍ୱାସ ଏବଂ ବହୁତ ସ୍ନେହ ।" ସେଦିନ ଆଜି ବି ମୋର ମନେ ପଡିଯାଉଛି ଯେତେବେଳେ ଆମେ ଦୁହେଁ ସାଙ୍ଗ ହୋଇ ଡ୍ରେସ କିଣି ସାରିବାପରେ ସେ ଦୋକାନୀଟି କହିଥିଲା, "ମ୍ୟାଡମ୍ ପୁଅ ପାଇଁ ଶାର୍ଟ ପ୍ୟାଣ୍ଟ ନିଅନ୍ତୁ ଭଲ ଜାମା ଆସିଛି ।" ଏହା ଶୁଣି ମୋ ଭିତର ଆନନ୍ଦରେ ଉଲସି ଉଠୁଥିଲା । ପାଦ ଆଉ ତଳେ ଲାଗୁ ନଥିଲା । ପବନରେ ପହଁରିଲା ପରି ଭାବାବେଶରେ ମୂହୁର୍ମୁହୁଃ ଆଚ୍ଛନ୍ନ ହୋଇ ପଡୁଥିଲି । ମନେ ପଡୁଛି ତୁମର ?

ସେହି ଦିନ ହିଁ ଫେରିଲାବେଳେ ମୁଁ ତୁମକୁ କହିଥିଲି, 'ଆଉ ଅପେକ୍ଷା କରିପାରିବିନି । ଏଥର ମୋତେ ସବୁଦିନ ପାଇଁ ପାଖକୁ ନେବାର ବ୍ୟବସ୍ଥା କର ।' ତୁମେ କିନ୍ତୁ ମୋ ନାନୀମାନଙ୍କ ବିବାହର ଅପେକ୍ଷାରେ ଏହାକୁ ଆଡେଇ ଦେଇଥିଲ । ମୁଁ ମଧ୍ୟ ତୁମର ଏପରି ଭାବନାକୁ ଦେଖି ଖୁବ୍ ଖୁସି ହୋଇଥିଲି ଯେ ତୁମେ ଆମ ପରିବାରର ମର୍ଯ୍ୟାଦାକୁ ଗୁରୁତ୍ୱ ଦେଉଛ । ସେତେବେଳେ ମୋ ପାଠପଢା ମଧ୍ୟ ସରି ନ

ଥିଲା । ଏଣୁ ତୁମେ କହିଥିଲ ଗ୍ରାଜୁଏସନ୍ ସରିବା ପରେ ବିବାହ କରିବା । ଗ୍ରାଜୁଏସନ୍ ସରିବା ସଙ୍ଗେ ସଙ୍ଗେ ତୁମ ଘରୁ ପ୍ରସ୍ତାବ ନେଇ ଆସିବା ଆଉ ତୁମ ବୋଉ ବାପା ତଥା ପିଉସୀମାଆଙ୍କ କଥା କହିଥିଲ । କିନ୍ତୁ ଆଜି ଦେଖ ଯେତେବେଳେ ସମୟ ଆସିଛି ସେତେବେଳେ ମୁଁ ତୁମକୁ ଅନନ୍ତ ରୂପେ ବ୍ୟାପୃତ କରିସାରିଛି । ଆଜି ବି ପୁଣି ସେହି ଦିନ ମନେ ପଡୁଛି ଯେବେ ଆମ ବିବାହକୁ ବାପାମାଆ ସ୍ୱିକୃତି ଦେଇଥିବା ଜାଣି ଆହୁରି କୁରୁଳି ଉଠିଥିଲି । ତୁମେ ମଧ୍ୟ ଖୁସିଥିଲ । ତା'ପର ଦିନ ତୁମ ଆଖିରେ ଲୁହ ଭର୍ତ୍ତି କରି ଚାଲିଆସିଥିଲ ଏବଂ ମୋତେ ଦେଖିବା ସଙ୍ଗେ ସଙ୍ଗେ ମୋ ପାଦ ଧରି ଦେଲ । ତୁମର ଏପରି ଅବ୍ୟବସ୍ଥିତ ଭାବରେ ଅନିୟମିତ କାର୍ଯ୍ୟ ଦେଖି ମୁଁ ଖୁବ୍ ତଟସ୍ଥ ହୋଇପଡିଲି ଏବଂ ତୁମ ହାତଠାରୁ ମୋ ପାଦକୁ ଛଡାଇ ନେଇଥିଲି । ଏପରି କାହିଁକି କଲ, ମୋର ପ୍ରଶ୍ନରେ ତୁମେ କିଛି ଗୋଟାଏ କହିବାକୁ ଚାହୁଁଥିଲ କିନ୍ତୁ କହିପାରିନଥିଲ । ମାଆ ହାତରେ ଚା'ଧରି ଚାଲିଆସିଥିବାରୁ । ତା'ପରେ ତୁମେ ମାଆଙ୍କ ସହ କିଛି ସମୟ କଥାବାର୍ତ୍ତା କଲ । ଆ'ଭିତରେ ମୁଁ ବାରମ୍ବାର ଭଗବାନଙ୍କୁ  ଡାକି କ୍ଷମା ମାଗିନେଉଥାଏ ତୁମେ ମୋ ପାଦ ଧରିଥିବାରୁ । ମାଆ ଯିବାପରେ ପୁନଶ୍ଚ ତୁମକୁ ଘଟିଯାଇଥିବା ଘଟଣାଟିର ପ୍ରଶ୍ନ କଲି । ତା'ପରେ ତୁମେ ଇଆଡୁସିଆଡୁ କଥା କହି ମୋତେ ଭୁଲାଇ ଦେଇଥିଲ । ଏଥର ତୁମେ ଅଲଗା ଅଲଗା ଲାଗିଲ । ତୁମେ ଏହିଭଳି ମଝିରେ ମଝିରେ ଭିନ୍ନ ଭିନ୍ନ ଲାଗୁଥିବା କାରଣ ହୁଏତ ମୁଁ ଖୋଜିଥିଲେ ପାଇଯାଇଥାଆନ୍ତି । କିନ୍ତୁ ! ମୁଁ ଖୋଜି ନଥିଲି। କାରଣ ତୁମ ଉପରେ ମୋର ବିଶ୍ୱାସ ଥିଲା ଖୁବ୍ ଦୃଢ । ବିଶ୍ୱାସ ବି କରନ୍ତିନି ଅବା କିପରି ମୋ'ଆଖି ସାମ୍ନାରେ ତୁମ ଚିତ୍ରିତ ଚିତ୍ରପଟଟି ଯେତେବେଳେ ଛାଇ ଯାଇଥିଲା । ସେଦିନ ତୁମ ବୋଉଙ୍କୁ ନେଇ ଆମ ଘରକୁ ଆସିବା ଏବଂ ବୋଉଙ୍କ ଆଖିରେ ମୋ'ପ୍ରତି ଥିବା ଶ୍ରଦ୍ଧା ଏବଂ ସ୍ନେହ ରୂପକ ଚାହାଣୀକୁ ଭୁଲିପାରିନଥିଲି କି କେବେ ଭୁଲିପାରିବିନି ମଧ୍ୟ । ତୁମ ପରିବାରର ଛୋଟରୁ ବଡ ସମସ୍ତେ ମୋତେ ଖୁବ୍ ଖୁସିରେ ବୋହୂ ରୂପରେ ଗ୍ରହଣ କରିନେଇଥିବା କଥା ତୁମଠାରୁ ଶୁଣି ମୁଁ କିପରି ଅବା ତୁମ ଉପରେ ଅବିଶ୍ୱାସ କରିପାରିଥାଆନ୍ତି ? ମନେମନେ ସ୍ୱପ୍ନର ନଅଁରଟିଏ ତୋଳୁଥିଲି । ଯେଉଁଠାରେ ଗୋଡିମାଟି ଦେଇ ତୁମକୁ ଗଢିବା ପାଇଁ କହିଥିଲି ଏକ ଘର । ଏବଂ ତା'ଭିତରେ ଗଚ୍ଛିତ ଆସବାବପତ୍ରକୁ ସଜାଡି ନେଉଥିଲି । ଆବଶ୍ୟକୀୟ ଛୋଟରୁ ବଡ ପ୍ରତିଟି ଜିନିଷକୁ ନିଜ ହାତରେ ସଜାଡି ନେବାର ଏକ ସୁନ୍ଦର ଆନନ୍ଦ ଉପଲବ୍ଧି କରୁଥିଲି । 'ମୋ ବାପାଙ୍କ ଦେଇଥିବା ଯୌତୁକରେ ଘର ... ।' ଏତକ କହିଛି କି ନାଇ ମୋ ମୁହଁରେ ତୁମ ହାତ ଚାପିଦେଲ, କଥାଟି ବନ୍ଦ କରିବା ଉଦ୍ଦେଶ୍ୟରେ । ଯୌତୁକ ନାଆଟି ଶୁଣି ତୁମେ ମୋ ଉପରେ ପ୍ରଚଣ୍ଡ ରାଗିଯାଇଥିଲ ଏବଂ କହିଥିଲ କାଇଁ ମୁଁ ଅକର୍ମଣ୍ୟ କି ? ତୁମ ବାପା ଘରୁ ଖଣ୍ଡେ ରୁମାଲ ମଧ୍ୟ ଆସିବନି ମୋ ଘରକୁ ।

ଇସ୍ କି ରୋମାଞ୍ଚ ଭରି ଦେଇଥିଲା ସେଦିନ ତୁମ ମୁଖରୁ ନିସୃତ ଏହି ପଦେ କଥା । ତୁମ ଏହି ପଦେ କଥା ମୋତେ ଆହୁରୀ ଆକର୍ଷିତ କରିଦେଇଥିଲା ତୁମ ଆଡକୁ। ତୁମେ କେବଳ ମୋତେ ହିଁ ଚାହଁ; ଏହି ଲୋଭି ସମାଜ ପରି ଅର୍ଥପିପାସୁ ନୁହଁ, ଏହା ଜାଣି ତୁମ ପ୍ରତି ମୋର ଆକର୍ଷଣ ଅଧିକ ବଢିଯାଇଥିଲା । ମୁଁ ମଧ୍ୟ ଗର୍ବ ଅନୁଭବ କରୁଥିଲି ତୁମକୁ ପାଇ । ତୁମ ପୋଷାକ ପତ୍ର କିପରି ହେବ, ସେଥି ପ୍ରତି ତିକ୍ଷ୍ଣ ଦୃଷ୍ଟି ରଖୁଥିଲି । ନିଜେ ଯାଇ ଯେତେବେଳେ ତୁମ ପାଇଁ ପ୍ୟାଣ୍ଟ ଶାର୍ଟ ଟାଇ ଆଦି କିଣି ଆଣୁଥିଲି; ଖୁବ୍ ଆନନ୍ଦ ପାଉଥିଲି । ଏଥର ତୁମର ବ୍ୟକ୍ତିତ୍ୱ ଆହୁରି ଆକର୍ଷଣୀୟ ହୋଇଉଠୁଥିଲା । ତୁମକୁ  ପାଇବା ପରେ ମୁଁ ମୋ ସାଙ୍ଗସାଥୀ ତଥା ପରିବାରରୁ କିଛିଟା ଦୂରେଇ ଯାଉଥିଲି । ସମସ୍ତଙ୍କର ମୋ ପ୍ରତି ଅନେକ ଅଭିଯୋଗ ରହିଲା । କିନ୍ତୁ  ମୁଁ କେବଳ ତୁମକୁ ହିଁ ପ୍ରତିକ୍ଷଣେ କଳ୍ପନା ଜଳ୍ପନା କରୁଥିଲି । ସାଙ୍ଗସାଥୀ କହୁଥିଲେ, ମୁଁ କୁଆଡେ ଦିନକୁ ଦିନ ସୁନ୍ଦର ଦିଶୁଥିଲି । ହୃଦୟରେ ଆନନ୍ଦର ମେଳା ବସିଥିଲେ ଶରୀରରେ ତା'ର ପରିପ୍ରକାଶ ଘଟିଥାଏ କୁଆଡେ ।

ତୁମ ପ୍ରତି ମୋର ଏତେ ଦୁର୍ବଳତା ଥିଲେ ହେଁ ସମାଜକୁ ତଥା ମୋ ପରିବାରକୁ କେବେ ପଛ କରି ନଥିଲି । ଆମ ସଂପର୍କରେ କିଛି ପାପ ସ୍ପର୍ଶ ନ କରୁ ଏଥିପ୍ରତି ମୁଁ ଖୁବ୍ ସଜାଗ ଥିଲି । ଏଣୁ ପରେ ପରେ ଅନେକ ଦିନ ଆଉ ତୁମ ସହ ଦେଖା କରୁ ନଥିଲି । ଯ'ଦ୍ୱାରା କି ତୁମେ ମୋ ଉପରେ ଖୁବ୍ ରାଗୁଥିଲ, ବିରକ୍ତ ପ୍ରକାଶ କରୁଥିଲ ଏଥିପାଇଁ । ମୁଁ ବା କ'ଣ କରନ୍ତି ଯେ? ଝିଅଟିଏ ବଡହେଲେ ଆମ ସମାଜ ତା' ନେଡିଗୋଡ କହୁଣୀକୁ ବାନ୍ଧି ପକାଏ । ତୁମକୁ ଖୁବ୍ ବୁଝାଏ କିନ୍ତୁ ତୁମେ ଯେମିତି ଗୋଟାଏ ଅବୁଝା ମଣିଷ । ତୁମର ଏପରି ଖାପଛଡା ଭାବକୁ କେତେ ଯୁକ୍ତି ଦେଖାଇ ସମର୍ଥନ କରିଛି । ଏତେ ସତର୍କତା ଅବଲମ୍ବନ କରି ମଧ୍ୟ ଦେଖ ଏ ସମାଜ କେତେ ଘୃଣିତ, ଲାଞ୍ଛିତ, ଭାବନା ବିହୀନ ଆମ ସଂପର୍କରେ କୁତ୍ସାରଟନା କରିବାକୁ ବାଦ୍ ଗଲାନାହିଁ । ଏପରି ପରିସ୍ଥିତି ମୋତେ ସେହି ଆନନ୍ଦରୁ ହଟାଇ ଦେବାକୁ ବାଧ୍ୟ କଲା । କିନ୍ତୁ ତୁମକୁ ଯେତେବେଳେ ଏସବୁ କହିଲି ତୁମେ ଭୁଲ୍ ବୁଝିଲ ଏବଂ କହିଥିଲ "କିଏ ବୋଧେ ତୁମ ବିରୁଦ୍ଧରେ ମୋ ପାଖରେ କହିଛି ।" ସତ କହିବାକୁ ଗଲେ ମୁଁ ତୁମକୁ ଏତେ ମାତ୍ରାରେ ଭଲପାଇଛି ଯେ ମୋ ଶରୀରର ଲୋମଟିଏ ବି ତୁମ ବିରୁଦ୍ଧରେ ଶୁଣିବାକୁ ନାରାଜ । ତୁମର ଶ୍ରଦ୍ଧା ପାଖରେ ମୋ ଶରୀରର ସମସ୍ତ ଲୋମକ୍ଷ ସମର୍ପିତ ହୋଇସାରିଛି ଏଣୁ କିଏ ବା କେଉଁ ସାହସରେ ଆଉ କହିବ, ସଂଗ୍ରାମ କରିବନି... ବିପ୍ଳବ କରିଯିବନି ଏ ପ୍ରତିଟି ଲୋମକୂପ ?

ତୁମ ସାଙ୍ଗରେ ଦେଖାହେଲାମାତ୍ରେ ମନର ସବୁ ଦୁଃଖ, କ୍ଷୋଭ ମେଣ୍ଟିଯାଇଛି । ତୁମକୁ ପଚାରିଛି ତୁମର ନୂଆ ଅଫିସର ଅଭିଜ୍ଞତାର କଥା । ତୁମର ସହକର୍ମୀମାନଙ୍କର

କଥା । ତୁମ ପରିବାର ସହ ମୁଁ ଖୁବ୍ ଆଗରୁ ପରିଚିତ ହୋଇଯାଇଥିଲି କେବଳ ତୁମରି ମାଧ୍ୟମରେ । ତୁମେ ବହୁବାର ଆଗରୁ ମୋତେ ଡାକିଥିଲ ତୁମ ଘରକୁ ଯିବା ପାଇଁ କିନ୍ତୁ ଏପରି ବିବାହ ପୂର୍ବରୁ ଯିବା ମୁଁ ପସନ୍ଦ କରୁନଥିଲି । ଯେଉଁ ଦିନ ଖୁବ୍ ଇଚ୍ଛାହୁଏ ତୁମ ଘର କାହା ସହ ମିଶିବାକୁ ତେବେ ଫୋନ୍ କରିଦିଏ । ଏମିତିକି ତୁମ ଘରକୁ ଫୋନକଲେ ଯେଉଁ ସବୁ କଣ୍ଠି ଝିଅଟି ପ୍ରଥମେ ଧରନ୍ତି ତାଙ୍କ ବିଷୟରେ ମଧ୍ୟ ଟିକିନିଖି ଖବର ନେଇଛି ତୁମଠୁଁ । ଏମିତି ଖୁସୀରେ ଖୁସିରେ ଦିନମାନ ବିତି ଯାଉଥାଏ ।

ଦୀର୍ଘଦିନ ଧରି ତୁମର ଖବର କିଛି ପାଉ ନଥିଲି ମୋ' ଦେହ ଅସୁସ୍ଥ ହେତୁ । ଖୁବ୍ ବିଚଳିତ ହୋଇପଡୁଥିଲି । ଟିକେ ଭଲ ହେବାପରେ ମୁଁ ତୁମ ଖବର ନେବା ପାଇଁ ତୁମ ଘରକୁ ଫୋନ୍ କରି ବୁଝିଲି ଟୁର୍‌ରେ ଯାଇଛ । ମୋତେ ନ ଜଣାଇ ଏମିତି କେବେ ଯାଅନି ତୁମେ । ଭାବିଲି କିଛି ବୋଧେ ଜରୁରୀ କାମ ପଡିଯାଇଥିବ । ମୋ ଦେହ କେମିତି ଅଛି ଟିକେ ବୁଝିଲନି ଆଉ ଚାଲିଗଲ । ଏହି ଅଭିମାନରେ ଭାବିଥିଲି ଆସିଲେ ତୁମ ସହିତ ଆଉ କଥା ହେବିନି । ଦେଖା ବି କରିବିନି। ସାତ ଆଠ ଦିନ ଯଥେଷ୍ଟ ଆକଟ କରି ରଖିଲି ନିଜକୁ । ତୁମର କିଛି ଖବର ନପାଇ ଭିତରେ ଭିତରେ ଡରିଯାଇଥିଲି ଖୁବ୍ । କେଜାଣି ବାହାରେ ଯାଇ ଯଦି କୋଉଠି ଅସୁସ୍ଥ ହୋଇପଡିଥିବ । ଏହି ଆଶଙ୍କା ଭିତରେ ତୁମ ସ୍ମୃତି, ସେ କ'ଣ ମୋ'ଭିତରୁ ପୋଛି ଦେବା ସମ୍ଭବ ? ଚନ୍ଦନ ଭଳି ତୁମ ସ୍ମୃତି ଦିନେ ମୋତେ ସୁରଭିତ କରୁଥିଲା । ଆଜି ଅନୁଭବ ହେଉଛି ସେ ଭୟଙ୍କର ସ୍ମୃତି କ୍ୟାନସର ଭଳି ମୋତେ ଚରି ଯାଉଛି । ନିଃଶେଷ ହୋଇଯାଉଛି ମୁଁ ନିଜ ଭିତରେ । ଯେତେବେଳେ କର୍ତ୍ତବ୍ୟର ପରିସୀମାଟି ମାପି ଦେଇ ସେଦିନ କହିଲ, "ଏ କାମ ସରିଗଲେ ମୋର ବୋଝ ଉତୁରି ଯିବ । ତେବେ କ'ଣ ଆମର ଏ ସଂପର୍କର ମଧ୍ୟ ଅବସାନ ଅଛି; ଏହା ଶୁଣିବା ପରେ ଯେଉଁ ବିସ୍ଫୋରଣ ହେଲା ସେଥିରେ ଛିନ୍ନ ଭିନ୍ନ ହୋଇଗଲା ମୋର ଏତେ ଦିନର ସଯତ୍ନ ଲାଳିତ ସ୍ୱପ୍ନ, ଆଶା, ବିଶ୍ୱାସ, ଭରସା, ପରିକଳ୍ପନା... ସବୁକିଛି । ତୁମ ସହ ଏକାତ୍ମ ହୋଇଯିବା ହିଁ ମୋର କାମନା । ଆଉ ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ସଂପର୍କିତ ସମ୍ବୋଧନଟି ଦେବାରେ ଭୟ ଲାଗୁଛି । ଯେତେବେଳେ ସ୍ୱାମୀ ରୂପରେ ଦେଖୁଛି ସେତେବେଳେ ତୁମଠାରୁ କର୍ତ୍ତବ୍ୟକୁ ମାପିଦେବାରେ ଯେଉଁ କଷ୍ଟ ଅନୁଭବ କରୁଛି ତା' ହୁଏତ ଅନନ୍ତ ରୂପେ ବ୍ୟାଖ୍ୟା କରିଦେଇଥିଲେ ଆଜି ଏତେ କଷ୍ଟ ହୁଅନ୍ତାନାହିଁ । ମାଆ, ବାପା, ଭାଇ, ଭଉଣୀ, ବନ୍ଧୁ ପରିଜନ; ସମସ୍ତଙ୍କୁ ଛାଡି ତୁମ ପାଖକୁ ଆସିବା କେତେ ସହଜ ଥିଲା କିନ୍ତୁ ଆଜି ତୁମକୁ ଛାଡି ଯିବାରେ କେତେ କଷ୍ଟ ଅନୁଭବ କରୁଛି । ତୁମଠାରୁ ଦୂରେଇବା ମାନେ ମୋର ଏ ଜନ୍ମର ଅବସାନ ହେଲା ଜାଣ, ଆର ଜନ୍ମରେ ବି ଯଦି ତୁମର ଅନୁପସ୍ଥିତି ଅନୁଭବ କରେ ତେବେ ବଞ୍ଚିବା ତ ଖୁବ୍ ଯନ୍ତ୍ରଣାଦାୟକ ହୋଇଯିବ । ଯଦି ଏ ଜନ୍ମରେ ତୁମକୁ

ଅନନ୍ତ ରୂପରେ ପରିକଳ୍ପନା କରିନେଇଥିବି ତେବେ ହୁଏତ ମୋର ସାତଜନ୍ମ ଯାଏ ଏହାର ଲେଶ ଅନୁଭବ କରିପାରିବି । ଏଣୁ ମୁଁ ତୁମଠାରୁ ଯେଉଁ ପରିମାଣରେ ଶ୍ରଦ୍ଧା, ସ୍ନେହ, ମମତା, ପ୍ରେମ, କାମନା କରିଛି ସେତକରୁ ମୋତେ ବଞ୍ଚିତ କରିବନି ଏହି ବିଶ୍ୱାସ ମୋର ରହିଲା ତୁମଠାରେ ଯେତେବେଳେ ମୁଁ ତୁମ ସହ ଏକାତ୍ମ ହୋଇସାରିଛି ପୁଣି ଏହି ସେବକର ସ୍ଥାନଟିକୁ କୋଳେଇ ନେଉଛି କାହିଁକି ? ସେବକ ନୁହେଁ ଶ୍ରଦ୍ଧାର ପାତ୍ର ତୁମେ ମୋପାଇଁ । ଯାହାର ଶେଷ ନାହିଁ...। ଅବସାନ ନାହିଁ...। ଲୀନ ହୋଇଯିବାର ପରାକାଷ୍ଠା ନାହିଁ...। ସେବକ ପଦବାଚ୍ୟଟେ କରି ମୋତେ ତୁମ ନିକଟରୁ ଦୂରେଇ ଦେଉଛ କାହିଁକି ? ହଁ ମୁଁ ତୁମକୁ ଭଲ ପାଏ କିନ୍ତୁ କାହିଁକି ଭଲ ପାଏଁ ମୁଁ ଜାଣେନା କି ଆଉ ଜାଣିବାକୁ ବି ଚାହେଁନା । ବାସ୍ ଏହିପରି ମୋ ଭିତରେ ଈଶ୍ୱର ଅନେକ ପ୍ରେମ ଢାଳି ଦିଅନ୍ତୁ । ତୁମ ଉଦ୍ଦେଶ୍ୟରେ ଏବଂ ଏହା ଉପରେ ଚନ୍ଦନର ସୁବାସ ଝରିଆସୁ ମୋ ପର୍ଯ୍ୟନ୍ତ ତୁମ ନିକଟରୁ । ଆସ... ଆମେ ଅମର ହେବା ଆମର ଏହି ଶୁଦ୍ଧ ପ୍ରେମରେ ଅନ୍ୟ କାହାପାଇଁ ନୁହେଁ ଏ ଅମରତ୍ୱ ନିଜପାଇଁ । ଯାହାକି ରହିବ ଚୀରକାଳ ଆମରି ସପକ୍ଷରେ । ଆଉ ପାଗଳ ପରିକା ବାଉଳେଇ ହେବାନି ସଂପର୍କ ସବୁକୁ ଧରିବା ପାଇଁ । କ'ଣ ସାଥୀ ହୋଇ ଆଗେଇବା ନା... ?'

କୌଣସି ଦିନ ମୋତେ ଅନୁଭବ କର ବା ନ କର ମନେ ପକାଅ ବା ନ ପକାଅ ସେଥିରେ ମୋର କିଛି ଦ୍ୱିଧା ନାହିଁ , "ମୁଁ ଏବଂ ତୁମେ, ତୁମେ ଏବଂ ମୁଁ – ଏକ । କୌଣସି ସୀମିତ ପ୍ରେମ ବଳୟ ମଧ୍ୟରେ ନୁହେଁ ଅନେକ ସ୍ନେହ, ମମତା ଏବଂ ଶ୍ରଦ୍ଧାରେ ଯାହାର ଅନ୍ତ ନାହିଁ କି ଆକାର ନାହିଁ ।"



*(ଶତାବ୍ଦୀ)*

## ସୁନୀତି ମୁଣ୍ଡଙ୍କ ଅନ୍ୟାନ୍ୟ କୃତି :

୧. ପର୍ଦ୍ଦାପଛର ଚର୍ଯ୍ୟାପଦ (କବିତା)
୨. ଶବ୍ଦ ଖେଳ (କବିତା)
୩. ଯେତେସବୁ ସକାଳ (କବିତା)
୪. ବେପଥୁ ବେହାଗ (କବିତା)
୫. ଦସ୍ତାବିଜ୍ (କବିତା)
୬. ଝିଅ (କବିତା)
୭. ଛାଇ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ)
୮. ଅଭିଶପ୍ତା (ଉପନ୍ୟାସ)
୯. ଭାଲେଣ୍ଟାଇନ୍ (ଉପନ୍ୟାସ)
୧୦. ବ୍ରେଲ୍‌ର ଦୁଃଖ (ଉପନ୍ୟାସ)
୧୧. ଅଗରବତୀର ଘର (ଉପନ୍ୟାସ)
୧୨. ମାଟ୍ରିମନି ଡଟ୍ କମ୍ (ଉପନ୍ୟାସ)
୧୩. ଜିଗୋଲୋ (ଉପନ୍ୟାସ)
୧୪. ବଣ୍ଟୁ ଓ ଅନ୍ୟାନ୍ୟ ଗଳ୍ପ (ଅନୁବାଦ)
୧୫. ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୧ (ଅନୁବାଦ)
୧୬. ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୨ (ଅନୁବାଦ)
୧୭. ରାଜସ୍ଥାନ ଏକ ପର୍ଯ୍ୟାଲୋଚନା (ଭ୍ରମଣ)
୧୮. ଆଳାପ (ସାହିତ୍ୟ ବିନିମୟ)








ମଣିଷ ଜୀବନର ଅନେକ ଅକୁହା କଥା ବିଶେଷକରି ଆମ ସମାଜରେ ମହିଳାମାନଙ୍କୁ ଯେଉଁ ସାମାଜିକ ରୀତି ନୀତି ଆଳରେ ବିଭିନ୍ନ ମାଧ୍ୟମରେ ସେମାନଙ୍କର ମନକୁ ଚାପି ଦିଆଯାଇଥାଏ ସେହିସବୁ ମିଥ୍ୟାଚାର ବିରୁଦ୍ଧରେ ପ୍ରତି ଗଳ୍ପରେ କାହାଣୀ ମାଧ୍ୟମରେ ଦର୍ଶାଯାଇଛି । ଏପରିକି ବିଭିନ୍ନ ବୟସର ଏବଂ ବିଭିନ୍ନ ମାନସିକତାର ନାରୀ ଚରିତ୍ରଙ୍କୁ ଏହି ପୁସ୍ତକରେ ଭିନ୍ନଭିନ୍ନ ଗଳ୍ପ ମାଧ୍ୟମରେ ଦିଆଯାଇଛି ଯାହା ସମ୍ବେଦନଶୀଳ ପାଠକମାନେ ହୃଦବୋଧ କରିବେ ଏବଂ ସାମାଜିକ ନୀତି ନିୟମ ଆଦବକାଇଦା ସମୟ ଅନୁଯାୟୀ ପରିବର୍ତ୍ତନଶୀଳ ହେବା ବାଞ୍ଛନୀୟ ନଚେତ୍ ସଂପର୍କଗୁଡିକ କିପରି ତିକ୍ତତା ଭିତରେ କଷ୍ଟଦାୟକ ହୁଅନ୍ତି, ଏଣୁ ସମୟ ପୂର୍ବରୁ ତାକୁ ଜାଣିନେବା ହେଉଛି ଏହି ପୁସ୍ତକ ପ୍ରକାଶନର ମୂଳ ଉଦ୍ଦେଶ୍ୟ । ଏଥିରେ ସନ୍ନିହିତ ସବୁଗଳ୍ପ ନାରୀଭିତ୍ତିକ । ତେବେ ପାଠକ ଏଥିରେ ଚିରାଚରିତ କଥା ନପାଇ ନିଶ୍ଚୟ ନାରୀ ମନତଳ ଅନେକ ଅକୁହା କଥାକୁ ଭେଟିବେ ଏବଂ ହୃଦବୋଧ କରିବେ ବୋଲି ଆଶା ।

-ପ୍ରକାଶକ




**ANUSTUPA**
Short story collection by **Suniti Mund**

Dakshya Books
*(A unit of dakshya venture pvt. ltd.)*

Cover design : Prakash Mohapatra